ଅନ୍ତର୍ଭାରତୀୟ ପୁସ୍ତକମାଳା

# ଗଙ୍ଗା ଚିଲର ଡେଣା

ଲକ୍ଷ୍ମୀନନ୍ଦନ ବୋରା

ଅନୁବାଦ

ସୁରେନ୍ ମହାନ୍ତି



ନ୍ୟାସନାଲ୍ ବୁକ୍ ଟ୍ରଷ୍ଟ, ଇଣ୍ଡିଆ

ପ୍ରଥମ ସଂସ୍କରଣ 1976 (ଶକାବ୍ଦ 1897)
ଦ୍ୱିତୀୟ ସଂସ୍କରଣ 1992 (ଶକାବ୍ଦ 1914)

Original Assamese Title : Ganga Chilanir Pakhi
Oriya Translation : Ganga Chilar Dena
ଟ. 23.00
ISBN 81-237-0134-9
ନିର୍ଦ୍ଦେଶକ, ନ୍ୟାସନାଲ୍ ବୁକ୍ ଟ୍ରଷ୍ଟ, ଇଣ୍ଡିଆ, ଏ-5, ଗ୍ରୀନ୍ ପାର୍କ,
ନୂଆ ଦିଲ୍ଲୀ-110016 କର୍ତ୍ତୃକ ପ୍ରକାଶିତ ।

# ଅସମୀୟା ଉପନ୍ୟାସ : ସଂକ୍ଷିପ୍ତ ପରିଚୟ

ଅସମୀୟା ଉପନ୍ୟାସର ରୂପରେଖର ଇତିହାସ ଏକ ଦୀର୍ଘ କାହାଣୀ । ମଧ୍ୟଯୁଗୀୟ କାବ୍ୟ ଓ ଲୋକକଥାରେ ଏହାର ଚିହ୍ନ ନାହିଁ । ବର୍ତ୍ତମାନର ଅସମୀୟା ଗଦ୍ୟର ଆରମ୍ଭ ଆସାମର ପ୍ରଥମ ପତ୍ରିକା "ଅରୁଣୋଦୟ" (1846-82) ରୁ ହୁଏ । ଏହିଠାରୁ ପ୍ରାୟ ଛଅଟି ବଡ଼ ଗଳ୍ପ - ଚାରୋଟି ଅନୁବାଦ, ଦୁଇଟି ମୂଳ ରଚନା ପ୍ରକାଶିତ ହୁଏ । "ଯାତ୍ରିକର ଯାତ୍ରା" (1851), "ଏଲୋକେଶୀ ବେଶ୍ୟା" (ଅନୁବାଦ ରଚନା) ଏବଂ "ସୁଧମରି ଉପାଖ୍ୟାନ" (1884) ଓ "ବହିରେ ରଙ୍ଗ ଚଙ୍ଗ ଭିତରେ କୋବା ଭାତୁରୀ" (1876) ହେଲା ମୂଳରଚନା । ଅନୁବାଦ ଯୁଗରେ ବ୍ୟାପଟିଷ୍ଟ ମିଶନାରୀମାନଙ୍କର ଅବଦାନ ରହିଛି । ମୂଳ ରଚନା କ୍ଷେତ୍ରରେ ଲେଖିକା ପଦ୍ମାବତୀ ଫୁକନ ଓ ପ୍ରସିଦ୍ଧ ଭାଷାକୋଷ ସଂକଳକ ବ୍ୟଙ୍ଗକାର ହେମଚନ୍ଦ୍ର ବରୁଆଙ୍କର ନାମ ଉଲ୍ଲେଖଯୋଗ୍ୟ । ଏହି ସବୁ ଲେଖା ଶିକ୍ଷା ଓ ଧର୍ମ ମୂଳକ ବିଷୟବସ୍ତୁ ଥିଲା । "କୋବାଭାତୁରୀ"ରେ ପ୍ରଥମେ ଗଦ୍ୟର ସୁସ୍ଥ ସାହିତ୍ୟିକ ପରମ୍ପରା ସ୍ଥାନ ପାଏ ଏବଂ ପ୍ରକୃତ ଗଦ୍ୟ ରୂପାୟିତ ହୁଏ । ଏହା ଏକ ବ୍ୟଙ୍ଗାତ୍ମକ ଉପନ୍ୟାସ । ଉନ୍ନତ ସଂଳାପ ଏବଂ ଚରିତ୍ର ଚିତ୍ରଣ ସଫଳ ଭାବରେ ଏଥିରେ କରାଯାଇଛି ।

ଅସମୀୟା ଉପନ୍ୟାସର ପ୍ରଥମ ଦିଗ୍‌ଦର୍ଶନ ଦୁଇଟି ସାହିତ୍ୟ ପତ୍ରିକାରୁ ମିଳେ ଏବଂ ସେ ଦୁଇଟି ହେଲା - "ଜୋନାକୀ" (1889) ଏବଂ "ବିଜୁଲି" (1890) । "ଜୋନାକୀ"ରେ ଲକ୍ଷ୍ମୀନାରାୟଣ ବେଜବରୁଆଙ୍କର "ପଦ୍ମକୁମାରୀ" (1906) ଧାରାବାହିକ ଭାବରେ ପ୍ରକାଶିତ ହୋଇଥିଲା ଏବଂ "ବିଜୁଳି" ପତ୍ରିକାରେ ପଦ୍ମନାଥ ଗୋହାଇଁ ବରୁଆଙ୍କର ମହତ୍ତ୍ୱପୂର୍ଣ୍ଣ ରଚନା "ଭାନୁମତି" ପ୍ରକାଶିତ ହୁଏ । ଭାବପୂର୍ଣ୍ଣ ବିଷୟବସ୍ତୁର ନିରନ୍ତରତା ଯୋଗୁଁ "ଭାନୁମତି"କୁ ଆସାମ ସାହିତ୍ୟରେ ପ୍ରଥମ ଉପନ୍ୟାସ ବୋଲି ଧରାଯାଇପାରେ । ପଦ୍ମନାଥଙ୍କର "ଲାହୋରୀ" (1892) ରେ ମଧ୍ୟ ଏହି ଆଭାସ ମିଳେ । ଦୁଇଟିକୁ ତୁଳନା କଲେ "ପଦ୍ମକୁମାରୀ" ବାସ୍ତବ ମନେ ହୁଏ । "ପଦ୍ମକୁମାରୀ"ରେ ଔପନ୍ୟାସିକ କାହାଣୀର ନାୟକ ଓ ନାୟିକାଙ୍କର ସ୍ପଷ୍ଟ ରୂପ ମିଳେ । ଏଥିରେ ଶୃଙ୍ଗାର ରସ ପ୍ରଧାନ ଏବଂ "ପଦ୍ମକୁମାରୀ"ରେ ସାମୁହିକ ଆତ୍ମହତ୍ୟା ପ୍ରସଙ୍ଗ ତତ୍କାଳୀନ ଲେଖକ ଶ୍ରୀ ଦାମୋଦର ବୋରାଙ୍କର ସମାଲୋଚନାର କାରଣ ହୋଇଥିଲା । ଆଲୋଚକ ଚାହିଁଥିଲେ ଯେ ଉପନ୍ୟାସରେ ସାମାଜିକ ଏବଂ ନିଷ୍ଠାପୂର୍ଣ୍ଣ ଉଦ୍ଦେଶ୍ୟ ରହିବା ଦରକାର ।

ଉନବିଂଶ ଶତାବ୍ଦୀର ସମାଜ ଏବଂ ଭାରତୀୟ ନବଜାଗରଣର ପରିଣାମ ସ୍ୱରୂପ ଅସମୀୟା ଉପନ୍ୟାସ ଜନ୍ମଲାଭ କରେ । ରଜନୀକାନ୍ତ ବର୍ଦ୍ଦୋଲାଇଙ୍କର ଉତ୍ସାହପୂର୍ଣ୍ଣ କାହାଣୀ, ଚରିତ୍ର ଏବଂ ଘଟଣାର କ୍ରିୟା ଓ ପ୍ରତିକ୍ରିୟା, ଭାବାତ୍ମକ ବର୍ଣ୍ଣନା ଏବଂ ଦେଶଭକ୍ତିପୂର୍ଣ୍ଣ ଐତିହାସିକ ଅତୀତର ଆହ୍ୱାନ ଧ୍ୱଣାତ୍ମକ ଢଙ୍ଗରେ ଭିନ୍ନ ତଥା ସ୍ୱତନ୍ତ୍ର ଅସମୀୟା ଉପନ୍ୟାସର ରୂପରେ ଏକ ନୂତନ ଆଗମନର ସୂଚନା ହିସାବରେ ନିଆଯାଇପାରେ । ଆଦିବାସୀ ଜୀବନ ଆଧରିତ ତାଙ୍କର ଲେଖା

"ମିରିଜାୟାରୀ" (1894) ଉପନ୍ୟାସ ସାହିତ୍ୟର ଏକ ନୂତନ ଦିଗନ୍ତ ଜନ୍ମିଲେ ଚଳେ । ଏହାଙ୍କର ଐତିହାସିକ ଉପନ୍ୟାସ "ମନୋମତି" (1900), "ରଙ୍ଗାଲୀ" (1909), "ନିର୍ମଳ ଭକତ" (1926), "ରାଧା ରୁକ୍ମିଣୀ" (1925), "ତାମ୍ରେଶ୍ୱରୀ ମନ୍ଦିର" (1936) ଓ "ଦନ୍ଦୁବା ଦ୍ରୋହ" (1928), ପ୍ରାଗ ବ୍ରିଟିଶ ଯୁଗରେ ବର୍ମାର ଆକ୍ରମଣ ଏବଂ ଆସାମୀ ଗୃହଯୁଦ୍ଧ ଉପରେ ଆଧାରିତ ଥିଲା । ଚରିତ୍ର ମାଧ୍ୟମରେ ସଂସ୍କୃତି, ଧର୍ମ-ସାମାଜିକ ବ୍ୟବହାର ଏବଂ ଯୌନ ନୈତିକତା ପୂର୍ଣ୍ଣପ୍ରକାଶିତ ହୋଇଛି । ସଂଳାପ ମଧ୍ୟରେ ପ୍ରେମିକ ପ୍ରେମିକାଙ୍କର ଦରଦ ଘୁରି ବୁଲୁଥିଲା । ଭାଗ୍ୟ ଏବଂ ସମୟ ବିରୁଦ୍ଧରେ ଚାଲୁଥିଲା ତାଙ୍କର ସଂଘର୍ଷ । ଏହାହିଁ ଥିଲା ଥିଲା କାହାଣୀର ଶୈଳୀ । "ତାମ୍ରେଶ୍ୱରୀ ମନ୍ଦିର"ରେ ବର୍ମା ଆକ୍ରମଣକାରୀଙ୍କ ଦ୍ୱାରା ବାଣ ପେଷିଥିବା ତାନ୍ତ୍ରିକ ପଣ୍ଡିତ ବିରୁଦ୍ଧରେ ପ୍ରେମିକର ସଂଘର୍ଷର ଚିତ୍ରଣ ମିଳେ । "ମନୋମତି"ର ବିଷୟବସ୍ତୁ ବଡ଼ ସୂକ୍ଷ୍ମ ଏବଂ ଦ୍ରବକ । ଏଥିରେ ପ୍ରେମିକ କେବଳ ଆକ୍ରମଣକାରୀ ନୁହେଁ - ବରଂ "ରୋମିଓ ଓ ଜୁଲିଏଟ" ପରି ଜୀବନ ଦେବାକୁ ପ୍ରସ୍ତୁତ । "ନିର୍ମଳ ଭକ୍ତ" ବର୍ମା ଆକ୍ରମଣର ବିଷୟବସ୍ତୁ ଉପରେ ଆଧାରିତ ଏକ ସ୍ୱଚ୍ଛ ପ୍ରେମର କାହାଣୀ । "ଦନ୍ଦୁ ବା ଦ୍ରୋହ"ରେ ଲେଖକ ପଦ୍ମକୁମାରୀର କାହାଣୀ ସୁନ୍ଦର ଚରିତ୍ର-ଚିତ୍ରଣ ତଥା ସଂଳାପ ଦ୍ୱାରା ଚିତ୍ରିତ କରିଛନ୍ତି । ଅସଙ୍ଗତ ଉପଦେଶକୁ ବାଦ ଦେଇ, ଏବଂ ସବୁକିଛି ଦେଖି, ଶ୍ରୀ ବର୍ଦ୍ଧୋଲାଇ ନିଜ ସମୟର କଳା ପରମ୍ପରାକୁ ପୂର୍ଣ୍ଣ ପ୍ରକାଶ କରିଛନ୍ତି ।

ଐତିହାସିକ ଉପନ୍ୟାସର ରୁଚି ସେତେବେଳକୁ କମିବାକୁ ଲାଗିଲାଣି । ତଥାପି କେତେକ ଲେଖକ ଏହି ପ୍ରକାର ଲେଖା ଲେଖୁଥିଲେ । ଏହାର ନିଦର୍ଶନ ସ୍ୱରୂପ ହିତେଶ୍ୱର ବରୁଆଙ୍କର "ମାଲିତା" (1914) ଶରତଚନ୍ଦ୍ର ଗୋସ୍ୱାମୀଙ୍କର "ପାନୀପଥ", ଏର୍. ଏନ୍. ଦତ୍ତବରୁଆଙ୍କର "ଚିତ୍ରଦର୍ଶନ" ଏବଂ ଦଣ୍ଡୀନାଥ କଲିତାଙ୍କର "ଜନ୍ ବିପ୍ଳବ" ଉଲ୍ଲେଖଯୋଗ୍ୟ ।

ସମାଜରେ ବ୍ୟକ୍ତିବାଦର ଉତ୍‌ଥାନ ସହିତ ଅସମୀୟା ସାମାଜିକ ଉପନ୍ୟାସର ଆଗମନ ହୁଏ । ଐତିହାସିକ ପଟ୍ଟଭୂମି ଉପରେ ବିବସ୍ତ୍ର ପ୍ରେମ ଓ ନିଷ୍ଠିଦ୍ଧ ଯୌନକୁ ପ୍ରାକୃତିକ ଓ ମାନବୀୟ ଆଧାର ଉପରେ ଉପସ୍ଥାପିତ କରିବାର ଏକାନ୍ତ ଆବଶ୍ୟକତା ଥିଲା । ଏହି ପ୍ରାରମ୍ଭିକ କାଳରେ ଔପନ୍ୟାସିକମାନେ ଏହି କର୍ତ୍ତବ୍ୟଟିକୁ କିପରି ଭାବେ ସମ୍ପାଦନ କରିଛନ୍ତି ତା ବିବରଣୀ ଦେବା ଏଠାରେ ଦରକାର ନାହିଁ । କେତେକ ଲେଖିକା ମଧ୍ୟ ଏହି ଗୋଷ୍ଠୀରେ ଥିଲେ । ଏମାନେ ସମସ୍ତେ ମିଳି ସାଧାରଣ ମନୁଷ୍ୟର ସମସ୍ୟା ପ୍ରତି ଆମର ଦୃଷ୍ଟି ଆକର୍ଷଣ କରୁଥିଲେ । ଅନ୍ୟ ଦିଗରେ ଦଣ୍ଡିନାଥ କଲିତା ଏବଂ ଦେବଚନ୍ଦ୍ର ତାଲୁକଦାର ଗାନ୍ଧିବାଦୀ ସମାଜ ସଂସ୍କାର ନୀତି ଅନୁସରଣ କରୁଥିଲେ ସୁଦ୍ଧା, ସେମାନଙ୍କର ଉପନ୍ୟାସରେ ତାହା ସଫଳ ରୂପେ ପ୍ରତିପାଦିତ କରିପାରି ନଥିଲେ । ଏମାନଙ୍କ ଶୈଳୀ ଥିଲା - ଉପନ୍ୟାସର ନାୟକ ସମାଜ ସଂସ୍କାରକ, କିନ୍ତୁ ଶେଷରେ ସେ ପରିସ୍ଥିତି ଓ ପାରିପାର୍ଶ୍ୱିକ ଘଟଣାର ଶୀକାର ହେବ । କଲିତାଙ୍କର "ସାଧନା" (1925) ର ନାୟକ ସ୍କୁଲରେ ପଢ଼ିଲା - ସ୍ତ୍ରୀ ଓ ଗରୀବମାନଙ୍କର ସମ୍ମାନ ରକ୍ଷା କରିବାର ସଂକଳ୍ପ ସେ ଗ୍ରହଣ କରିଥିଲା । କିନ୍ତୁ ନିଜକୁ ରକ୍ଷା କରିବା ପାଇଁ ତାକୁ ଆଦର୍ଶବାଦ ନୀତି ଗ୍ରହଣ କରିବାକୁ ପଡୁଥିଲା । ତାଲୁକଦାରଙ୍କ ଉପନ୍ୟାସରେ ଆଦର୍ଶବାଦ ତଥା ବ୍ୟକ୍ତି ଚରିତ୍ରରେ ବୈଷମ୍ୟର ଚିତ୍ରଣ ମିଳେ । ପ୍ରଶଂସନୀୟ କଥା ହେଲା - ସରଳ ସଂଳାପ ଏବଂ ଅମୂର୍ତ୍ତ ଚରିତ୍ର ମଧ୍ୟରେ ସ୍ୱାଭାବିକତା ଆଣି ପାରିଲା । ଉଦାହରଣ ସ୍ୱରୂପ "ବିଦ୍ରୋହୀ" (1948) ।

ଏଥିରେ ବାଲ୍ୟ ବିଧବା ବିବାହକୁ ସ୍ୱୀକୃତି ଦେଇ ଲେଖକ ସମାଜରେ ନୂତନ ଚିନ୍ତାଧାରା ପ୍ରବର୍ତ୍ତନ କରିବାକୁ ଚେଷ୍ଟା କରିଛନ୍ତି ।

ଦୀନନାଥ ଶର୍ମାଙ୍କର "ସଗ୍ରାମ" (1954) ଉପନ୍ୟାସରେ ନିମ୍ନ ଶ୍ରେଣୀଙ୍କର ସାମାଜିକ ଅବସ୍ଥା ପ୍ରତି ସହାନୁଭୂତି ଏବଂ ଚିନ୍ତାକୁ ପ୍ରକାଶ କରାଯାଇଛି । "ସଗ୍ରାମ" ଉପନ୍ୟାସର ଶିକ୍ଷିତ ବୁଦ୍ଧିରାମ ବେକାର । କାରଣ ଅମାନନୀୟ ଏବଂ ଅସମ୍ମାନନୀୟ ସର୍ତ୍ତ ଅନୁଯାୟୀ କାମ କରିବାକୁ ସେ ପ୍ରସ୍ତୁତ ନୁହେଁ । ଶଟଲ କର୍କ (shuttle cork) ପରି ଗୋଟିକରୁ ଅନ୍ୟ ପରିସ୍ଥିତିରେ ଯୁଦ୍ଧକରି ସେ ଏକ ସ୍ୱପ୍ନସୁନ୍ଦରୀର କଳ୍ପନାରେ ବୁଡି ରହୁଥିଲା ଏବଂ ଧୀରେ ଧୀରେ ନିରାଶ ମଧ୍ୟ ହୋଇଯାଉଥିଲା । "ନଦାଇ"ରେ ପୁଣି ଆମ ଆଗକୁ ଏକ ପରିଶ୍ରମୀ ଚାଷୀ ଆସେ ଯେ ନିଜର ପରିଶ୍ରମ ମଧ୍ୟରେ ନିଜ ସ୍ୱପ୍ନକୁ ସାର୍ଥକ କରିବାକୁ ଚେଷ୍ଟା କରିଛି - କିନ୍ତୁ ଲକ୍ଷ୍ୟ ସାଧନ ପୂର୍ବରୁ ସଙ୍କଟ ସ୍ଥିତିରେ ପଡ଼ି ଯାଇଛି । ଏହିପରି ମାନବୀୟତା ଉପରେ ଆଧାରିତ ଚିନ୍ତାଧାରା ଓ 1930 ମସିହାରେ ଅସମୀୟା ଜୀବନର ସଂକ୍ଷିପ୍ତ ଚିତ୍ରଣ ବୀନା ବରୁଆଙ୍କର "ଜୀବନର ବାଟ" (1945) ରେ ମଧ୍ୟ ମିଳେ । ଏହାର ଶୈଳୀ ଏବଂ ବିଷୟବସ୍ତୁର ଏପରି ମିଶ୍ରଣ ହୋଇଛି ଯେ ପରିସ୍ଥିତି ଏବଂ ଚରିତ୍ରର ପାରମ୍ପରିକତା, ବିଶ୍ୱାସନୀୟତା ଏବଂ ବର୍ଣ୍ଣନାର ସରଳତା ଏବଂ ସାବଲୀଳତାକୁ ଉପଲବ୍ଧ କରିହୁଏ ।

## ଦୁଇ

ଅଗଷ୍ଟ କ୍ରାନ୍ତି ଓ ଦ୍ୱିତୀୟ ବିଶ୍ୱଯୁଦ୍ଧ ପରେ ଔପନ୍ୟାସିକଙ୍କ ସମ୍ମୁଖରେ ଦୁଇଟି କଥା ଆସେ । ଯୁଦ୍ଧ, ସ୍ୱାଧୀନତା ଏବଂ କ୍ରାନ୍ତି ଦ୍ୱାରା ପ୍ରଭାବିତ ଘଟଣା ଲେଖକର କଳ୍ପନାକୁ ପ୍ରଭାବିତ କରେ । ଦ୍ୱିତୀୟ କଥା ହେଲା ସ୍ୱାଧୀନତାର ଖଟା ମିଠା ଫଳାଫଳ ସମ୍ବନ୍ଧରେ ସାଧାରଣ ମନୁଷ୍ୟର ଅଜ୍ଞତା । ଏହିପରି ଚିନ୍ତାଧାରାରେ ପ୍ରଭାବିତ ହୋଇ କେତେକ ଲେଖକ ଏକତ୍ର ହେଲେ । ସ୍ଥାନ ଅଭାବରୁ ସମସ୍ତଙ୍କର କଥା ଉଲ୍ଲେଖ କରିବାର ସୁଯୋଗ ନାହିଁ ।

ଯେତେବେଳେ ଉପନ୍ୟାସ ଲେଖକଙ୍କ ଧ୍ୟାନ ମାନବବାଦ ପ୍ରତି ଅଧିକ ଆକୃଷ୍ଟ ହେଲା, ସେତେବେଳେ ବିଷୟବସ୍ତୁ ସନ୍ଧାନରେ (ବ୍ୟକ୍ତିଗତ ସ୍ୱଭାବ, ବିଶ୍ୱାସ ଓ ଅନୁଭାବନାକୁ ଆଧାର କରି) ଜୀବନର ଅମଡ଼ା କ୍ଷେତ୍ର ମଧ୍ୟ ପ୍ରସ୍ତୁତ ହୋଇଗଲା । ସବୁ ଲେଖକ ଯେ ନିଜ ଲେଖନୀକୁ ଯଥାର୍ଥ ଭାବରେ ଚାଳନା କଲେ ତାହା ନୁହେଁ, ଅନେକ ଉପନ୍ୟାସରେ ରୋମାଞ୍ଚକ ପ୍ରେମର ପ୍ରଶ୍ନ ଉଠିଲା । ଯୋଗେଶ ଦାସଙ୍କର "ଡାଓରେ ଆରୁ ନାଇ" (ବାଦଲ ଆଉ ନାହିଁ, 1055) ଆସାମର ଚାହା ବଗିଚାରେ କାମ କରୁଥିବା ଜଣେ ଭଲ ଲୋକର ନୈତିକ ସଂଘର୍ଷର କାହାଣୀ-ଯୁଦ୍ଧର ପ୍ରତ୍ୟକ୍ଷ ଚିତ୍ର ଓ ନୈତିକ ବିକାଶ ଉପରେ ଆଧାରିତ । ବୀନା ବରୁଆଙ୍କର "ସେଓଜୀ ପାତର କାହିନୀ" (ସବୁଜ ପତ୍ରର କାହାଣୀ, 1959) ରେ ଗୋଟିଏ ଚାହା ବଗିଚାରେ ଔପନିବେଶିକ ଜୀବନର ଉତ୍ତେଜକ ଯୌନ-ଜୀବନ ଏବଂ ବିରୋଧୀ ସଂସ୍କୃତିର ମନମୁଗ୍ଧ ବର୍ଣ୍ଣନା ମିଳେ । ଲୋକପ୍ରିୟ ଲଘୁକଥା ଲେଖକ ସୟଦ୍ ଅବଦୁଲ ମାଲିକ ସ୍ୱତନ୍ତ୍ରତା ପରେ ଉପନ୍ୟାସ ଲେଖିବା ଆରମ୍ଭ କରନ୍ତି । ତାଙ୍କ ଉପନ୍ୟାସରେ

ସେ ଏକ ସ୍ୱତନ୍ତ୍ର ଶୈଳୀ ଏବଂ ଏକ ନୂତନ କଳ୍ପନା ପ୍ରୟୋଗ ଆରମ୍ଭ କଲେ । "ସୁରଯମୁଖୀର ସ୍ୱପ୍ନ" (1960) ସ୍ଥାନୀୟ ମୁସଲମାନ ଜୀବନ ଓ ଆସାମର ଗ୍ରାମ୍ୟ ଜୀବନର ଏକ ଜୀବନ୍ତ ଅଭିବ୍ୟକ୍ତି । ଗୋଟିଏ ସଫଳ ଆଞ୍ଚଳିକ ଉପନ୍ୟାସ ଲେଖିବା ପାଇଁ, ଯେଉଁଥିରେ ସମସ୍ତ ବୈଶିଷ୍ଟ୍ୟର ସମାବେଶ ହୋଇଛି । "ଅଘୋରୀ ଆତ୍ମାର କାହାଣୀ"ରେ ତ୍ରସ୍ତ ନାୟିକାର ଏକ ସୁଖ ଜୀବନର ଆଶା, ଯୋଗେଶ ଦାସଙ୍କର "ଡଉର ଖୋଜ" (ମୃଗତୃଷ୍ଣା)ରେ ମଧ୍ୟବୟସ୍କା ଏକ ଶିକ୍ଷିତା ନିର୍ବାସିତା ସ୍ତ୍ରୀର ଆନ୍ତରିକ ଯନ୍ତ୍ରଣାର ବିବରଣୀ, ପ୍ରଫୁଲ୍ଲଦତ୍ତ ଗୋସ୍ୱାମୀଙ୍କର "କେସାପାତର କପନି" (ନୂଆ ପତ୍ରର କମ୍ପନ 1950)ରେ ଜଣେ ଘରବାଲାର ଶିକ୍ଷିତ ଝିଅର ବେଦନାର କାହାଣୀରେ ଆଦିବାସୀ ଭଡ଼ାଟିଆ ସହିତ ସହିତ ବର୍ଣ୍ଣ ଭେଦର ସଂଘର୍ଷ ସଙ୍ଗେ ସଙ୍ଗେ ପ୍ରେମର ଚିତ୍ର ମଧ୍ୟ ମିଳେ । ରାଧିକା ମୋହନ ଗୋସ୍ୱାମୀଙ୍କର "ଚାକନୈୟା" (ଭ୍ରମର, 1950) ଏବଂ 'ବାମରଲା' (1958) ରେ ଆଧୁନିକ ଜୀବନର ପ୍ରଭାବ ସୁସ୍ପଷ୍ଟ । ହୋମେନ୍ ବରଗୁହାଁଇଙ୍କର ଆଧ୍ୟାତ୍ମିକବାଦ ସହିତ ଦୈହିକ ବା ଯୌନ ମନସ୍ତତ୍ତ୍ୱ ଏକ ରହସ୍ୟ ବୋଲି ମନେ ହୁଏ । ତାଙ୍କର ପୁସ୍ତକ "ତାନ୍ତ୍ରିକ" (1967) ରେ ଏହା ସ୍ପଷ୍ଟରୂପେ ପ୍ରତିପାଦିତ ହୋଇଛି । ନିଜର ଏକ ପ୍ରାରମ୍ଭିକ କୃତି "ସୁବାଳା"ରେ ବରଗୋହାଁଇ ଜଣେ ବେଶ୍ୟାର କାହାଣୀ ଏକାନ୍ତ ଆବେଗରେ କହିଯାଇଛନ୍ତି । ନବକାନ୍ତ ବରୁଆଙ୍କର ଆଞ୍ଚଳିକ ଉପନ୍ୟାସ "କପିଲିପରିୟା ସାଧୁ" (କପିଲ କୂଳର କାହାଣୀ, 1954) ଗୋଟିଏ ଗ୍ରାମ୍ୟ ଭାବୁକ ଯୁବତୀ ରୂପାଇର କୋମଳ କାହାଣୀ ଯାହାର ମାତା-ପିତାଙ୍କର କୌଣସି ପତ୍ତା ନାହିଁ ଏବଂ ଯାହାର ଧର୍ମବାପା ତାକୁ ଗୋଟିଏ ବିପଦପୂର୍ଣ୍ଣ ଅବସ୍ଥାରୁ ଉଦ୍ଧାର କରେ । ଲେଖକ କପିଲିପାରେ ଅତିମାନବୀୟ ଗୁଣ ଦେଖାଇଛନ୍ତି । ଚନ୍ଦ୍ରପ୍ରସାଦ ଶଇକିୟାଙ୍କର "ଏ ଦିନ" (ଏକ ଦିନ, 1961) ଏକ ବିଚାରଶୀଳ ଏବଂ ପ୍ରୟୋଗାତ୍ମକ ରଚନା । ଏହି ରଚନା ସ୍ୱତନ୍ତ୍ରତା ଏବଂ ପ୍ରଗତିର ଆଦର୍ଶରେ ପ୍ରଭାବିତ ।

ଜୀବନକୁ କୌଣସି ଗୋଷ୍ଠୀ ବା ଦଳର ଅଂଶ ରୂପେ ଉପସ୍ଥାପିତ କରିବାର ପ୍ରଚେଷ୍ଟା ସମକାଳୀନ ଆସାମୀ ଔପନ୍ୟାସିକଗଣଙ୍କ ରଚନାରେ ବଳିଷ୍ଠ ଭାବରେ ମିଳେ । ଏ ବିଷୟରେ ପ୍ରଥମରୁ କୁହାଯାଇଛି । ପଦ୍ମ ବରକଟକୀଙ୍କର "ମନର ଦପନ" (ମନ ଦର୍ପଣ), ପଶୁପତି ଭରଦ୍ୱାଜଙ୍କର "ଓରନ୍ତର ଧାରକର" (ଭେଦଣୀ ବାଦଲର ଛାୟା), ନିରୁପମା ବରଗୋହାଁଇଙ୍କର "ସେଇ ନଦୀ ନିରବଧି", ଜଣେ ଯୁବକ ଲେଖକ ରଚିତ "ଏଇ ପଦୁମନୀ" ଏବଂ ଅନ୍ୟ ଜଣେ ଯୁବକ ଲୁମେର ଦାଇଙ୍କ ଦ୍ୱାରା "ପୃଥିବୀର ହାହିଁ" (ପୃଥିବୀର ଅଟ୍ଟହାସ୍ୟ) ପରି ଉପନ୍ୟାସମାନଙ୍କରେ ଏହି ନୂତନ ଗତି ସ୍ପଷ୍ଟ ଭାବରେ ପରିଲକ୍ଷିତ ହୁଏ । "ଏଇ ପଦୁମନୀ" ଏକ ଭିନ୍ନ ପ୍ରକାରର ଗ୍ରାମ୍ୟ ଜୀବନର ଚିତ୍ର; ଯେଉଁ ଗ୍ରାମ ଯନ୍ତ୍ର ସଭ୍ୟତାର ଶିକାର ହୋଇ ସାରିଛି । ଏହି ସମୟରେ ଲେଖିକାଙ୍କର ଉଦୟ ମଧ୍ୟ ଏକ ମହତ୍ତ୍ୱପୂର୍ଣ୍ଣ ଘଟଣା । ନିରୁପମା ବରଗୋହାଁଇଙ୍କ ସହିତ "ଆକାଶ ବନ୍ଦୀ" (ଆକାଶ ଦୀପ)ର ଲେଖିକା ନିଳିମା ଦତ୍ତ, "ଅନ୍ତରାୟଣ"ର ଲେଖିକା ମୃଣାଳ ଶଇକିୟା ଯଥେଷ୍ଟ ଖ୍ୟାତି ଲାଭ କରିଛନ୍ତି । ମହାଜାଦ ପିୟାରା, ନିରୋଦ ଚୌଧୁରୀ, ହିତେଶ ଡେକା ଏବଂ କୁମାର କିଶୋର ପ୍ରଭୃତି ଲେଖକମାନେ ଖୁବ୍ ଲୋକପ୍ରିୟତା ଅର୍ଜନ କରିଛନ୍ତି । ତାନ୍ତ୍ରିକ ଏବଂ ଯୌନ ସମ୍ବନ୍ଧୀୟ ବିଷୟବସ୍ତୁକୁ ନେଇ ଅବିବେକ- ପୂର୍ଣ୍ଣ ବ୍ୟବସାୟୀ ସାହିତ୍ୟ ସୃଷ୍ଟି କରାଯାଇ ପାରେ, କିନ୍ତୁ ସାହିତ୍ୟ ଦୃଷ୍ଟିରୁ ସେ ସବୁ ବିଚାରକୁ ଆସନ୍ତି ନାହିଁ ।

ଔପନ୍ୟାସିକ ହିସାବରେ ଲକ୍ଷ୍ମୀନନ୍ଦନ ବୋରା ଅପେକ୍ଷାକୃତ ନବାଗନ୍ତୁକ । ତାଙ୍କର କୃତିରେ ବୈଷମ୍ୟ ଅଛି । ତାଙ୍କର କିଛି ଲେଖା ନିଶ୍ଚିତ ରୂପେ ଯୌନ ସମ୍ବନ୍ଧୀୟ ଏବଂ ତାଙ୍କର ସମସ୍ତ କୃତିକୁ କଳାତ୍ମକ ବୋଲି କୁହାଯାଇ ପାରିବନି । "ଗଙ୍ଗାଚିଲନିର ପାଖି" (ଗଙ୍ଗା ଚିଲର ଡେଣା)ରେ ତାଙ୍କର ପ୍ରାରମ୍ଭିକ ଲଘୁକଥାର ଝଲକ ମିଳେ । ପ୍ରଧାନତଃ ତାଙ୍କର ଏହି ରଚନାରେ ଆଧୁନିକ ଯୁଗର ପ୍ରଭାବରେ ଗ୍ରାମ୍ୟ ହୃଦୟର ପରିବର୍ତ୍ତନ ଚିତ୍ରିତ ହୋଇଛି ।

ଅସମୀୟା ଉପନ୍ୟାସରେ ପ୍ରାରମ୍ଭରୁ ଆଜିଯାଏ ନାରୀ ପ୍ରତି ଏକ ଜିଜ୍ଞାସା, ଯାହାର ବର୍ଣ୍ଣନା ପ୍ରାୟ ଅଧିକ, ସ୍ଥାନ ପାଇ ଆସିଛି ଓ ତାହା ବାଞ୍ଛିତ ଅନୁପାତରେ ତାଙ୍କ ଲେଖାରୁ ମିଳେ । ବାସନ୍ତୀର ଚରିତ୍ରର ବିକାଶ ମାନବୀୟ ଏବଂ ଅନୁକୂଳ ପରିସ୍ଥିତି ମଧ୍ୟରେ ସେ ତା'ର ମାନବୀୟତା ରକ୍ଷା କରି ପାରିଛି । ପୁରୁଷ ଚରିତ୍ର ଧନଞ୍ଜୟ "କପିଲିପରିୟା ସାଧୁ"ର ରୂପାଇ ଚରିତ୍ରକୁ ସ୍ମରଣ କରେଇ ଦିଏ । ମୋତେ ଲାଗୁଛି ଯେ ଭୋଗରାମ ଏବଂ ମଧୁରୀଙ୍କ ଚରିତ୍ରରେ କିଛି ଅଭାବ ରହିଗଲା । ବିଶେଷତଃ ଭୋଗରାମ ଯେତେବେଳେ ବ୍ୟଭିଚାର କରୁଛି ଏବଂ ଅଫିମ ନେବା ଆଣିବା କରୁଛି; ଆଉ ମଧୁରୀର ଅପ୍ରତ୍ୟାଶିତ ଦୁର୍ଘଟଣା କାହାଣୀ ବଡ଼ ଅପ୍ରାସଙ୍ଗିକ ଜଣାଯାଉଛି । ବହିଟିର ଆକର୍ଷିତ ଅଂଶ ହେଲା-ଲେଖକ ଗ୍ରାମ୍ୟ ସ୍ମୃତିରେ ଆତୁର ହୋଇ ସୋନାଇ ନଦୀ କୂଳର ଜୀବନ, ସ୍ୱାଧୀନତା ପରେ ନିର୍ବାଚନ ସମ୍ବନ୍ଧୀୟ ରାଜନୀତି, ବିକାଶ କାର୍ଯ୍ୟ ଏବଂ ଆଧୁନିକୀକରଣକୁ ଯେଉଁଠି ପ୍ରକାଶ କରିଛନ୍ତି । ଏଥିରେ ସନ୍ଦେହ ନାହିଁ ଯେ ଏହି ସବୁ ପ୍ରସଙ୍ଗ କେବଳ ଆଧାର ମାତ୍ର - କିନ୍ତୁ ଏହାର ଚିତ୍ରଣ ମନୋଗ୍ରାହୀ ।

ଏହି ସଂକ୍ଷିପ୍ତ ସମାଲୋଚନାରେ ଏହି କଥା ସିଦ୍ଧ ଯେ ଲକ୍ଷ୍ମୀନନ୍ଦନ ବୋରାଙ୍କର ଉପନ୍ୟାସ ବାସ୍ତବଧର୍ମୀ ଏବଂ ଅସମୀ ଉପନ୍ୟାସ ଲେଖାର ପ୍ରଚଳିତ ଶୈଳୀର ପ୍ରତିନିଧିତ୍ୱ କରନ୍ତି । ଅନେକ ମାନରେ ଏ ଏକ । ଅସମୀ ଜାଣି ନ ଥିବା ପାଠକ ଏହାକୁ ପଢ଼ି ଅସମୀ ଗ୍ରାମ୍ୟ ଜୀବନର ଏକ ଝଲକ ଦେଖିବାକୁ ପାଇବେ ।

–ବୀରେନ୍ଦ୍ର କୁମାର ଭଟ୍ଟାଚାର୍ଯ୍ୟ

# ଏକ

ବାସନ୍ତୀଙ୍କ ଘରକୁ ପଅରଦିନ ଜଣେ ଲୋକ ଆସିଥିଲେ । ବାସନ୍ତୀର ମନେ ପଡ଼ିଲା ଯେ, ସେ ଏ ଯାଏଁ ତାଙ୍କ ଘରକୁ ତିନିଥର ଆସିଛନ୍ତି । ଅବଶ୍ୟ ତାଙ୍କ କଥା ବାସନ୍ତୀ କିଛି ଜାଣେନା । ସେ କିଏ ହୋଇପାରନ୍ତି ? ବୋଉକୁ ପଚାରିବ କି ? ନା— ବୋଉକୁ ପଚାରି ପାରିବନି । ବୋଉ ଟାଣ କଥା କହିବ । ତାଙ୍କ ବିଷୟ ପଚାରିବାର ଆଗ୍ରହ ଦେଖି ବୋଉ ପଚାରିପାରେ—"ପଚାରୁଛୁ କାହିଁକି ଲୋ—ଆଖିକୁ ଲାଗିଗଲା ପରା !" ଏମିତି ସନ୍ଦେହ କରିବ । ମଣିଷଟି—ଟୋକାଟିଏ । କେଉଁଠୁ ଆସେ ? ରାଇଡ଼ିଂ ଗାଁରୁ କି ?—ପାଉଁଶିଳରୁ ହୋଇପାରେ । କଳମପୁ ଗାଁର ବାବୁଲିବାଏନ୍ ଘରର ମଣିଷ କି ? ଅଲପିଆର ମୁନ୍ସୁଲୁନ ହାଟୋଳର ପୁଅ ହୋଇପାରେ । ସେ ଯିଏ ହେଉନା କାହିଁକି ସୋନାଇ ନଦୀର ଏ ପାଖରେ ତାଙ୍କ ଘର ନୁହେଁ । ସୋନାଇର ଉତ୍ତର ପାଖର କେଉଁଟି ଗାଁ କଥା ବାସନ୍ତୀ ମନେ ପକାଉଛି—କଳମପୁ ଗାଁ— ପାଉଁଶିଳ, ରାଇଡ଼ିଂ ଗାଁ—ଦେଉଗ୍ରା, ନୁଆ, ସାବୁନ୍ଦେଇ ଓ କହୁଆଆଟି ଏମିତି ଯେ କେତେ ଗାଁ ଅଛି ? ତାଙ୍କ ଘରକୁ ଅନେକ ଲୋକ ଆସିଥିଲେ ଓ ଆସିବେ । କାରଣ ଗାଉ ବେପାରୀ, ତାର ନିଜ କେତେ ପ୍ରକାର ମଣିଷ ସହିତ ଚିହ୍ନା— ସୁନ୍ଦରହାଲ ମୁନ୍‌ସିକୁ ଯେମିତି ଆପଣାର ଦେଖାଏ—, କୁହୁଣି ବୋଲୁକା କୋଲଥାକୁ ସେମିତି ଆଦର ଯତ୍ନ କରେ । କିଏ କେମିତି ନିଜର ବୁଝିବାର କଷ୍ଟ । ବେପାରୀ ମଣିଷଙ୍କର ମୁହଁ କଥାରୁ କିଛି ଜାଣି ହେବନି । ଏହି ଟୋକା ସହିତ ଗାଇର ଯେ ଆନ୍ତରିକତା ଅଛି ଏ କଥା ବାସନ୍ତୀ ବେଶ ଭଲ ଭାବରେ ବୁଝି ପାରିଛି ।

ସେହି ଅଜଣା ମଣିଷ ବିଷୟରେ ସେ କିଛି ଜାଣେନା—କିନ୍ତୁ ତା କଥା ଆଜ ଏମିତି ସେ ଭାବୁଛି କାହିଁକି ? ତାକୁ ଲାଜ ଲାଗୁଛି । ହଠାତ୍ ତାର ମନଟା କେମିତି କଣ ହୋଇଗଲା । ଆଜ ସକାଳୁ ତାର ଭାବିବାର ଥିଲା ଯେ, ଗାମୁଛାର ଫୁଲର ବାକି କେଇଧାଡ଼ି କେତେବେଳେ ଶେଷ ହେବ,—ପାଉଁଶିଳର ରୁକ୍ମିଣୀ ମା' ଘରର କାହ୍ନିନକୁ ସେ ଦିନେ କି ତିନି ଦିନ ଆଗରୁ ଯିବ—ଇତ୍ୟାଦି ।

କିନ୍ତୁ ସେଇ ସବୁ କଥା ମନକୁ ଆସେନା—ଅନ୍ତର୍କିତରେ ଗୋପନରେ ସେଇ ଟୋକା କଥା ମନକୁ ଘାରୁଛି । ସୁଅ ଯେମିତ ମନଇଚ୍ଛା ବୋହିଯାଏ, ସେମିତ ମନଟା, କେଉଁଥିରେ ବାନ୍ଧ ନ ହୋଇ ଭାସିଯାଏ । ସେ କାହା ଠାରୁ ଶୁଣିଥିଲା । ଯେମିତ କାଛମାଙ୍ଗ ପୋଖରୀର ତଳଟା କେହି ମାପିପାରିବେନି—ସେମିତ ମନ କଥାର ତଳ ମଧ୍ୟ ଜାଣି ହେବନି । ଅପରିଚିତ ଜଣେ ପୁରୁଷପ୍ରତି ହଠାତ୍ ଆକର୍ଷଣରେ ତାର ଯୁବତୀ ମନଟା ଚହଲି ଦୋହଲିଗଲା । ସେଥିପାଇଁ ବ୍ୟାକୁଳ ହୋଇଛି । ମନଟା ସେଥିପାଇଁ ଅସ୍ୱାଭାବିକ ହୋଇଗଲା । ସବୁବେଳେ ବିଜୁଳି ଗତିରେ ରଣଝଣ କରିବା—ଘରର ସବୁ କାମ କରିବା—ଛନ୍ଦର କେଣ୍ଡା ଚଳର ଗୋଡ଼ ପୀଡ଼ାକୁ ଜୀବନ୍ତ କରିବା ଏବଂ ଦିନର ଦୁଇବେଳା ଲିଙ୍କିପିଟି ତାର ଶେଷ ପଡ଼ୋଶୀ ଘରର ମଣିଷକୁ ଜଣାଇ ଦେବା । ଚଞ୍ଚଳ ଗତିବନ୍ତୀ ଯୁବତୀ ଯାହାର ଦେହର ଓ ମନର ରକ୍ତରେ ଅଛି ଚମକ ଓ ବିଜୁଳି—ଆଜି ତାର ମୁହଁରେ ଯେପରି ଦୁନିଆର ଅଳସ ଜମି ଯାଇଛି । ହେଣ୍ଡ୍ରାଟା କଥା ମାନୁ ନାହିଁ—ଏପାଖ ସେପାଖ ହେଉଛି । ଛନ୍ଦର ପିଢ଼ାଟା ଆଜି ଠିକ୍ ତାଳ ରଖୁନି । ମଝିରେ ମଝିରେ ବନ୍ଦ ହୋଇଯାଉଛି ।

ସୂର୍ଯ୍ୟ ଉପରକୁ ଉଠିଲେଣି । ମୁହଁରେ ଖରା ପଡ଼ିଲାଣି । ଅନେକ କାମ ବାକି ପଡ଼ିଛି । ଧାନ କୁଟିବାକୁ ଥିଲା—ପିଣ୍ଡା ଓ ସଫା କରିବାକୁ ଥିଲା । ତଢିର ଲିପା ହୋଇନି—ଘରର ଅନ୍ୟ ସମସ୍ତେ ବ୍ୟସ୍ତ । ଶ୍ୱଶୁର ଦେବକଣ, ଝିଅଟି ଚକୁଣୀ ଦାଣ୍ଡରେ ଖେଳୁଛନ୍ତି । ହାତ ବୁଲେଇ ଘୁରି ଘୁରି ଚକା ଚକା ଭଉଁରି ଖେଳୁଛନ୍ତି ।

ବଡ଼ ଭାଇ ଭୋଗରାମ ସକାଳୁ ଯୋର ଆଉ ଛୁଆଙ୍କୁ ସାଇକେଲରେ ବାନ୍ଧି ଉଲପୁରିଆ ଗାଁକୁ ଗଲେଣି । ଭାଉଜ ବାହାରେ ଲୁଗା ଶୁଖାଉଛି । ବୋଉ ବୁଢ଼ୀ ଦୁଆରେ ବସି ମନକୁ ମନ କହୁଥାରେ ଲାଗିଛି—"ଭଲ ଭଲ, ଭଲ ଭଲ— ନାଚେ ମଦନ ଗୋପାଳ ।"

ଝମାର ଘରର ଆଗର କାଠଗଣ୍ଡି ଉପରେ ବୋଉ ବସି ଗୋଡ଼ ଆଙ୍ଗୁଠିରେ ମାଟି ଖେଳାଉଛି । ଘର ଆଗ ରାସ୍ତାରେ ଜଣେ ଗୋଟାଏ ବୁଢ଼ା । ଦେବକଣ ଆଉ ଚକୁଣୀ ମହାବ୍ୟସ୍ତ ! ଅଙ୍ଗୁଳି ଟେକି ଖେଳ ଗୁଣ୍ଡ ପାଟି କଲେଣି । ଅଟ୍ଟହାସ କରୁଛନ୍ତି—"କାହିଁଣ ମୋଡ଼ା, କୋଳିର ଗୁଣ୍ଡା—ଖୋଜିଲି ଆଖିପତା ଓଲଟେଇ ବୁଢ଼ା ।" ଭାଉଜ ଶୁଣିପାରି ପାଟିକଲେ—"ଛେଗ ବଡ଼ୁ ଅତି ବେଶୀ ହୋଇ ଗଲାଣି । ରାସ୍ତାରେ ଯିବା ଲୋକକୁ ଡାକୁଛ କି ମଜା ପାଉଛ ଯେ ?"

କିଛି ସମୟ ପରେ ଭାଉଜ ତା ପାଖକୁ ଆସିଲେ । ମୁଣ୍ଡରୁ ଗୋଡ଼ଯାଏ ବୁଝି ଅଣ୍ଟାରେ ଲୁଗାଭିଡ଼ି କହିଲେ—"ବାହାନ୍ତୀ ! ଠନ୍ ଠନ୍ ମଦନ ଗୋପାଳ

ହୋଇ ବସିଛ ଯେ ! ଖବର କେତେ ହେଲାଣି ? କେତେ କାମ ବାକି ପଡ଼ିଛି, ଏକଥା ଏବେବି ତୁମକୁ ଜଣା ପଡ଼ୁନି ?

ବାସନ୍ତୀ ଠିଆ ହେଲା । ଲାଜ ଲାଗୁଛି । ଭାଉଜ ବୋଧହୁଏ ଜାଣି ଗଲେଣି । କାମ ଛାଡ଼ି ବାସନ୍ତୀକୁ ଏମିତି ବସି ରହିବା ଭାଉଜ କେବେ ହେଲେ ଦେଖି ନାହାନ୍ତି । କଥା ଭୁଲେଇ ବାସନ୍ତୀ କହିଲା—"ସକାଳୁ ଦେହଟା ଭଲ ଲାଗୁନି ଭାଉଜ । ମୁଣ୍ଡଟା ଭାର ଭାର ଲାଗୁଛି !"

ସୁଯୋଗ ପାଇ ଭାଉଜ ଥଟ୍ଟା କରି କହିଲେ—"ଠିକ୍ କହୁଛ ? ମୁଁ ଭାବୁଥିଲି ଯେ ବେମାରଟା ମନର । ଆଜିକାଲି ଯୁବତୀ ଝିଅଙ୍କର ମନର ବେମାରି ବେଶି । ହୁଁ, ଦୋଷ ଯୌବନର—କାହାକୁ କହିବା ।"

"କାହିଁକି ଥଟ୍ଟା କରୁଛ ଭାଉଜ ? ଆଜି କାଲି କିଛି କହିଲେ ତୁମେ ଖାଲି ଓଲଟା ବୁଝୁଛ ।"

"ମୋତେ ତୁମେ କ'ଣ ଭାବିଛ କି ?"

"ଆଚ୍ଛା କ'ଣ ବୁଝିଛି ଭଲା ?"

"ତୁମେ ତ ବାସନ୍ତୀ, ସୁନ୍ଦରୀ ଝିଅଟିଏ । ମୁଁ ତ ମୂର୍ଖ । ଏହାଠାରୁ ଆଉ ବେଶି କଣ ବା ମୁଁ ବୁଝେ ?" ଭାଉଜ ହସି ଦେଲେ କିନ୍ତୁ ବାସନ୍ତୀ ହସି ପାରିଲାନି । ମନଟା କେମିତି ଚମକି ଉଠିଲା ।

"ଭାଉଜ ! ଦେବକଣର ଦି'ଖଣ୍ଡ ଲୁଗା ଧୁଆ ହୋଇନି ।"

"ବର୍ତ୍ତମାନ ଦରକାର ନାହିଁ । ତୁମର ଆଜି ଛୁଟି । ପର ଘରକୁ ଗଲେ ଏମିତି ଏକା ବସି ଭାବିବାକୁ ତ ଆଉ ସୁଯୋଗ ମିଳିବନି ।"

"ଓଃ ! ଭାଉଜ ! ତୁମର ଯେ ଆଜି କଣ ହୋଇଛି ?"

"ଏମିତି କେତେ ଦିନ ଆଉ ଲୁଚେଇବମ । କଥାରେ ଅଛି ଅଥଳ ଜଳ, ସାରୁଟା ପୋଡାମାଛ ଭିତର ତଳ ।" ଉତ୍ତରକୁ ଅପେକ୍ଷା ନକରି ଭାଉଜ ଭିତରକୁ ଗଲେ, ଗୀତରୁ ଦୁଇପଦ ବାସନ୍ତୀ କାନରେ ପଡ଼ିଲା—"ଫୁଲ ଅଛି ଫୁଲି, କଦମ୍ବ ଅଛି ଡାଳି— ଆଉ କଥା ଚନ୍ଦ୍ରାପାଇଁ ଶ୍ୟାମ କହିନାହିଁ ବୋଲି ।"

ବାସନ୍ତୀ ବୁଝିଲା ଯେ, ତାକୁ ଚଡ଼େଇବାକୁ ଭାଉଜ ଏମିତି ବାହାଘର ଗୀତ ବୋଲୁଛି । ଆଜି ଯେମିତି ଭାଉଜପ୍ରତି ମନଟା ନଇଁଗଲା । କେତେ ରଙ୍ଗୀନ ତାଙ୍କ ମନ—କେତେ ଭଲ ସେ—ଦୁଃଖ ବୋଲି ଯେମିତି ତାଙ୍କ ମନରେ କିଛିନାହିଁ । ହୁଁ,

ଦୁଃଖୀ କାହିଁକି ହେବେ ଯେ ? ଖାଇ ତାଙ୍କୁ କେତେ ଭଲ ପାଆନ୍ତି । କିନ୍ତୁ ମନକଥା ଖାଇକି ଯେ ଜାଣିପାରନ୍ତି—ଆଜି ଏକଥା ବାସନ୍ତୀ ବିଶ୍ୱାସ କଲା ।

ବାଡ଼ିରେ ଅନେକ ଗଛ । ଗୁଆ ଆଉ ପାନଗଛ ମିଳି ପ୍ରାୟ ଅଢ଼େଇ କୋଡ଼ି । ଦୁଇଟା ଜାମୁଗଛ । ପାଉଁଶିଆରୁ ଅଣା ଦୁଇଟା ନଡ଼ିଆ ଗଛରେ ଫଳ ଧରିଲାଣି । ପିଡ଼ାରେ ଦେଶୀଆଳୁ ଲଟା ମାଡ଼ିଛି । ବାଡ଼ିଟି କିନ୍ତୁ ସଫାସୁତରା । ବିନା ଭୟରେ ବାଡ଼ସାରା ବୁଲିଆସିହେବ ବୁଲି ହେବ । ମନ ଉଦାସ ହେଲେ ବାସନ୍ତୀ ବାଡ଼ିକୁ ଅସେ । ଛୋଟ ଖୁରୁପି ନେଇ ଅଳୁ, ହଳଦୀ ଆଉ ଅଦା ଗଛ ମୂଳକୁ ସଫାକରେ । ଆଜି ବି ବାସନ୍ତୀ ବାଡ଼ିକୁ ଗଲା । ତାକୁ ଦେଖି ଏଣ୍ଡୁଅଟା ମୁଣ୍ଡ ଟେଙ୍ଗାଣି ଗୁଆ ଗଛ ଉପରକୁ ଚଢ଼ିଗଲା । କାଠଖୁମ୍ପା ଚଢ଼େଇ ଅଣ୍ଟରେ କାଠ ହାଣୁଥିଲା । ସେ ବି ତା କାମ ବସିକଲା । କଳ ଦାଦାଙ୍କ ବାଡ଼ିର ବାଉଁଶ ବଣରେ ଗୋଟାଏ "ଜହ୍ନାମାଲି" (ପକ୍ଷୀବିଶେଷ—ଯାହା ଦେହରୁ ଅ.ସାମର ଜହ୍ନାସୁଙ୍ଘିକର ଗନ୍ଧ ବାହାରେ) ଗୋଟିଏ ବୁଦାରୁ ଅନ୍ୟ ବୁଦାକୁ ଡେଇଁବାରେ ଲାଗିଛି । ବାସନ୍ତୀ ଭାବିଲା—ଏ ସମସ୍ତେ ବି ତା ମନ କଥାର ଅଭାସ ପାଇଛନ୍ତି । ପଶୁପକ୍ଷୀ ସବିଜ୍ଞାନୀ । ଏଥି ଆଶ୍ଚର୍ଯ୍ୟ କଥା ନୁହେଁ ! ସେମାନେ ଜାଣିପାରନ୍ତି । ଅସଲ କଥାଟି ଜାଣି ସେମାନେ ତାକୁ ସ୍ୱାଗତ ଜଣାଉଛନ୍ତି । ଇସ୍ ! ସେ କ'ଣ ସବୁ ଭାବିବାରେ ଲାଗିଛି ? କଣିଷର ଜାଣିବା ମନକୁ ଏହିସବୁ କଥା ଆସିପାରେ ? ସେ କ'ଣ ପାଗଳୀ ହୋଇଗଲା ନା କ'ଣ ? ଏଗୁଡ଼ା ଅଡ଼ ବାଜେ ଚିନ୍ତା ।

କିନ୍ତୁ ସୋନାଇ ପୂଖାଆ ଗାଁର ଝିଅମାନେ ଏମିତି ଭାବନ୍ତି । ସେ ଜାଣେ ସୋନାଇ ଗ୍ରାମର ଚତୁପାର୍ଶ୍ୱର ଗଛଲତା, ପଶୁ ପକ୍ଷୀ ଆଉ ବିଶାଳ ଶ୍ୟାମଳ ମୋହନ ପ୍ରକୃତି—ଏହି ସବୁ ମନର ଅତି ଆପଣାର । ପ୍ରକୃତି ଠାରୁ ଅଭିନ୍ନ ଏମାନେ । ସେଥିପାଇଁ ପରା କେତେ ଭଲ ଅଉ କେତେକା ମନ କଥାଟି କୁହନ୍ତି । ସୋନାଇର ଛଳ ଛଳ ପାଣିର ଟଳଟଳିସ୍ରୋତ ଯେମିତି ଜୀବନର ଛନ୍ଦରେ କଥା କୁହେ । ସୋନାଇକୁ ଛାଡ଼ିବା ତା ପକ୍ଷରେ ସମ୍ଭବ ନୁହେଁ । ସୋନାଇ ଜୀବନର ଧାରା—ସୋନାଇ ହିଁ ସେମାନଙ୍କ କଥା କୁହେ—ନାଚେ, ହସେ, ଅଉ କାନ୍ଦେ ।

ଘର ପଛରେ ବଡ଼ ବାଉଁଶ ବାଡ଼ । କେବଳ ଦୁଇଟା ବାଉଁଶ ବାଡ଼ ଆଉ ବାକିତକ ଛୋଟ ଛୋଟ କଣ୍ଟାବାଉଁଶ ବୁଦା, ତା'ର ମଝି ରାସ୍ତାରେ ଗଲେ ସୋନାଇ ଘାଟରେ ପହଞ୍ଚି ହୁଏ । ଅଉ ପଛ ପିଣ୍ଡାରୁ ମଧ ସୋନାଇ ଘାଟଟା ଦିଶେ । ପଛ ପିଣ୍ଡାରୁ ସୋନାଇର ଦୂରତ୍ୱ ମାତ୍ର ଦୁଇ ମିନିଟର ରାସ୍ତା । ଯେ କୌଣସି ସମୟରେ

ଅବସ୍ଥାରେ ଦରକାର ପଡ଼ିଲେ ସେ ଏବଂ ଭାଉଜ ସୋନାଇରୁ ପାଣି ଆଣି ଏବଂ ପାରନ୍ତି । ଯେ କୌଣସି ଶାଢ଼ୀ ପିନ୍ଧି ଗଲେ ବି ଚଳେ । କାରଣ ସୋନାଇକୁ ଯିବାକୁ ଅନ୍ୟ କାହା ବାଡ଼ି କି ଦୁଆର ଦେଇ ଯିବାର ଦରକାର ନାହିଁ । ନିଜ ବାଡ଼ିତଳେ ସୋନାଇ ବୋହୁଛି । ହାଥୀଚର ଗାଁ ଲୋକଙ୍କର ବାଡ଼ିପଟ କୂଅପରି । ସୋନାଇ ନଈ ଘାଟର ବି ନାଁ ଅଛି—"ଠୁନୁଆଘାଟ" ତା'ର ଜଣେ ଦାଦାଙ୍କ ନାଁ ଲୁଆଡ଼େ ଥିଲା "ଠୁନୁଆ କଳିଟା" । ସେ ଜଣେ ବଡ଼ ମାଛ ଧରାଳି ଥିଲେ । ଶୁଣାଯାଏ ଯେ, ତାଙ୍କପରି ବନ୍‌ଶୀରେ ମାଛ ଧରିବାବାଲା ସେ ଅଞ୍ଚଳରେ କେହି ନଥିଲେ । ଏହି ଘାଟରେ ବନଶୀରେ ସେ ଗୋଟିଏ ହାତରେ ବଡ଼ ମାଛ ଧରିଥିଲେ । ଏମିତି କେତେ ଚଉଲ ସେ ବନ୍‌ଶୀରେ ଧରୁଥିଲେ । ସେ ବଡ଼ ନାମଜାଦା ଲୋକ ଥିଲେ— ତାଙ୍କରି ନାଁରେ ସେ ଘାଟ ।

ଗାଧୋଇବାକୁ ବାସନ୍ତୀ ଘାଟରେ ପହଞ୍ଚିଲା । ସେ ପାରିକୁ ଆଖି ଯେତେ-ଦୂର ଯାଏ ବାସନ୍ତୀ ଚାହିଁଲା, ଆଉ କେଉଁ ଗାଁ କେଉଁଠି ଭାବିଲା । ଏଟା "ଖଲପୀସ୍ଥା" ସେଟା ହେଲା "ଗୁବୁକଧର" ଆଉ ଆଖି ସିଧାକୁ "ପାଉଶିଳ" । ସେ ଯେଉଁଠି ଠିଆ ସେଠୁ ସୋନାଇ ପାରିହେଲେ ଗୁରିହାତ ଦୂରରେ ଯେଉଁ ଘାଟ ଅଛି, ସେଇ ଘାଟରେ ସେ ଟୋକା ପାରିହୁଏ ସାଇକଲ ନେଇ । କିନ୍ତୁ ଆସେ କେଉଁ ଗାଁରୁ ? "ପାଉଶିଳ" "ଖଲପିସ୍ଥା" "କୁହି" କି "ବେହୁଆ ଅଟି" ଗାଁରୁ ? ତା ନା କଣ ? ଘରେ ଆଉ କିଏ କିଏ ? ବାହା ହୋଇଛି କି ? ସେ ତାକୁ ଜାଣେନା । ଦିନେ ବଡ଼ଭାଇକୁ ଖୋଜିବାକୁ ଘରକୁ ଆସିଥିଲେ । ବାଉଁଶ ଧଡ଼ା ପାଖରେ ସାଇକଲ ଥୋଇ ଧପ୍‌ଧପ୍ କରି ଯାଇ ମେଲା ଦୁଆରେ ହାଜର । ବାସନ୍ତୀର ସବୁ ଠିକ୍ ମନେ ଅଛି । ପାଇଜାମା ମାରିଥାଏ । କାମିଜ ବଗପକ୍ଷୀପରି ଧଳା । ବଡ଼ଭାଇଙ୍କ ପରି କାମିଜର ଉପର ସୁନା ବୋତାମ ଖୋଲା ଓ କାମିଜର ହାତ ଅଧାଯାଏ ମୋଡ଼ା ହୋଇଥାଏ । ଭାଇଙ୍କ ମୁହଁ ପରି ତା ମୁହଁରେ ଦୁବଘାସ ପରି ବି ଦାଢ଼ି ନାହିଁ । ସବୁବେଳେ ଯେମିତି ଖିଅର ହୋଇ ସଫା । ସୁନ୍ଦର ଗୋରା ମୁହଁରେ କଳା କଳା ନିଶ ଗୋରା ଦେହକୁ ଯେମିତି ବେଶି ଶୋଭା କରୁଛି । ମୋଟା ମୋଟି ମଣିଷଟି ଆଖିକୁ ବେଶ୍ ଲାଗେ ।

ଆଉ ଗଳାଟା କି ଗମ୍ଭୀର । ପୁରୁଷର ଗଳା ସେମିତି ହିଁ ହେବା ଦରକାର । ଗମ୍ଭୀର ଗଳାରେ ସ୍ୱରଟି ଯେପରି "ଗୀନା"ର ସ୍ୱର । ଏହିପରି ମଣିଷକୁ ଯେ କେହି ବିଶ୍ୱାସ କରିବେ । ଏମିତି ସ୍ୱର ଶୁଣି କେଉଁ ଯୁବତୀର ଛାତି ଧଡ଼ପଡ଼ ଯେ ନ ହେବ ।

ମେଲାଘର ପିଣ୍ଡାରେ ଗୋଡ଼ ରଖି ସେ କହିଲା "ଘରେ କିଏ ଅଛ ? ଭୋଗରାମ ଦାଦା ନାହାନ୍ତି ।"

ବାସନ୍ତୀ ପାଖଘରୁ ଉତ୍ତର ଦେଲା "ନାହାନ୍ତି, କାହିଁକି ଖୋଜୁଥିଲେ ?"

"ତାହେଲେ ଟିକିଏ ଶୁଣିଯିବେ, ଖବର ଅଛି ।" ବାସନ୍ତୀ ମେଲାକୁ ଆସିଲା । ସେ କହିଲା "ଓଃ !! ତୁମେ ତାହାହେଲେ ବାସନ୍ତୀ । ଭୋଗରାମ ଦାଦା ସବୁବେଳେ କହନ୍ତି ବାସନ୍ତୀ, ବାସନ୍ତୀ । ସେଇଥିପାଇଁ ଭାବିଥିଲି ତୁମେ ଛୋଟ ଝିଅଟିଏ । କିନ୍ତୁ ବର୍ତ୍ତମାନ ଦେଖିଲି ତୁମେ ବେଶ ବଡ଼ ।"

"ବସନ୍ତୁ !"

"ନା, ବସି ପାରିବିନି, ବହୁତ କାମ ଅଛି । ଗୋଟାଏ ଖବର ଦେବାକୁ ଆସିଥିଲି । ଭାଇଙ୍କୁ କହିବ—ପାଉଁଶିଆର ଶାକରାମ ଖବର ଦେଇଛି ଯେ ତା ଘରେ ଗାଡ଼ିଟିଏ ଧାନ ଅଛି । କାଲି ଭିତରେ ତାକୁ ଆଣିବାକୁ ହେବ ।"

"କହିଦେବି"

ମଣିଷଟା ଯେମିତି ଆସିଥିଲା ସେମିତି ଦମଦମ ହୋଇ ଚାଲିଗଲା । ତାର କଥା ଶୁଣୁଶୁଣୁ ତା ମୁହଁକୁ ଚାହିଁ ସମସ୍ତ କଟିଗଲା । ତା ନାଁଟା ପଚାରିବାକୁ ମନେ ପଡ଼ିଲାନି । ସେ ମେଲାକୁ ଆସିବାବେଳେ ଭାଇଜ ଦେଖିଛନ୍ତି କିନ୍ତୁ ସେ କିଏ, ଭାଉଜତ ପଚାରିଲେନି ! ଭାଉଜ ମୁହଁ ଯେମିତି ଧାରୁଆ ନା—ପଚାରିବା ଆଗରୁହିଁ କହିବ କି କଥା ପଚାରିଲୁ ! ମନକୁ ଛୁଇଁଛି ପରା ?

ସେ ଆଉଥରେ ଆସିଥିଲେ, ସେ ଦିନ ଭାଇଙ୍କ ସହିତ କଥାବାର୍ତ୍ତା ହୋଇଥିଲେ । ସେ ଦିନ ଦୁଇକପ ଚାହା ଦେଇ ବାସନ୍ତୀ ଚାଲି ଆସିଥିଲା । କିନ୍ତୁ ସେଦିନ ତା ଛାତିରେ କେମିତି ଗୋଟାଏ କୋମଳ ଆଘାତ ପାଇଥିଲା । ସେ ଚୁପ୍‌ଚାପ୍ ଲୁଚି ଲୁଚି କଥା ମଝିରେ ତାକୁ ଦୁଇଥର ଚାହିଁଥିଲା । ତାର ସୁନ୍ଦର ଚଞ୍ଚଳ ଆଖି ବାସନ୍ତୀର ଛାତି ଉପରେ କିଛି ସମୟ ଅଟକି ଯାଇଥିଲା । ଧନଞ୍ଜୟର ଦୃଷ୍ଟିରୁ ତା ଏଡ଼େଇ ନଥିଲା—ଆଉ ବାସନ୍ତୀ ଲାଜରେ ଜୁଡ଼ୁବୁଡ଼ୁ ହୋଇ ପଡ଼ିଥିଲା । ଚାହା ଦେଇ ଗଲାବେଳେ ବାସନ୍ତୀ ଅସାବଧାନତା ଯୋଗୁ ଦୁଆରବନ୍ଧରେ ଝୁଣ୍ଟି ପଡ଼ିଥିଲା । ତାକୁ ଆହୁରି ବେଶି ଲାଜ ଲାଗିଲା ।

ସୋନାଇର ଅଧା ପାଣିରେ ଠିଆ ହୋଇ ଅଞ୍ଜୁଳା ଅଞ୍ଜୁଳା ପାଣି ଦେହକୁ ପକେଇ ସେ ଏହି କଥା ଭାବୁଥିଲା । ଖରାରେ ଓଦାଦେହ ଶୁଖୁଥାଏ । ସେ ବୁଡ଼

ଗାଧୋଇବାକୁ ଭୁଲି ଯାଇଥିଲା । ଭାବୁଥିଲା ତା'ର ଶେଷଥର ଆସିବା କଥା—ଆଉ କେମିତି ଆସିଥିଲି—ମାନେ ପ୍ରଥମ ଦିନ ।

ସେ ସେଦିନ ମେଲା ଝାଡ଼ୁ କରୁଥିଲା ଆଉ ସେତିକିବେଳେ ସେ ଆସିଲେ । ଏଥର ବାସନ୍ତୀ ସ୍ୱାଭାବିକ ଭାବରେ ବସିବାକୁ କହିଲା । ସେ ମୋଡ଼ାରେ ବସିଲେ । ଝାଡ଼ୁଟା କାନ୍ଥରେ ଆଉଜାଇ କହିଲା, "ଭାଇ ନାହାନ୍ତି, ଫୁଲଗୁଡ଼ା ହାଟକୁ ଯାଇଛନ୍ତି ।"

ସେତେବେଳେ ଭାଉଜ ଘରେ ନ ଥିଲେ, ଆଉ ସେଥିପାଇଁ ପଗ୍ଚରିବାକୁ ବାହାରକୁ ଗଲା ବାସନ୍ତୀ । ବଦୌ ମଣ୍ଡଳ ଘରେ ଝିଅଟା ଖାସିକଟା ହୋଇଛି ଏବଂ ନିମନ୍ତ୍ରଣ ଅଛି—ସେଇଠିକୁ ଭାଉଜ ଯାଇଛନ୍ତି—ପରିବା କାଟି ସାହାଯ୍ୟ କରିବାକୁ । ଦେବକଣ୍ଠ ଓ ଟକୁଣୀ ବାହାରେ ଖେଳୁଛନ୍ତି ।

"ଆଚ୍ଛା ତୁମେ କହିଦେବ, ସେ କାଲି ଯିବାକୁ ମୋତେ କହିଥିଲେ । ଏଇଟି ରଖ । ଏଥିରେ କେତେଟା ଔଷଧ ନାଁ ଲେଖାଅଛି । ଏଇ ରଖ ପଇସା, ଔଷଧ କେତେଟା କିଣି ଆଣିବାକୁ କହିବ । ମୁଁ ପହରଦିନ ଆସି ନେଇଯିବି ।"

ଏହା କହି କାଗଜ ଓ ପାଞ୍ଚଟଙ୍କିଆ ନୋଟଖଣ୍ଡେ ପାଖ ପିଢ଼ା ଉପରେ ଥୋଇ ଦେଲେ । ବାସନ୍ତୀ ନେଲା । ଦୁହେଁ କିଛି ସମୟ ନିର୍ବାକ । ବାସନ୍ତୀ ଅନୁମାନ କଲା —ସେ ଏମିତି ଚୁପ୍‌ଚାପ୍ ଅଶାନ୍ତ ପାଉଛି । ଆଉ ତାଙ୍କୁ ମଧ୍ୟ ଅସ୍ୱସ୍ତି ଲାଗୁଛି । ମେଲା ଘରଟା ଦୁହିଁଙ୍କ ନିରବତାରେ ଯେମିତି ଗୁମୁରି ଉଠୁଛି । ସେ ନିଷ୍ପୃହ ବୁଢ଼ିଆ ଲୋକ । ଶେଷରେ ନିଜେ ସେ ଆତ୍ମବିଶ୍ୱାସରେ କହିଲେ, "ବାସନ୍ତୀ ! ଘରକୁ ମଣିଷ ଆସିଲେ ତୁମେ ଶଙ୍କୁ ଖାଇବ ?" ଏହା କହି ସେ ଖୁବ୍ ଜୋରରେ ହସିବାକୁ ଚେଷ୍ଟା କଲେ । ନିସ୍ତବ୍ଧ ମେଲା ଘରଟା ହଠାତ ମୁଖର ହେଲା ।

ବାସନ୍ତୀର ମନଟା ହଠାତ୍ ହାଲୁକା ହୋଇଗଲା । ବାସନ୍ତୀ ବି ରଙ୍ଗିଲା ଓଠ ଦୁଇଟିରେ ଟିକିଏ ବଙ୍କା ହସ ଖେଳାଇ ଦେଲା । ତାର ମନେ ହେଲା, ଏହି ହସରେ ଯେମିତି ତାର ଜୀବନର ପ୍ରଥମବାର ପାଇଁ ଭଲ ପାଇବାର ବାସନାର ରଙ୍ଗିନ ସ୍ୱପ୍ନ ଉଙ୍କି ମାରିଲା । ଆଗେ ତାର ହସ ଅର୍ଥହୀନ ଥିଲା । ଥିଲା ଶରତର ପାଣି ପରି ନିଷ୍ଫଳ । କିନ୍ତୁ ଏହି ହସଟା ଯେ କେମିତି ପ୍ରାଣର, କେମିତି ଅର୍ଥପୂର୍ଣ୍ଣ ! ସେ ହସଟି ଫୁଲପରି ରଙ୍ଗୀନ ।

"ଆପଣ ବସନ୍ତୁ, ମୁଁ ଚା' ତିଆରି କରି ଆଣେ" ସେ କହିଲେ—"ନା ଦରକାର ନାହିଁ । ସୁନ୍ଦର ଝିଅଟି ମିଛରେ ଏତେ କଷ୍ଟ କରିବ କାହିଁକି ? ତା ଅପେକ୍ଷା ଦିପଦ କଥାବାର୍ତ୍ତା ହେଲେ ଭଲ । ଘରୁ ଚା' ଜଳଖିଆ ଖାଇ ଆସିଛି । ଚା' କରିବା ପରିବର୍ତ୍ତେ

ତୁମ ମୁହଁକୁ ଚାହିଁ ରହିଲେ ଭଲ ଲାଗିବ"। ପୁରୁଷ ମୁହଁରୁ ସୁନ୍ଦର ରୂପର ପ୍ରଶଂସା ଶୁଣି ବାସନ୍ତୀ ଲଜ୍ଜାରେ ମରଗଲା । ଠିଆ ହୋଇ ନଖରେ ମାଟିରେ ଗାର କାଟୁଥିଲା । ଅଳ୍ପ ସମୟ ପରେ କହିଲା "ପାନଖଣ୍ଡେ ତ ଖାଇବେ ।" "ଆଚ୍ଛା ଖରାପ ଲାଗୁଛି ଯଦି ଦିଅ, ଖାଇବି" କହି ଚାହିଁ ଦେଲା । ପାନଆଲଆ ଧରି ସେତେବେଳେ ସେ ଛୋଟ ହସ ଖେଳାଇ କହିଲା—"ଆଜିକୁ ନେଇ ତିନିଥର ଆସିଲେ, ଅଥଚ ନାମଟା ଜାଣିଲି ନା ।"

ସେ କହିଲେ "ତାହାହେଲେ ମୁଁ କଏ କାହାକୁ ପଚାରିନା ? ବୁଝିଲି, ମୋ ଲାଗି ଆଗ୍ରହ ନିଶ୍ଚୟ କମ୍ ।"

ବାସନ୍ତୀ କହିଲା—"ଇସ୍, ଯାକୁ ତାକୁ ପଚାରିବ କେମିତି ?"

ଏଥର ସେ ହସି ହସି କହିଲେ—"ଓ ବୁଝିଲି ! ତାହାହେଲେ ଆଗ୍ରହ ବେଶି ! ତୁମେ ଲାଜକର" । ବାସନ୍ତୀ ହସିଲା । ସେହି ହସ ଭିତରେ କନ୍ୟାର ମୁଖରତା ଶାନ୍ତହୋଇ ପଡ଼ିଲା ।

"ଧର ମୋ ନାଁ ଗନ୍ଧର୍ବ ।"

"ଇସ୍ ! ମଣିଷର ନାଁ ଗନ୍ଧର୍ବ ହୋଇ ପାରେ" ?

"ତାହେଲେ ଧର ରାଜ କୁମାର"

"ଭଲକରି ପଚାରୁଛି । ମିଛ ନାଁ କହି ମଜା ପାଉଛନ୍ତି ?" "ଆଉ ମଜା କରିବାକୁ କଣ ଅଛି । ଧର ମୋ ନାଁ ଅର୍ଜୁନ—ଲକ୍ଷ୍ୟ ଯା'ର ସ୍ଥିର" ।

"ମଣିଷଟି ଭଲ ଅଛା କରିବାର ସୁଯୋଗ ପାଇଛନ୍ତି ।" ଏଥର ସେ ଆହୁରି ମୁଖର ହୋଇ ଉଠିଲେ । ଯାତ୍ରାର ପଦ ପଢ଼ିଲାପରି କହିଲେ—"ଅର୍ଜୁନ, ଫାଲଗୁନୀ, ସବ୍ୟସାଚୀ, ଧନଞ୍ଜୟ, କିରୀଟୀ, ବିଭତ୍ସୁ, ଶ୍ୱେତବାହନ, ବିଜୟ ।"

"ଏଇ ଆଠଟା ନାଁ-ମଧ୍ୟରୁ ଗୋଟାଏ ବାଛି ନିଅ । ତୁମକୁ ଏ ଧନ୍ଦା ଦେଲି ।" ଏହା କହି ସେ ଫାଟକ ପାଖକୁ ଗଲେ । ମେଲା ଘରୁ ବାସନ୍ତୀ ଜୋରରେ କହିଲା "ଆଚ୍ଛା ବିଜୟ ନା ଧନଞ୍ଜୟ" ?

ସେ ଉତ୍ତର ଦେଲେ "ମୋର ନାଁ ସବ୍ୟସାଚୀ ନ ହେବ କାହିଁକି ? ସେ ଆଉଥରେ ପାଖକୁ ଆସି କହିଲେ ଏଇ ଆଠଟା ନାଁ ରୁ କେଉଁଟା ପସନ୍ଦ" ।

"ପସନ୍ଦ କରିବା କଥା ନୁହେଁ । ଯେଉଁ ନାଁରେ ଲୋକେ ତୁମକୁ ଜାଣନ୍ତି ସେଇଟା ଦରକାର । ସବ୍ୟସାଚୀ ନାଁ ଯେ ମଣିଷର ଅଛି ମୁଁ ଜାଣେନା ।"

"ମୋତେ ଲୋକେ ଗୋଟାଏ ନାରେ କାହିଁକି ଜାଣିବେ । ଯେ ଚିହ୍ନି ପାରିବ ସେ ନାମ ନ ଜାଣିଲେ ବି ଚିହ୍ନି ପାରିବ । ତଥାପି ତୁମେ ଯେ କୌଣସି ନାଁ ଟା ଭାବିନେଲେ ହେବ ।

"ଧର ମୋ ନାଁ ଧନଞ୍ଜୟ"

"ହୋଇ ନ ପାରେ"

"ତାହାହେଲେ ବିଜୟ"

"କେଜାଣି ହୋଇପାରେ !"

"ଠିକ୍ ନାଁଟା ଧନଞ୍ଜୟ"

"ଗୁଡ୍, ତାହାହେଲେ ଆଉ ନାଁ ପଚାରିବିନି !

ଯେଉଁ ନାଁ କହିବେ ସେଇଟାକୁ ସନ୍ଦେହ ହେବ ।"

ଗାଧୋଇ ବାଳ ଝାଡ଼ି ଝାଡ଼ି ବାସନ୍ତୀ ଏଇସବୁ କଥା ଭାବୁଥିଲା । ସେ ପହିଲଦିନ ଆସିବା କଥା — । ଆସିବା ଦିନ ହୋଇଗଲା ।

ସେ ଭଦ୍ରଲୋକଙ୍କ ଶୋଇବା ଘରକୁ ଗଲା, ଆଉ ଖୁବ ସାବଧାନରେ ଘରଟି ପରୀକ୍ଷା କଲା । କିଛି ପାଇଲା ନାହିଁ । ଶେଷରେ ବିଛଣା ତଳେ ଗୋଟାଏ ପୁଡ଼ା ଦେଖିଲା । ତାକୁ ଖୋଲିଦେଲା, ଆଉ ଦେଖିଲା କେତୋଟି ଔଷଧର ବୋତଲ । ବୋତଲ ଗୁଡ଼ା ସମାନ ଆକୃତିର । ଏମିତିକା ବୋତଲରେ ହୋମିଓପାଥି ଡାକ୍ତର ଜଣନ୍ତି । କେଉଁଥିରେ ଲେଖାଅଛି 'ପଲସିଟିଲ ୩୦' କେଉଁଟାରେ 'ନକ୍ସ ଭୋମିକା' ଆଉ ସଙ୍ଗରେ ଗୋଟାଏ ନମ୍ବର । ସେ ପୁଣି ଆଗପରି ବାନ୍ଧି ରଖିଲା । ତାର କୌତୁହଳର ଗୋଟିଏ ଅଂଶ ପୂରଣ ହେଲା । ସେ ଭାବିଲା ତାହାହେଲେ ସହରରୁ ଭାଇ ହାତରେ ମଗାଇଥିବା ଔଷଧ ଏଇସବୁ । ତାକୁ ଆକୃଷ୍ଟ କରିବା ପ୍ରଥମ ପୁରୁଷ ତାହାହେଲେ ହୋମିଓପାଥି ଡାକ୍ତର ! ତାର ପୁଣି ମନକୁ ଆସିଲା ଯେ, ଡାକ୍ତରଙ୍କ ପରି ହାତରେ ବ୍ୟାଗ ନାହିଁ କାହିଁକି ? ସଙ୍ଗେ ସଙ୍ଗେ ଭାବିଲା ବୋଧହୁଏ ସେ ବ୍ୟାଗ ହାତରେ ଆଣନ୍ତିନି । ସାଇକେଲ ପଛରେ ଯେଉଁ ଖାକି ବ୍ୟାଗଟା ଥାଏ—ସେଥିରେ ଡାକ୍ତରୀ ଜିନଷ ଥାଏ ।

ଆଜି ତାର ମନ ଅଜଣାରେ ଉଚ୍ଛୁଳି ଉଠୁଛି । ସକାଳର ଥଣ୍ଡା ପବନ ତା ଦେହକୁ ଥଣ୍ଡା ଲାଗୁନି । ଗୋଟାଏ କିଛି ଅଜଣା ଉତ୍ତେଜନା ତା ରକ୍ତକୁ ଗରମ କରୁଛି । ଶୀତ କାଳରେ ଖରା ଜଳି ଯାଉଛି । ଦିପହରରେ ପେଟ ପୁରେଇ ଭାତ ଖାଇ

ପାଉନ । କେଇ ମୁଠା ଖାଇ ହଠାତ୍ ହାତ ଧୋଇଲା । ଅଧଘଣ୍ଟା ପରେ ଖେଳ କମିଲରୁ ତାର ମନେ ପଡ଼ିଲା ଯେ, ଖାଇ ନାହିଁ ବୋଲି ।

ସନ୍ଧ୍ୟା ହେଲା । ଅଳ୍ପ ସମୟ ପରେ ସେ ଆସିବେ । ଆଜ ଆସିବାକୁ କହିଛନ୍ତି ଯେତେବେଳେ ଆସିବେ ନିଶ୍ଚୟ । ପୁରୁଷର ଗୋଟିଏ କଥା । ତାଛଡ଼ା ଚକିଣ୍ଡା କଣ୍ଡବା ମଣିଷର କଥାର ମୂଲ୍ୟ ଆହୁରି ବେଶି । ସୂର୍ଯ୍ୟ ବୁଡ଼ିବାକୁ ବେଶି ହେଲେ ଦୁଇ ଘଣ୍ଟା ବାକି । ଫାଟକ ଆଗ ବୁଢ଼ା ଗୁଆ ଗଛର ଛାଇଟା ବଡ଼ ହୋଇଗଲା ।

ଭଲ ଶାଢ଼ୀଟିଏ ପିନ୍ଧିବାକୁ ତାର ମନେ ହେଲା କିନ୍ତୁ ପିନ୍ଧିଲା ନାହିଁ । ପିନ୍ଧିଲେ ଅନ୍ୟଙ୍କ ଆଖିରେ ପଡ଼ିବ । କୁଆଡ଼େ ଯାଉଛୁ ବୋଲି ପଚାରିବେ । କିନ୍ତୁ ତାର କୁଆଡ଼େ ଯିବାର ନାହିଁ । ତା'ର ଭିତରେ ସେ ବି ଆସି ପାରନ୍ତି । ସେଥିପାଇଁ ଘରପିନ୍ଧା ଶାଢ଼ୀ ଭିତରୁ ଭଲଟି ବାଛି ପିନ୍ଧିଲା । ଧଡ଼ିଥିବା ମନ୍ଦାର ରଙ୍ଗର ବ୍ଲାଉଜଟା ଆଜ କିନ୍ତୁ ତାର ଭାରି ପସନ୍ଦ ହେଲା । ମୁହଁରେ ହିମାନୀ ସ୍ନୋ ଲଗେଇଲା । ତାପରେ ପାଉଡ଼ର ଲଗେଇଲାରୁ ମୁହଁର ରଙ୍ଗଟା ଭଲ ହୋଇଛି କି ନାହିଁ ଭାବି ଅଇନା ଆଗରେ ଠିଆ ହେଲା । ନିଜ ମୁଖଶ୍ରୀର ସୌନ୍ଦର୍ଯ୍ୟରେ ସେ ନିଜେ ବି ବିସ୍ମିତା ହେଲା । ଅଇନା ଆଗରେ ଦୁଇଥର ବିଭିନ୍ନ ଭଙ୍ଗିରେ ଦେହ ଖେଳାଇ ନିଜେ ତୃପ୍ତି ପାଇଲା । ପାନଅାଁ ଖୋଜୁ ଖୋଜୁ ଆସି ପହଞ୍ଚିଗଲେ ଭାଉଜ । ମୁହଁର ରଙ୍ଗ ଦେଖି ଭାଉଜ ପଚାରିଲେ—"କୋଉଠିକୁ ଯିବକି ?"

ଅପ୍ରସ୍ତୁତ ହୋଇ ବାସନ୍ତୀ ଉତ୍ତର ଦେଲା—"କୁଆଡ଼େ ଯିବନି ଭାଉଜ, ମୁହଁଟା ଶୁଖିଲା ଶୁଖିଲା ଲାଗିଲା ଯେ ଟିକେ ସ୍ନୋ ଲଗେଇ ଦେଲି ।"

"ଯିବ ଯଦି କୁହ ମୁଁ ଯିବି । ରଞ୍ଜିତା ଅନେକ ଦିନ ହେଲା ଡାକିଲାଣି ।"

"କୁଆଡ଼େ ଯିବିନାହିଁ । ଦେହ ଭଲ ଲାଗୁନି ।"

"ଆଚ୍ଛା ! ଭାତ ଛାଡ଼ିବା ଦେଖି ଜାଣି ପାରିଥିଲି ଦେହ ଖରାପ ନା ?"

"ନା ମ ଭାଉଜ ! ଏମିତି କାହିଁକି କେଜାଣି ହେଉନାହିଁ । ହଁ ଭାଉଜ ଗୋଟିଏ କଥା ପଚାରିବାକୁ ଭୁଲି ଯାଉଛି । ବିଛଣା ତଳେ ଯେ ପୁଡ଼ା ଅଛି ସେଥିରେ କଣ ଅଛି ?"

"ସେ ଆମ ଜିନିଷ ନୁହେଁ । ଧନଞ୍ଜୟ, ଭାଇଙ୍କୁ ସହରରୁ ଔଷଧ ଆଣିବାକୁ କହିଥିଲା । ପୁଡ଼ାରେ ସେହି ଔଷଧ ଅଛି ।"

"କୁହିଲ, ଧନଞ୍ଜୟ ଘର କେଉଁଠି ଭାଉଜ ?"

“ପାଉଣିଲରେ”

“କଥା ଛଳରେ ସେ ଭାଉଜଙ୍କଠାରୁ ଅନେକ କଥା ବାହାର କରିନେଲା ।”

ତା ନାଁ ତାହେଲେ ଧନଞ୍ଜୟ । ଯାହା ସେ ଅନୁମାନ କରିଥିଲା ଘର ତା'ର ସେଇଠି । ଏଇଆଡ଼ୁ ସିଆଡ଼ୁ ନାଁ କହି ତାକୁ ଗଣ୍ଡଗୋଳରେ ନ ପକେଇଥିଲେ ଭଲ ହୋଇଥାନ୍ତା ।

ଠିକ୍ ସେତିକି ସମୟରେ ଭାଇ ଘରେ ପହଞ୍ଚିଲେ । ତରୁଲତାକୁ ଦୁଇକପ ଚାହା ଆଣିବାକୁ କହିଲେ । ବାସନ୍ତୀ ଠିକ୍ ବୁଝି ପାରିଲା ଯେ ଧନଞ୍ଜୟ ଆସିଛି । ଦୁଆର ଫାଙ୍କରେ ଚାହିଁ ସେ ନିଶ୍ଚିନ୍ତ ହେଲା ଯେ ସେ ଧନଞ୍ଜୟ । ଭାଇ ସଙ୍ଗରେ ଧନଞ୍ଜୟ ଯେ କେଉଁ କଥା କହେ, କାନ୍ଥ ପାଖରେ ଠିଆ ହୋଇ ବାସନ୍ତୀ ଶୁଣିବାକୁ ଲାଗିଲା ।

ଧନଞ୍ଜୟ କହୁଥାଏ—“ଏହା ମୂଳରେ ଅଛନ୍ତି ମହାଜନ ଓ ଦଲାଲ । ଚାଷୀ ଚାଷ କଲେ କଣ ହେବ ? ଲାଭତ ଖାଇବେ ସେମାନେ । କଥା ହେଲା ଉଚିତ ମୂଲ୍ୟରେ ଚାଷୀ ଧାନ ବିକି କରି ପାରୁନି ।”

ଭୋଗରାମ୍ କହିଲା—“ଆମେ ସମସ୍ତେ ସମାନ । ମହାଜନଙ୍କୁ ଉପକାରୀ ମଣିଷ ବୋଲି ଭାବୁ । କିନ୍ତୁ ଘୁଣ ପୋକ ଭଳି ସେ ଯେ ଆମ ରକ୍ତ ଶୋଷି ଖାଉଛି ସେ କଥା ଆମେ ଜାଣି ପାରୁନା ।

ପୁଣି ଧନଞ୍ଜୟ କହିଲା—“ସେଇଥିପାଇଁ ଭାବୁଛି ପାଉଣିଲରେ ଏଥର ଗୋଟିଏ ସମବାୟ ସମିତି ଗଢ଼ିବାକୁ ହେବ । କାରଣ ବର୍ତ୍ତମାନ ଯଦି ଗାଁ ବାଲା……।”

ଏତିକିବେଳେ ଭାଉଜ ଡାକ ଦେଲେ । ଭାଉଜ କହିଲେ, “ପାଣି ଫୁଟିଲାଣି, ତୁମେ ବାହାରେ ଚାହା ଦେଇ ଆସ, ମୋ ଲୁଗା ମଇଳା ।”

ଚାହା ଦେବାବେଳେ ବାସନ୍ତୀ ଧନଞ୍ଜୟକୁ ଚାହିଁ ପାରିଲାନି । ଭାଇଙ୍କ ଆଗରେ ଚାହିଁବାକୁ ଲାଜ ଲାଗିଲା । ସେ ତାକୁ କିଛି ପଚାରିଲା ନାହିଁ । ତଥାପି ସାରାଦିନ ତା ବାଟକୁ ଚାହିଁ ରହିବା—ଚାହିଁ ରହି ବେଶ ଭୂଷା ହେବାଟା ବିଫଳ ହୋଇନାହିଁ ବୋଲି ଭାବିଲା ।

# ଦୁଇ

ବାସନ୍ତୀର ବୋହୂ ସୁଜଳା । ପାକଲା ବୁଢ଼ୀ, ଦେହ ନଇଁ ଗଲାଣି । ବାଳ ପାଚି ଖୋଷ୍ଟ । କଫ କି ବାତ ଗୋଟାଏ ନା ଗୋଟାଏ ରୋଗ ଲାଗି ରହିଛି । ବୟସ କେତେ ହେଲା ବୁଢ଼ୀ ନିଜେ କହି ପାରେନା । କିନ୍ତୁ ବେଳେ ବେଳେ କେବେକାର ଭୂମିକମ୍ପ କଥା ତାର ମନେ ଅଛି ବୋଲି କୁହେ । ସେଥିରୁ ଅନୁମାନ କରିହୁଏ ଯେ ବୁଢ଼ୀର ବୟସ ଚାରିକୋଡ଼ି ପାଞ୍ଚ ବର୍ଷ ହେବ । ବୁଢ଼ୀ ବେମାର ପଡ଼ିଲେ ପୁଅ ଚିକିତ୍ସା କରାଏ କିନ୍ତୁ ଔଷଧ ପଥିର ଖର୍ଚ୍ଚ ବେଶି ହେବାର ଦେଖି ବୁଢ଼ୀ କୁହେ "ମଲି, ହଂସ ଲାଗି ହେଂସ ପାରୁଛୁ ଭଲ କାହିଁକି" ? ଦାନ୍ତ ଗଲା, ନଖ ମଉଳା, ଚମ ଧୁଡୁ ଧୁଡୁ ହେଲାଣି, ଗୋଟିଏ ଗୋଟିଏ କରି ସବୁ ଯମଦୂତଙ୍କ ଘରକୁ ଯିବାର ଚିହ୍ନ ଏ ସବୁ । ଖାଲି ଏ ପ୍ରାଣଟା ଯେ କେଉଁ ଦିନ ଯିବ କିଏ ଜାଣେ ?" କିନ୍ତୁ ପୁଅ ଆଉ ବୋହୂ ବୁଢ଼ୀ କଥାକୁ କାନ ଦିଅନ୍ତି ନାହିଁ । ବୁଢ଼ୀ ବେମାର ପଡ଼ିବା ସଙ୍ଗେ ସଙ୍ଗେ ଚିକିତ୍ସାର ବନ୍ଦୋବସ୍ତ କରନ୍ତି । ବୁଢ଼ୀ ମଧ୍ୟ ସେଥିପାଇଁ ଘରର ସମସ୍ତଙ୍କ ପାଖରେ କୃତଜ୍ଞ । ବୁଢ଼ୀ ଯେତେବେଳେ ହେଲାଣି ବର୍ଷ ଗୋଟାକ ଭିତରେ ଚାଲିଯିବ । ସମସ୍ତେ ତ ବଡ଼ ବଡ଼ ହେଲେଣି । ବୁଢ଼ୀ ଚାଲିଗଲେ ବି ଘର ଠିକ୍ ଚାଲିବ । ସେଥିପାଇଁ ବୁଢ଼ୀ ବେମାର ନଇଆନ୍ତି ନ ହେଲା ଯାଏ ଘରର କେହି ରୋଗ କଥା ଜାଣି ପାରନ୍ତି ନାହିଁ । ବୁଢ଼ୀ ତ ବେମାରି କଥା କେବେ କିଛି କୁହେନା, କିନ୍ତୁ ନ କହିଲେ କଣ ହେବ ! ବାସନ୍ତୀ ଆଉ ତା ଝିଅ ଚାରୁଲତା ବୁଢ଼ୀକୁ ଭଲପାନ୍ତି । ବୁଢ଼ୀର ଅଳ୍ପ କିଛି ହେଲେ ଦୁଇଜଣ ଯାକ ବ୍ୟସ୍ତ ହୋଇ ପଡ଼ନ୍ତି । ଆଜିକୁ ମାସେ ହେବ ଅର୍ଥାତ୍ ଅଗ୍ରହାୟଣ ମାସଠାରୁ ବୁଢ଼ୀ ଖୁବ୍ ଚଲାବୁଲା କରୁଛି । ଦିନେ ବାଡ଼ି ଧରି ବୁଢ଼ୀ କଣ-ପାଇର ଘରକୁ ପାଚିଲା ପାନ ଆଣିବାକୁ ଗଲା । କଣପାଇ ଘର ନ ପାଇ ଭୁଲରେ ମଣିପୁରିଆ ଘର ଦାଣ୍ଡରେ ଯାଇ ବୁଢ଼ୀ ଉଠିଲା । ମଣିପୁରିଆର ବଳଦଟା ଯେମିତି ବକୁଆ ଶିଙ୍ଗ ଦିଟା ବି ସେମିତି ବଡ ବଡ଼ । ତା ଦେହରେ କେହି ହାତ ଦେଇ ପାର-ବେନି । ହକୁଆ ଛଡ଼ା ସେ କାହାରିକୁ ଖାତିର କରେନା । ଯାହାକୁ ତାହାକୁ ଭୁଷି ଦିଏ । ସେ ଅଳିଆଗଦା ଲାଉ ଗଛର ଅଗ ଛିଡ଼ାଇ ଖାଉଥାଏ । ବୁଢ଼ୀକୁ ପାଖକୁ ଆସିବାର ଦେଖି ବଳଦଟା ପାଖକୁ ମାଡ଼ି ଆସିଲା । ଭୁଷି ଦେଇ ବୁଢ଼ୀକୁ ତଳେ

ପକେଇ ଦେଲା । ମଣି ପୁରିଆର ପୁଅ 'ଲସଂଗ' ଆସି ପହଞ୍ଚି ନ ଥିଲେ ବଳଦ ବୁଢ଼ୀକୁ ଶେଷ କରି ଦେଇଥାନ୍ତା ।

ସେହିଦିନଠାରୁ ପୁଅ ବୋହୂ, ବୁଢ଼ୀକୁ ଘରୁ ବାହାରକୁ ଯିବାକୁ ଦିଅନ୍ତି ନାହିଁ । ତଥାପି ବୁଢ଼ୀକୁ ନେଇ ଆଉ ଏକ ଘଟଣା ଘଟିଗଲା । ନଡ଼ିଆଗଛ ତଳେ, ବୁଢ଼ୀ ଗାଧୋଇବା ଲାଗି ବାଲିଟିଏ ପାଣି ରଖାହୁଏ । ବୁଢ଼ୀ ଥରିଲା ହାତରେ ବାଲିଟି ଉଠେଇ ନିଏ । ବାଲିଟି ପାଖରେ ଲୋଟା କି ଗିଲାସ ନ ଥିଲେ ବୁଢ଼ୀ ନିଜ ହାତରେ ଚଳଚଳ ପାଣି ଢାଳି ହୁଏ । ଦି ଦିନ ପରେ ଆଉ ଏକ ଦୁର୍ଘଟଣା ଘଟିଲା । ବୁଢ଼ୀ ବାଡ଼ିପଛକୁ ଝାଡ଼ାଫେରି ଯାଇଥାଏ । ଅଧଘଣ୍ଟା ହେଲା ବୁଢ଼ୀକୁ ନ ଫେରିବାର ଦେଖି ବାସନ୍ତୀ ଆଉ ତନୁଲତା ଚିନ୍ତାରେ ପଡ଼ିଲେ । ବାହାରେ ଓ ଘରେ ଖୋଜି ବୁଢ଼ୀକୁ ନ ପାଇ ବାଡ଼ିକୁ ଯାଇ ଦେଖନ୍ତି ଯେ, ବାଉଁଶ ବାଡ଼ର ପଶ୍ଚିମ ଦିଗରେ ବାରହାତ ଖାଲ ଭିତରେ ବୁଢ଼ୀ ପଡ଼ିଯାଇଛି ।

ଏଥର ସମସ୍ତଙ୍କର ବିଶ୍ୱାସ ହେଲା ଯେ, ବୁଢ଼ୀର ଆଉ ଦୃଶ୍ୟ ଶକ୍ତି ନାହିଁ । ଅବଶ୍ୟ କ୍ଷେତ୍ରରାମ ଏକଥା ଜାଣି ନ ଥିଲା । ବେପାରରେ ଘୁରିଆଡ଼େ ବୁଲିବା ମଣିଷ । ନିଜ ବସାରେ ଚଢ଼େଇ ଯେତିକି ରୁହେ । ବୋଉ ଉପରେ ବାସନ୍ତୀ ଖୁବ୍ ରାଗିଲା । ଆଖିକୁ ଦୃଶ୍ୟ ନାହିଁ । ଏକଥା ତାର ସମସ୍ତଙ୍କୁ ଜଣେଇ ଦେବା ଉଚିତ ଥିଲା । ଯେତେବେଳେ ସବୁ ରୋଗର ଚିକିତ୍ସା ହେଉଛି ତା ହେଲେ ଆଖିର ବ୍ୟବସ୍ଥା ନ ହେବ କାହିଁକି, ପଡ଼ି ଯଦି ସେଦିନ ମରିଯାଇଥାନ୍ତା ଦୋଷ କାହାର ହୋଇଥାନ୍ତା ।

କିନ୍ତୁ ବାସନ୍ତୀ ବୋଉ ଉପରେ ରାଗି ପାରିଲା ନାହିଁ । କୋମଳ ଗଳାରେ ପଚାରିଲା "ବୋଉ ଆଖିକୁ କଷ୍ଟ ହେଉଛି ନା କୁଣ୍ଡେଇ ହେଉଛି ।" ପାଖରେ କିଛି ଦେଖା ଯାଉନି ? ଝିଅ ପିଠି ଆଉଁଷି ଆଉଁଷି ବୋଉ କହିଲା—"ମା କେଇଦିନ ହେଲା ପାଖ ଜିନିଷ ଦେଖା ଯାଉନି । କିନ୍ତୁ ଏଟାକୁ ଠିକ୍ ଆଖିର ବେମାରି ବୋଲି କହି ପାରିବନି—ବୁଢ଼ୀ ହେଲାରୁ ଆଖିରେ ଜାଲ ପଡ଼ିଛି । ଏ ତ ଆଉ ନୂଆ କଥା ନୁହେଁ । ଦାନ୍ତ ଗଲା, ଆଖି ଗଲା—ଗୋଟିଏ ଗୋଟିଏ ସମସ୍ତେ ଯମଦୂତଙ୍କ ସାକ୍ଷୀ । ଜନ୍ମ ମରଣ ବିଧିର ଲିଖନ । ଡାକ୍ତର କବିରାଜ ମୋ ଲାଗି ଆଉ ଦରକାର କଣ ?"

ବୋଉ କଥାରେ ବାସନ୍ତୀ ବଡ଼ ଦୁଃଖ ପାଇଲା । ଏଇତ ଜୀବନ । ତଥାପି ମନୁଷ୍ୟର କି ଗର୍ବ ! ବୋଉ ମୁହଁକୁ ଥରେ ଚାହିଁଲା । ବୋଉର ବ୍ୟଥାଭରା ମୁହଁଟି ଯେମିତି ତାର ସାରା ଜୀବନର ଇତିହାସ କୁହେ । ବୋଉ ହୁଏତ ଖୁବ୍ ବେଶି

ହେଲେ ଆଉ ପାଞ୍ଚଟି ବରଷ ବଞ୍ଚିବ । କିନ୍ତୁ ଏ ପାଞ୍ଚ ବର୍ଷରେ ସେ ଆଉ ଆଲୁଅ ଦେଖିବ ନାହିଁ । ସୃଷ୍ଟିର ସୁନ୍ଦର, ବିଚିତ୍ର ଓ ମନୋରମ ପ୍ରକୃତିକୁ ନ ଦେଖିପାରି କେଉଁ ଆବେଗ ଆଉ କେଉଁ ଭରସାରେ ଜୀଇ ରହିବ ? ବୋଉ ତ ଆଜି ମେଲା ଛାତରେ ସୂର୍ଯ୍ୟ କିରଣର ଝଲମଲ ଦେଖି ପାରିବନି । ଅଥଚ ଏହି ଜନନୀର ଗର୍ଭରେ ସ୍ଥାନ ପାଇ ସେ ପୃଥିବୀକୁ ଆସିଛି । ସେଥିପାଇଁ ଶେଷରେ ସେ ଭାବି ଠିକ୍ କଲା ଯେ, ବୋଉର ଆଖି ଭଲ ନ କରିବା ମାନେ ସେ ମରିଛି ବୋଲି ଧରି ନେବାକୁ ହେବ । ଏହା କେବେ ହୋଇ ନ ପାରେ—କେବେ ହୋଇ ନ ପାରେ । ଭାଇତ ଆଜିକୁ ତିନିଦିନ ହେଲା ଘରକୁ ଆସି ନାହାଁନ୍ତି । ପାଉଁଶି ଖୋଲ ଗାଁକୁ ଯାଇଛନ୍ତି । ସେଠି ବଡ଼ ମେଳା । ଦୁନିଆଁ ଲୋକ ସେଠି । ବଜାର-ଦୋକାନ ବହୁତ । ସେଠି ଗ୍ରାମ ଗ୍ରାମ କଣା କପଡ଼ା, ଗେଞ୍ଜି, କାମିଜ, ବ୍ଲାଉଜ, ସେମିଜ, କମ୍ବଳ ପ୍ରଭୃତି ବିକିକରେ । ଭାଉଜଙ୍କୁ ବାସନ୍ତୀ ସବୁ କଥା କହିଲା । ତରୁଲତା ମଧ୍ୟ ରାଜି ହେଲେ ।

ଦି ପହରରେ ବୋଉ ମୁହଁକୁ ଓଦା ଗାମୁଛାରେ ପୋଛୁ ପୋଛୁ ବାସନ୍ତୀ କହିଲା—"ବୋଉ ଭାବିଛି ଭାଇ ଆସିଲେ କହିବ । ତୋତେ ସହରକୁ ନେଇଯିବେ । ସେଠି ଡାକ୍ତର ତୋ ଆଖିର ପରଳ କାଟି ସଫା କରିଦେଲେ, ପୁଣି ଆଗପରି ସବୁ ଦେଖାଯିବ ।"

କିଛି ସମୟ ପାଇଁ ସୁଜଳାର ମନ ଆନନ୍ଦରେ ଭରିଗଲା । ପଚାରିଲା "ସତେ ! ଆଲୋ ତୁ କେମିତି ଜାଣିଲୁ !"

"ଭାବ ମାଉସୀ ଘରକୁ ଯାଇତ ଜାଣିଛି । ସେଠି ଯୋଗେନ ମଣ୍ଡଳ ବୋଲି ଲୋକଟାଏ ଅଛି । ତା ବୋଉ ଆଖିରେ ଏମିତି ପରଳ ମାଡ଼ି ଯାଇଥିଲା । ସହରରୁ ପରଳ କଟେଇ ଆଣିଲାରୁ ବୁଢ଼ୀ ପୁଣି ସବୁ ଦେଖି ପାରିଲା । ଆଖି ଅପରେଶନ ପରେ ଚଷମା ପିନ୍ଧିବାକୁ ହେଲା ।"

ବାସନ୍ତୀ ଲକ୍ଷ୍ୟ କରି ଜାଣି ପାରିଲା ଯେ, ତା କଥା ବୋଉ ଠିକ୍ ମନ ଦେଇ ଶୁଣୁଛି । ଆଉ ଶୁଣି ଯେମିତି ଆହୁରି ବିମର୍ଷ ହୋଇ ପଡ଼ୁଛି । ଉପରକୁ ମୁହଁ କରି ଗୋଟାଏ ଚିନ୍ତାରେ ସେ ନିମଗ୍ନ । କିଛି ସମୟ ଚୁପ ରହି ବୁଢ଼ୀ ଦୀର୍ଘଶ୍ୱାସଟାଏ ଟାଣି କହିଲା "ପୁଣି ଦେଖି ପାରିଲେ ଭଲ । କିନ୍ତୁ ମୋତେ କଥା ଦେ ବାସନ୍ତୀ ! ଭାଇ କାନରେ ଯେମିତି ଏକଥା ଆଦୌ ନ ପଡ଼େ । ସେ ଭାରି ଦୁଃଖ ପାଇବ । ଦେଖୁନୁ ? ଏଇ ମାସଟା ପାଇଁ ସେ କେମିତି ଖଟୁଛି । ବୁଲି ବୁଲି ତା ଦେହ କଳା-କାଠ ପଡ଼ିଗଲାଣି । ଏମିତି ବେଳେ ପୁଣି ମୋ ପାଇଁ ସେ ଦୁଶ୍ଚିନ୍ତାରେ ପଡ଼ିବା ଉଚିତ ହେବ ନାହିଁ ।"

"କିନ୍ତୁ ନ କହିଲେ ମୁଁ ରହି ପାରିବି କେମିତି ଯେ ?"

"ବୁଢ଼ୀ ହେଲି । ଜ୍ଞାନ ଲୋପ ପାଇଲାଣି । ଏଇଟିକି ଖାଲି ତୁମମାନଙ୍କ ମୁହଁକୁ ଚାହିଁ ଜୀଇ ରହିବା କଥା । ମୋତେ ନେଇ ଯଦି ତୁମେ ସବୁ କଷ୍ଟ ପାଅ ତାହାହେଲେ ବଞ୍ଚି ରହି ଲାଭ କଣ ? ତରୁକୁ କହିଛି ଏଇ ଦୁଇମାସ ମଧ୍ୟରେ ଯେପରି ଭୋଗରାମକୁ ମୋ ଆଖିକଥା କିଛି ନକୁହେ । ଆଉ ତୁ ଯଦି କହୁ ତାହାହେଲେ ମୋତେ ମରିବା ପରି ଦୁଃଖ ହେବ ।"

"ଭାଇତ ପ୍ରାୟ ସବୁଦିନେ ସହରକୁ ଯାନ୍ତି । ତୋତେ ଗାଡ଼ିରେ ନେବାକୁ କିଛି ଅସୁବିଧା ହେବନି ।"

"ଖାଲି ସହରକୁ ଯାଉଛି ବୋଲି, ସବୁ ହୋଇଯିବ ନା ? ଖରଚ କେତେ ହେବ । ତୁ ତ ନିଜେ ଦେଖୁଛୁ ଆମକୁ ସବୁ ପୋଷିବାକୁ ତାକୁ କେତେ କଷ୍ଟ କରିବାକୁ ପଡ଼ୁଛି । ଅନ୍ୟ କିଛି ଉପାର୍ଜନ ନାହିଁ ତାର ।"

କିଛିଦିନ ଭାଇକୁ ନ କହିବାକୁ ବୋଉକୁ କଥା ଦେଲା ସତ କିନ୍ତୁ ବାସନ୍ତୀର ମନଟା ଦବିଗଲା । ବୋଉଠାରେ ଗୋଟିଏ କଥା ଦେଖି ବାସନ୍ତୀ ଖୁବ୍ ଆଶ୍ଚର୍ଯ୍ୟ ହେଲା । ବୁଢ଼ୀ ହେଲାଣି, ଆଖିକୁ ଦିଶୁନି—ରାତିଦିନ ନୀରବରେ କଟାଉଛି । କେମିତିରେ କେମ୍ ଯନ୍ତ୍ରଣା-ଭୋଗୁଛି—ଅଥଚ ତା ମନରେ ଟିକେ ହେଲେ ଦୁଃଖ ନାହିଁ—ବୁଢ଼ୀ ହେବାରେ ଟିକିଏ ହେଲେ ଅନୁଶୋଚନା ନାହିଁ । ସ୍ୱାମୀ ବିୟୋଗର ଯନ୍ତ୍ରଣା, ନୀରବରେ, ସୁଚିରେ ଆଉ ସମ୍ଭ୍ରମ ଭାବରେ ସହ୍ୟ କରି ଚାଲିଛି ! ସେଇଥି-ପାଇଁ ବାସନ୍ତୀ ଅନେକ ଥର ବୋଉର ହୃଦୟ ଦିନଠାରୁ ବୁଢ଼ୀ ଦିନଯାଏ ଜୀବନ କଥା ଜାଣିବାକୁ ଇଚ୍ଛା କରିଛି । ନିଜର ସୀମିତ ଜୀବନର ଜ୍ଞାନ ଓ ଅଭିଜ୍ଞତାରେ ସେ ଅନେକ ସମସ୍ୟାର ସମ୍ମୁଖୀନ ହୋଇଛି । ସେଇଥିପାଇଁ ବୋଉ କଥା ଜାଣିବା ପାଇଁ ତାର ଏତେ କୌତୂହଳ ।

ରାତିରେ ଶୋଇଲାବେଳେ ବାସନ୍ତୀ ବୋଉକୁ କେତେ ପ୍ରକାରର ପ୍ରଶ୍ନ କରେ ଏବଂ ବୋଉ ଏତେ ଶୀଘ୍ର ତାର ପ୍ରଶ୍ନର ମର୍ମ ବୁଝିପାରେ ଯେ, ବର୍ତ୍ତମାନର ଅବସ୍ଥା ଲାଗି ସେ ଆଦୌ ଦୁଃଖିତ ନୁହେଁ । ସେ ତାର ଜୀବନରେ ବହୁତ କିଛି ପାଇଛି, ଜୀବନର ପୂର୍ଣ୍ଣତା ପାଇଛି । ସେଥିପାଇଁ ବର୍ତ୍ତମାନ ତାର ଅନୁତାପ କରିବାର କିଛି ନାହିଁ । ଜୀବନରେ ଯେ କିଛି ପାଇନି, ଅତୀତର ସ୍ମରଣରେ ତା'ର ଜୀବନ ହାହାକାର କରି ଉଠେ—ତା'ର ବଳକାଙ୍ଗ ଜୀବନ ପ୍ରତି ମୁହୂର୍ତ୍ତରେ ତା'ର ପ୍ରାଣକୁ ବିଷାକ୍ତ ଯନ୍ତ୍ରଣାରେ ମନ୍ଥିତ କରେ ।

ପ୍ରାଞ୍ଜଳ ଭାବରେ ବୋଉ ତା କଥା କହିଗଲା ଆଉ ତା'ର ଜୀବନର ଅଭିଜ୍ଞତାରେ ନ ଥିଲା କୌଣସି କୃତ୍ରିମତା । ଖୁବ୍ ଭଲ ଭାବରେ ବାସନ୍ତୀ ଏହାକୁ ଅନୁଭବ କରି ପାରଥିଲା । ବୋଉର ଆତ୍ମପ୍ରତ୍ୟୟ ତାକୁ ଜୀଇ ରହିବାର ଭରସା ଦେଲା ।

ଛନ୍ଦଶୀଳ ଓ ଗତିମୟ ଜୀବନରେ ବହୁତ ଘଟଣା ଏମିତି ଘଟେ ଯାହା ଜୀବନକୁ ବିକ୍ଷିପ୍ତ କରିଦିଏ । ଜୀବନରେ ନୂଆ ଢଙ୍ଗ ଲଗେ କିନ୍ତୁ ସମୟ ସବୁ ପାଶୋରି ଯାଏ । ସମୟ ଯୌବନ ଆଉ ବାସନାକୁ କ୍ଷମା କରେନା । ଯୁଗ ଯୁଗର ପ୍ରବାହିତ ସୋନାଇ ପ୍ରତିଦିନ ବାସନ୍ତୀକୁ ଏହା କହେ । ଅଲେଖା ଭାଷାରେ ବହୁତ କଥା ସୋନାଇ କୁହେ । ତାର କଳକଳ ସ୍ୱରରେ ବାସନ୍ତୀର ମନକୁ ଦୋହଲାଇ ଦିଏ । ଏକ ଅବର୍ଣ୍ଣନୀୟ ମାଧ୍ୟମଦ୍ୱାରା ବାସନ୍ତୀ ଏହି ସବୁ କଥା ବୁଝିନିଏ । କୂଳେ ପାରେ ପ୍ରେମର କଥା, ବଞ୍ଚିଥିବା ଜୀବନର କଥା, ଆଉ ଜୀବନର ନଶ୍ୱରତାର କଥା । ଏହି ସୋନାଇର ସ୍ରୋତ ଉପରେ କେତେ ପ୍ରେମ ଗୁଞ୍ଜରି ଉଠିଛି । ଆଉ କିଏ ଜାଣେ କେତେ ପ୍ରେମ ତା'ର ସ୍ରୋତ ତଳେ ଲୀନ ହୋଇଯାଇଛି ? ସେହି ସୋନାଇ ସ୍ରୋତରେ ବାସନ୍ତୀ ଦେଖିଲା, ଅନଙ୍ଗରୂପୀ ଧନଞ୍ଜୟଙ୍କୁ ! ନୂତନ ଚେତନା ଉଦୟ ହେଲା । ସେ ଅନୁଭବ କରି ପାରିଲା ଯେ ସେ ଯୁବତୀ—କନ୍ୟାକୁ କାହା ନିକଟରେ ଦେଇ ଦେବାର ଓ ହୃଦୟପୂର୍ଣ୍ଣ ପ୍ରେମ ଦେଇ ତାକୁ ଗ୍ରହଣ କରି ନେବାର ସମୟ ଆସି ଯାଇଛି । ଧନଞ୍ଜୟ ଆଉ ତାଙ୍କ ଘରକୁ ଆସିବ ନାହିଁ ? ଆଜିକୁ ଦଶଦିନ ହେଲା ସେ ପାଉଶିଲରେ ନାହିଁକି ? ଆସିଲେ ଏକାଠିଆ ତା ସହିତ ଦେଖା ହେବାର ସୁଯୋଗ ମିଳିବ ତ ? ସୋନାଇ ପୁରିଆର ମହିଷିଆ ବଇଁଶୀ ବଜାଉଛନ୍ତି । ମନ ବ୍ୟାକୁଳ କରେ ଏହି ସ୍ୱର ।

ଘାଟକୁ ଏବେ ମାନ ସଜୀବ କରି ତୋଳିଛି । କଳସୀରେ ପାଣି ଭରିଲାବେଳେ ମନରେ ବନ୍ଦନୀର ଚମକ ଖେଳିଗଲା । ସେଥିପାଇଁ ଅକାରଣରେ ସେ ଭାବୁଛି ଯେ, କେତେଦିନ ପରେ ଯଦି ହଠାତ୍ ଧନଞ୍ଜୟ ଆସି ପହଞ୍ଚେ ତେବେ ସେ କେମିତି ମିଠାକଥା କହିବ ।

କିନ୍ତୁ ବୋଉର ଆଖି ଯଦି ଭଲ ହୋଇଥାନ୍ତା ' ବୋଉର ଆଦେଶ ଲଂଘନ ନ କରି ପାରି, ସେ ଏଯାଏ ଭାଇକୁ ସେ କଥା କହି ପାରିନି । ଆଜିକାଲି ବିନୁଟାଏ ବି ଭାଇ ଘରେ ରହେନା । ସୋମବାର ଦିନ ଦଶମାଇଲ ସାଇକେଲରେ ସହରକୁ ଯାଏ, କୋରିଆରରୁ କିଣିବୋଝ ସାଇକେଲ ବୋହି ରାତିରେ ପହଞ୍ଚେ । ସହରରୁ କିଣି ଆଣିଥିବା ଜିନଷକୁ ସେ କାହାକୁ ଛୁଇଁବାକୁ ଦିଏନା, ସେଥିରେ

ଥାଏ ତା'ର ବେପାରର ଜିନିଷ । ଯେମିତି କାମିଜ, ଶସ୍ତା ଧୋତି, ବଣ୍ଡି ଲିଏ ସୂତା, ଛୋଟ ପିଲାଙ୍କର ଫ୍ରକ ଜାମା, ମାର୍କିନ କନାର ଛୋଟଥାନ ବା ଗୋଟାଏ ଦୁଇଟା ଶସ୍ତା କମ୍ବଳ, ମଙ୍ଗଳବାର ଦିନ ସାଇକେଲରେ ସବୁ ଜିନିଷ ନେଇ ଜାଜବର ହାଟକୁ ଯାଏ ଆଉ ସୂର୍ଯ୍ୟ ଡୁବିଲା ପରେ ଘରକୁ ଫେରେ । ଅନ୍ୟ ଏକ କାମ ପାଇଁ ବୁଧବାର ଦିନ ପୁଣି ସହରକୁ ଯାଏ ଏବଂ ସଞ୍ଜ ଆଗରୁ ଘରେ ପହଞ୍ଚେ । ଆଣିଥିବା ଜିନିଷ ନେଇ ଦଲଙ୍ଗ ହାଟକୁ ଯାଏ ଏବଂ ସଞ୍ଜ ସଞ୍ଜ ଥକ୍କା ହୋଇ ଘରକୁ ଫେରେ । ଶୁକ୍ରବାର ପୁଣି ସହର ଯାଏ ଓ ଶନିବାର ଦିନ ଫଲଗୁଡ଼ୀ ହାଟରେ ବିକି କରେ । ଫଲଗୁଡ଼ୀରେ ଖୁବ୍ ବଡ଼ ହାଟ ବସେ । ସାରାଦିନ ସେଇଠି କଟିଯାଏ । ଶନିବାର ଦିନ ସନ୍ଧ୍ୟାରେ ଘରକୁ ଫେରେ । ତାକୁ ଏତେ ଅଭାବ—ସେଥିପାଇଁ ଏତେ କଷ୍ଟ ଆଉ ଦୁଃଖ ସହ୍ୟ କରି ଚାଲିଛି । ଏତେ କଷ୍ଟ କରିବା ଛଡ଼ା ଅନ୍ୟ ଉପାୟ ନାହିଁ । ଏତେ ବଡ଼ ପରିବାରକୁ କିପରି ବା ପୋଷିବ ? ବଳବାଡ଼ି ମୋଟେ ତିନିଗୁଣ୍ଠ । ଗହଣାକୁ ନିମକାଠି । କଷ୍ଟକରି ବେପାର ନ କରିଲେ ଘର ବୁଡ଼ି ପାଣି ଆଣୁଏ ହେବ । ତାର ଖାଇବା ଶୋଇବାର ସମୟ ନାହିଁ । ଦିନରେ ଗଣ୍ଡେ ଭାତ ଖାଇବାକୁ ସମୟ ନାହିଁ । ଭୋକ ନ ଥିଲାବେଳେ ଭାତ ଖାଇବାକୁ ହୁଏ । ଆଉ ଭୋକ ଲାଗିବା ସମୟରେ ହୁଏତ ସେ ବାହାରେ । ଅନିୟମିତ ହେବା କାରଣରୁ ଆଜିକାଲି ତାର ପିତ୍ତ ବଢ଼ିଛି । ଅଣ୍ଟାରେ ସବୁବେଳେ ସୋଡ଼ାର ପୁଡ଼ିଆ ରଖିଥାଏ । ଭାଇର ଦୁଃଖ ଦେଖି ବାସନ୍ତୀର ଭାରି ମାୟା ହୁଏ । ସେମାନଙ୍କୁ ପୋଷିବା ପାଇଁ ତା'ର କି ଆପ୍ରାଣ ଚେଷ୍ଟା । ବୋଉ ଠିକ୍ କହୁଥିଲା—"ଏଇ କେଇଟା ମାସ ତାର ଭାରି କଷ୍ଟଦିନ, ମୋ କଥା କହିଲେ ତାର ଆହୁରି କଷ୍ଟ ବଢ଼ିବ ।" ତା ଛଡ଼ା ଏତେ ଖଟି ସୁଙ୍କା ଟଙ୍କା ପଇସାର ଅଭାବ ଦୂର ହୋଇ ପାରୁନି । ଲାଭ ଟଙ୍କାରେ କୌଣସି ମତେ ଛତା ତାଲି ପକେଇ ଘର ଚଳେଇ ଚାଲିଛି ।

ତଥାପି ଭାଇକୁ ବୋଉ କଥା କହିବାକୁ ବାସନ୍ତୀ ସୁଯୋଗକୁ ଅପେକ୍ଷା କରି ଚାଲିଛି । କହିବାକୁ ସୁଯୋଗ ନାହିଁ । ଭାଇ ଯେପରି ଭାବରେ ଘରକୁ ଫେରେ, ତାପରେ କହିବାକୁ କେମିତି ଲାଗେ । ବେଳେ ବେଳେ ମନେ ମନେ ରାଗ ଉଠୁଥାଏ । ବୋଧହୁଏ, ସେଦିନ ବେପାରରେ କ୍ଷତି ଘଟିଯାଏ । ଘରେ ଯେତିକି ସମୟ ରହେ, ଛୋଟ ପକେଟ ଖାତାରେ ହିସାବ ଖର୍ଚ୍ଚ ଲେଖେ । ସେତେବେଳେ ଘରେ କିଛି ଜୋରରେ କହିବାକୁ ଡର ଲାଗେ ।

କିନ୍ତୁ ଖୋଗରାମର ନଜର କମ୍ ନୁହେଁ । ଘରେ ଅଳ୍ପ ସମୟ ରହିଲେ ସୁଙ୍କା ବୋଉ ପ୍ରତି ତାର ନଜର ସବୁବେଳେ ଥାଏ । ବୋଉ ଯେ ଧନେ ବାଉଁଶ

ବାଟରେ ଗାଡ଼ରେ ପଡ଼ି ଯାଇଥିଲା ଏ କଥା ସେ ଜାଣେନା । କିନ୍ତୁ ବୋଉର ଆଖି ଯେ ଆଗପରି ନାହିଁ, ଏକଥା ତା'ର ବ୍ୟବସାୟୀ ତୀକ୍ଷ୍ଣ ବୁଦ୍ଧି ଆଉ ସୂକ୍ଷ୍ମ ଦୃଷ୍ଟିରେ ବୁଝି ପାରିଥିଲା । ସେଥିପାଇଁ ବାସନ୍ତୀ ଓ ତରୁଲତା କିଛି କହି ନ ଥିଲେ । କାରଣ ସେ ଠିକ୍ ସମୟରେ ଜାଣି ପାରିବ । ସେ ଜାଣି ପାରିଲା ଆପେ ଆପେ ।

ଖାଇବସି ସେ ତରୁଲତା ଓ ବାସନ୍ତୀଙ୍କୁ ରାଗରେ କହିଲା—ମୁଁ ଜାଣେ ବୋଉ ମୋତେ କିଛି କହିବନି । ଚିକିତ୍ସା କଲେ ମୋ ଉପରେ ଜୁଲମ ହେବ ବୋଲି ସେ ଭାବେ । ତାହା ବୋଲି ତୁମେ ସବୁ ମୋତେ ନ କହିଲ କାହିଁକି ?

ତରୁଲତା ନୀରବ । ବାସନ୍ତୀ ଆପଣାର ଦୋଷ ସ୍ୱୀକାର କରି ନେଲା । ଦୁଇଦିନ ପରେ ଗୋରୁ ଗାଡ଼ିରେ ବୋଉକୁ ସହରକୁ ନେବା କଥା । ସେତେବେଳେ ମୋଟର କାରବାର ନାହିଁ, ସେଥିପାଇଁ ଗାଡ଼ିର ଚକା ଖୋଲି ଦିଆ ହୋଇଛି । ଗାଡ଼ିର ଅଖ ମଧ୍ୟ ଖରାପ ଅଛି । ତେଣୁ ସେ 'ଲଦର' ଘର ଗାଡ଼ି ଆଉ ଗାଡ଼ିଆଳ ବନ୍ଦୋବସ୍ତ କଲା । ଡାକ୍ତରଖାନା ଓ ହସପିଟାଲ କଥା ସେ ଭଲରୂପେ ଜାଣି ନ ଥିବାରୁ ଧନଞ୍ଜୟକୁ ସାଙ୍ଗରେ ନେଇଯିବ । ସେ ଯିବ ବୋଲି କଥା ଦେଇଛି ।

× × × ×

ବଳଦ ଗାଡ଼ିରେ ଛଣ ପକାଇ ତାକୁ ନରମ କରି ଦିଆହେଲା । ହେଂସ ପାରି ଗୋଟିଏ ତକିଆ ଦିଆଗଲା । ବୁଢ଼ୀ ଗାଡ଼ିକୁ ଉଠିଲା ।

ଧନଞ୍ଜୟ ହୋମିଓପାଥି ଚିକିତ୍ସା କଲେ ବି ସହରର ବଡ଼ ବଡ଼ ଲୋକଙ୍କ ସହିତ ତାହାର ପରିଚୟ ଅଛି । ଭଲ କେଇଜଣ ଡାକ୍ତର ମଧ୍ୟ ତା'ର ଚିହ୍ନା ପରିଚୟ । ସେ ସରକାରୀ ଡାକ୍ତରଖାନାରେ ବୁଢ଼ୀକୁ ଦେଖାଇଲା । ସେହି ଦିନ ବୁଢ଼ୀର ଆଖିର ପରଳ କଟା ହେଲା । କିନ୍ତୁ ସେହି ଦିନ ଘରକୁ ଆସିବାକୁ ଡାକ୍ତରଙ୍କଠାରୁ ଅନୁମତି ମିଳିଲା ନାହିଁ । ସେଥିପାଇଁ ଗୋରୁଗାଡ଼ି ନେଇ ଭୋଗରାମ ଘରକୁ ଫେରି ଆସିଲା । କାରଣ ସେ ସହରରେ ଚାରିଦିନ ରହିଲେ ବେପାରର ବହୁତ କ୍ଷତି ହେବ । ଗୁରୁବାର ଓ ଶନିବାର ହାଟ ନ କରି ପାରିଲେ ସପ୍ତାହ ପାଇଁ ଘର ଚଳାଇବା କଷ୍ଟ ହେବ । ଭୋଗରାମର ଅନୁରୋଧରେ ଧନଞ୍ଜୟ ବୁଢ଼ୀ ନିକଟରେ ରହିଲା ।

ଆଖି କଟା ପରେ ବୁଢ଼ୀ ଆଖିକୁ ତିନିଦିନ ପଟି ଦିଆଗଲା । ଚାରିଦିନ ଦିନ ଘରକୁ ନେବାପାଇଁ ଅନୁମତି ମିଳିଲା ।

ଏହା ଭିତରେ ବାସନ୍ତୀର ମନରେ ଢେଉ ଉଠି ପଡ଼ି ଚାଲିଛି । ଧନଞ୍ଜୟ ଖୁବ୍ ଭଲ ମଣିଷ । ସେ ତାର ବୋଉ ନିକଟରେ ଚାରିଦିନ ରହିଲା । ଏହାର କାରଣ

ଏହା ହୋଇପାରେ କି ଯେ ସେ ପରର ଉପକାର କରିବାକୁ ଭଲପାଏ । ସେ ଯଦି ଏମିତି ନିଃସ୍ୱାର୍ଥ, ତାହାହେଲେ ସେ ମଣିଷ ନୁହେଁ, ଦେବତା । କିନ୍ତୁ ବାସନ୍ତୀ ଏହିପରି ଭାବିବାକୁ ସମ୍ମତ ହେଲାନାହିଁ । ଆଉ ଏକ କାରଣ ହୋଇପାରେ ଯେ, ଧନଞ୍ଜୟ ଭାଇ ଓ ବୋଉକୁ ଏହି ସୁଯୋଗରେ ମନର ଆପଣା କରି ତା ସହିତ ମିଳନର ପଥ ସୁଯୋଗ କରିବାକୁ ଖୋଜୁଛି । ଏହି ପ୍ରଶ୍ନ ମନକୁ ଆସିଲାପରେ, ନାନା ଧରଣର ପ୍ରଶ୍ନ ଦୁର ଦୂରାନ୍ତକୁ ତୂଳା ପରି ଉଡ଼ିବାକୁ ଲାଗିଲା । ନିରୋଳାରେ ସେ ପୁଲକ ଅନୁଭବ କଲା, କିବା ଗୋଟାଏ ଅଜଣା ଶିହରଣ ତା ଦେହରେ ଖେଳିଗଲା ।

ବୁଢ଼ୀ ଘରକୁ ଆସି ଦୁଇଦିନ ଝାଲକା ହୋଇ ରହିଲା । କେଇଦିନ ପରେ ଆଖିର ପଟି ଖୋଲିଗଲା । ବୁଢ଼ୀ ଜିନିଷ ଦେଖି ପାରିଲା । ଶ୍ରୀରାମ ଏବଂ ଧନଞ୍ଜୟ ବୁଢ଼ୀକୁ ଦୃଷ୍ଟି ଦାନ କଲେ ।

ବୁଢ଼ୀକୁ ସହରକୁ ନେବାଦିନ ବାସନ୍ତୀ ଅନ୍ୟ ପ୍ରକାର ବ୍ୟସ୍ତ ଥିଲା । ବାସନ୍ତୀ ସ୍ପୃହା ଦେଖାବେଳେ ତା ମୁହଁକୁ ଚାହିଁ ଚାହିଁ ଧନଞ୍ଜୟ ମୃଦୁ ହସିଥିଲା । ବାସନ୍ତୀ ବି ହସ ହସ ମୁହଁରେ ଅର୍ଥପୂର୍ଣ୍ଣ ମନରେ ଧନଞ୍ଜୟକୁ ସମ୍ଭାଷଣ ଜଣାଇଥିଲା । ଗୋଟିଏ ସୁନ୍ଦରୀ ଝିଅର ନିଜର ରୂପ ଉପରେ ସ୍ୱାଭାବିକ ବିଶ୍ୱାସ ଥିବା ଯୋଗୁ ନୈତିକତାର ସବୁ ପ୍ରଶ୍ନ । ଆଜି ଧନଞ୍ଜୟର ଚରିତ୍ରର ବୈଶିଷ୍ଟ୍ୟକୁ ବାଦ ଦେଇ ସେ ଗର୍ବିଣୀ ହୋଇ ଉଠିଥିଲା । ବୁଢ଼ୀ ଲାଗି ଧନଞ୍ଜୟର ଏମିତି ଚିନ୍ତା କାହିଁ ସକାଶେ ? ଧନଞ୍ଜୟର ଏହି ମମତା ହୁଏତ ବୁଢ଼ୀର ଅସହାୟତା ଯୋଗୁ । ଉଦାରତା ! ଅନ୍ୟ କାରଣ ହୋଇ-ପାରେ ଯେ ବୁଢ଼ୀ ବାସନ୍ତୀର ବୋଉ ।

ବୁଢ଼ୀ ସହରରୁ ଆସିଲାଦିନ ଧନଞ୍ଜୟ ଆସିଥିଲା । ବୁଢ଼ୀ ସକାଶେ ସହରରେ କେଉଁ କେଉଁ ଅସୁବିଧାରେ ପଡ଼ିଥିଲା—ସବୁ କଥା ପୁଙ୍ଖାନୁପୁଙ୍ଖ ଭାବରେ ଶ୍ରୀରାମକୁ କହୁଥିଲା । ସେହି ସମୟରେ ବାସନ୍ତୀ ଦୁଆର ସେପାଖରେ ଠିଆ ହୋଇଥିଲା । ମନ୍ତ୍ରମୁଗ୍ଧା ହୋଇ ସେ ଶୁଣିଥିଲା ତା'ର କଥା । ତାର କଥା କହିବାର ଭଙ୍ଗୀ ବଡ଼ ମୋହନୀୟ । କେଜାଣି, ଭଲ ଭାବରେ କହିପାରେ ବୋଲି ଆଉ ଗଳାଟା ସୁନ୍ଦର ହୋଇଥିବାରୁ ! ! ଆଉ ସେ ମଣିଷ ଖୁବ୍ ଦକ୍ଷ । ତା କଥାରୁ ସେ ବୁଝି ପାରିଲା ଯେ ସହରରେ ତାର ବେଶ୍ ପ୍ରତିପତ୍ତି ଅଛି ।

ସେହିଦିନ ସନ୍ଧ୍ୟାରେ ସେ ତାଙ୍କ ଘରେ ପହଞ୍ଚିଲା କିନ୍ତୁ ରାତିରେ ତାଙ୍କ ଘରେ ରହିଯିବା ପାଇଁ ଧନଞ୍ଜୟଙ୍କୁ ଅନୁରୋଧ କରାଗଲା । ତାପାଇଁ ବାହାର ଘରେ ବିଛଣା ବାସନ୍ତୀ ହିଁ ଠିକ୍ ଠାକ୍ କରିଥିଲା ।

ସେଦିନ ଧନଞ୍ଜୟ ପ୍ରଥମେ ତାଙ୍କ ଡାକ କଥା ଆରମ୍ଭ କରିଥିଲା । ସେ କହିଲା—"ବାସନ୍ତୀ ! ଆଜିକୁ ନେଇ ପାଞ୍ଚଥର ତୁମ ଘରକୁ ଆସିଲି । ଅଥଚ ତୁମେ ମୋତେ ନିଜର ବୋଲି ତ ଡାକିଲ ନାହିଁ । କଥା ପଚାରିଲେ ଯାଇ କୌଣସିମତେ ଉତ୍ତର ଦିଅ । ମୁଁ କ'ଣ ତୁମ ଘରକୁ ଗୋସେଇଁ ହୋଇ ଆସିଛି ?"

ବାସନ୍ତୀ କୌଣସି ଉତ୍ତର ଦେଇ ନ ଥିଲା, ଆଉ ତାର ମୁହଁକୁ ଚାହିଁ ଦାନ୍ତ ଚିପି ହସିଥିଲା । ହସିଲା ବେଳେ ତା'ର ଦୁଇ ଗାଲ ସାମାନ୍ୟ ଭିତରକୁ ପଶିଯାଏ । ଗାଲର ଏହି କୁଞ୍ଚନ ତାକୁ ବେଶ୍ ମାନେ । ଯୁବତୀ ଝିଅର ମନରୁ ସେ ଧରିପାରିଥିଲା ଯେ ସେ ଅଭିଯୋଗ କରି କଥା କହି ନ ଥିଲା । କଥା ଲମ୍ବେଇବାକୁ ଗୋଟାଏ ଉପାୟ ଖୋଜି ସେ ହୁଏତ ତାର ମନର କଥା ବ୍ୟକ୍ତ କରିବାକୁ ଚାହୁଁଥିଲା ନରୁବା କଥା କହି ତାକୁ ନିଜର କରିବାକୁ ଚାହିଁଥିଲା । କାରଣ ଯୁବତୀ ଝିଅ ନିକଟରେ ପୁରୁଷମାନେ ମେଣ୍ଢା ହୁଅନ୍ତି, ଆଉ କୌଣସି କୌଣସି ବିଶେଷ ମୁହୂର୍ତ୍ତରେ ମନଟା ବର୍ଷା ଆଗରୁ ମୟୂର ପରି ପୁଚ୍ଛ ଟେକି ନାଚେ । ସେତେବେଳେ ପୁରୁଷର ପୌରୁଷ ଅସ୍ଥିର ହୋଇପଡ଼େ ।

ବାସନ୍ତୀ କିଛି ସମୟ ଲାଗି ନିରବ ରହିଲା । ତେବେ ଧନଞ୍ଜୟ ସହିତ କଥା କହିବାର ଇଚ୍ଛାକୁ ଚାପି ପାରିନଥିଲା । ପଚାରିଲା—"ଆପଣ ପରପାଇଁ ଏମିତି ଖଟିବାକୁ କାହିଁକି ଏତେ ଭଲପାନ୍ତି ?" ତାପରେ ତା ମୁହଁରୁ ହଠାତ୍ ବାହାରି ପଡ଼ିଲା— "ଆପଣ ଏତେ ଭଲ ?" ସେ ଖୁବ୍ ମନଦେଇ ତା କଥା ଶୁଣୁଥିଲା । ଉତ୍ତର ଦେବା-ପାଇଁ ଅଳ୍ପ ଚିନ୍ତିତ ହେଲା ଭଳି ଦେଖାଯାଉଥିଲା । ସେ ଆସ୍ତେ ଆସ୍ତେ କହିଲା— "ଭୁଲିଲ ବାସନ୍ତୀ ! ମଣିଷ ସଦାବେଳେ କେବଳ ସବୁ କାମ ନିଜର ଭଲପାଇଁ କରେନା । ଆଜିର ମଣିଷ ନିଜର ସ୍ୱାର୍ଥ ଗୋପନରେ ରଖି ଅନ୍ୟର ଉପକାର କରିବା ପାଇଁ ଅବଶ୍ୟ ଏବେ ଶିଖିଛି ।"

ଏତିକିବେଳେ ଭିତରୁ ଭାଇଙ୍କ ଗଳା ଶୁଭିଲା; ସେ ଡାକୁଥିଲେ । ସେ ସଙ୍ଗେ ସଙ୍ଗେ ଭାଇ ପାଖକୁ ଗଲା । ଭାଇ କହିଲେ, "ମୋ ଆଲଣାରେ ଖଣ୍ଡେ ଧୋତି ଅଛି । ଧନଞ୍ଜୟ ଭାଇଙ୍କୁ ପିନ୍ଧିବାକୁ ଦେ ।" ସେହି ସମୟରେ ଭାଉଜ ରନ୍ଧାବଢ଼ାରେ ବ୍ୟସ୍ତ ଥିଲେ । ଧନଞ୍ଜୟଙ୍କୁ ଧୋତି ଖଣ୍ଡ ଦେବା ସମୟରେ ସେ ତାର ନିକଟରେ ଠିଆ ହୋଇ ଫିସ୍ ଫିସ୍ କରି କହିଥିଲା, "ଅଚ୍ଛା ବାସନ୍ତୀ, ଦିନର କୌଣସି ସମୟରେ ମୋ କଥା ଭାବକି ?"

ବାସନ୍ତୀ ନିରୁତ୍ତର । ସେ ହାତରେ ମୁହଁକୁ ଢାଙ୍କି ଦେଲା ଆଉ କିଛି ସମୟ ପାଇଁ ନିଶ୍ଚଳ ହୋଇ ରହିଲା । ଧନଞ୍ଜୟ ଆହୁରି ଗୋପନରେ ଆସ୍ତେ ଆସ୍ତେ କହିଲା—

"ତୁମେ ଖୁବ୍ ଭଲଝିଅ । ସେଥିପାଇଁ ମୋ କଥାର କୌଣସି ଉତ୍ତର ଦେଇ ପାରନା । ଏକଥା ମୁଁ ଜାଣେ ଏବଂ ଏକ ପ୍ରକାର ଉତ୍ତର ମୁଁ ପାଇଲି ।" ଏହି କଥା ଶୁଣିବା ପରେ ସେ ଧନଞ୍ଜୟ ପାଖରେ ଠିଆ ହୋଇ ପାରିଲା ନାହିଁ । କଥା ନକହି ବାସନ୍ତୀ ଭିତରକୁ ଗଲା । ତାର ଛାତି ଧଡ଼ପଡ଼ ହେଲା ।

ଧୀରେ ଧୀରେ ଧନଞ୍ଜୟ ପାଖକୁ ଯିବାକୁ ତାର ସଙ୍କୋଚ କମିଗଲା । କାରଣ ତାର ପ୍ରଶଂସାରେ ଘରର ସମସ୍ତେ ପଞ୍ଚମୁଖ ହୋଇଥିଲେ । ବୋଉ କହେ— "ମୋର କେଉଁ ଜନମର ସେ ପୁଅ ଥିଲା । ପ୍ରଥମେ ଭାବିଥିଲି ମୋର ଗୋଟିଏ ବୋଲି ପୁଅ, ପରେ ଜାଣିଲି ଯେ ଧନଞ୍ଜୟ ମୋର ଆଉ ଗୋଟିଏ ପୁଅ ।" ଭାଇ କହେ—"ଧନଞ୍ଜୟ ପରି ପିଲା ବିରଳ । ତା ପରି ମୁଁ ଉଦାର ହୋଇ ପାରନ୍ତି କି ! ଏମିତି ଲୋକର ବନ୍ଧୁତ୍ୱ ମୋର ଭାଗ୍ୟର କଥା ।

ବାସନ୍ତୀ ଏସବୁ ଶୁଣିବାକୁ ଖୁବ୍ ଭଲପାଏ । ଧନଞ୍ଜୟଙ୍କୁ ସେ ଖୁବ୍ ନିଜର ଭାବେ । ଯୁବତୀ ହେବାର ପାଞ୍ଚ ବର୍ଷ ପରେ ହଠାତ୍ ନିଜର ମନଆକାଶରେ ପରିବର୍ତ୍ତନ ଦେଖି ବହୁ ଆଶା-ନିରାଶାରେ ସେ ଚମକି ଉଠେ ।

## ତିନି

ପାଉଁଶିଳର ସବୁଲୋକେ ଧନଞ୍ଜୟଙ୍କୁ ପସନ୍ଦ କରନ୍ତି । ଧନଞ୍ଜୟ କିପରି ଲୋକ ସମସ୍ତେ ଜାଣନ୍ତି । କିନ୍ତୁ ସେ ଯେ କେଉଁଠାରେ ଆସି ଏଠି କେବେ ରହିଲା, ପାଉଁଶିଳର ଲୋକେ ଆଦୌ ଜାଣନ୍ତି ନାହିଁ; ତଥାପି ପାଉଁଶିଳର ଲୋକେ ତାକୁ ନିଜର ବୋଲି ଭାବନ୍ତି । ପଚିଶ ମସିହାରେ ଯେଉଁ ଭୂମିକମ୍ପ ହୋଇଥିଲା, ତାପରେ ସେ ଏ ଗାଁରେ ଆସି ପହଞ୍ଚିଲା । ତାର ଗୁଣ ଭଲ । ମଣିଷକୁ ଭଲପାଇ କଥା କହିଜାଣେ । ବିପଦରେ ପଡ଼ିଲେ ତା'ର ଉପଦେଶ ହିଁ କାମରେ ଆସେ । ତା ଛଡ଼ା ସେ ମଧ୍ୟ ହୋମିଓପାଥି ଡାକ୍ତର । ଲୋକଙ୍କର ତା ଉପରେ ଭଲ ଡାକ୍ତର ବୋଲି ବିଶ୍ୱାସ । ରୋଗୀର ମୁହଁ ଦେଖି, ରୋଗର ଠିକଣକି କଥା ସେ ଜାଣିପାରେ । ସେ ଆସିବାପରେ

ଗାଁରେ ଅନେକ ଉନ୍ନତ ହୋଇଛି । ତାର ସାହାଯ୍ୟ ବିନା ଏତେଶୀଘ୍ର ମାଧ୍ୟମିକ ବିଦ୍ୟାଳୟ ଗାଁରେ ହୋଇ ପାରି ନ ଥାନ୍ତା । ପାହାଡ଼ିଲରୁ ବୋରବୋଗି ଯେଉଁ ସଡ଼କ ପଡ଼ିଛି, ସେଥିପାଇଁ ସେ ସମସ୍ତଙ୍କର ଦସ୍ତଖତ ନେଇ ସରକାର ସଙ୍ଗରେ ବହୁତ ଲଢ଼େଇ କରିଛି । ଶୁଣିଲେ ଆଶ୍ଚର୍ଯ୍ୟ ଲାଗେ । ପାହାଡ଼ିଲର ପ୍ରଥମ ପଶୁଡାକ୍ତରଖାନା ମୂଳରେ ଯେ ସେ, ଏକଥା ଗାଁବାଲା ଭୁଲିପାରିବେ ନାହିଁ । ବର୍ତ୍ତମାନ ଗ୍ରାମବାସୀଙ୍କ ମତରେ ସେ ସମବାୟ ସମିତି ଖୋଲିବା ଚେଷ୍ଟାରେ ଅଛି । ତାର ଚେଷ୍ଟା ନ ଥିଲେ କୃଷୀଙ୍କୁ ସରକାରଙ୍କ ଠାରୁ ବିହନ ଓ କୃଷିଲାଗି ଋଣ ମିଳି ନ ଥାନ୍ତା ।

ପନ୍ଦ୍ରଶ ବର୍ଷ ତଳେ ଦିନେ ହଠାତ୍ ଆସି ଧନଞ୍ଜୟ ପାହାଡ଼ିଲରେ ପହଞ୍ଚେ । ଗାଁ'ର ମୁଖିଆଙ୍କ ପାଖରେ ନମ୍ର ହୋଇ ଜଣାଇଲା ଯେ, ଉତ୍ତର ଆସାମର କୌଣସି ଗାଁ'ରୁ ସେ ଆସିଛି । ସରକାରୀ ଚାକିରିରୁ ଇସ୍ତଫା ଦେଇ ଏଠାକୁ ଆସିଛି – ରୋଜଗାର ରାସ୍ତା ଖୋଜିବା ଲାଗି । ସେ ମାଟ୍ରିକ୍ ପାଶ କରିଛି । ତା'ଛଡ଼ା ସେ ହୋମିଓପାଥି ଚିକିତ୍ସା ମଧ୍ୟ ଜାଣେ । ସମସ୍ତେ ତାକୁ ବୁଟଶାଳୀ ନିକଟରେ ଖଣ୍ଡେ ଜମି ଦେଲେ ।

ତା' ପରେ ତା'ର ଆଚରଣରେ ଗାଁବାଲା ମୋହିତ ହେଲେ । ସେ ହୋମିଓପାଥି ଚିକିତ୍ସା କରି ପଇସା ଉଠାଇଲା । ହୋମିଓପାଥି ଔଷଧର ଦାମ ମଧ୍ୟ କମ୍ । —ଗରିବ ମଣିଷ ପାଇଁ ଏଇ ଦରର ଔଷଧ ଛଡ଼ା ବେଶି ଦରର ଡାକ୍ତରି ଔଷଧ କିଣିବାକୁ ସାମର୍ଥ୍ୟ ନାହିଁ । ତା ଛଡ଼ା ପିଲାପିଲି ଓ ଅନ୍ତଃସତ୍ତ୍ୱା ଘରଣୀଙ୍କ ପାଇଁ ହୋମିଓପାଥି ଔଷଧ ଖାଣ୍ଟି ।

କିନ୍ତୁ ଧନଞ୍ଜୟଙ୍କୁ କେବଳ ହୋମିଓପାଥି ଡାକ୍ତର ବୋଲି ଭାବିବା ଭୁଲ ହେବ । ଔଷଧ ଆଉ ଚିକିତ୍ସା ଜାତି ଓ କୁଳ ବିଚାର ନ କରେ । ସେ ଯଦିଓ ମୂଳ ତ ହୋମିଓପାଥି ଡାକ୍ତର, ମେଲେରିଆରେ ସେ କୁଇନାଇନ୍ ଦିଏ । କାଶରେ ଚ୍ୟବନପ୍ରାଶ ଖାଇବାକୁ ଦିଏ । ବେଶୀ ଦୁର୍ବଳ ହେଲେ ଅଲଗା ଔଷଧ ଦିଏ । ଡାକ୍ତରଖାନା ନଥିବା ଏବଂ କାଦୁଅ ପାଣିରେ ଡାକ୍ତର ନ ଯିବା ଯାଗାକୁ ଧନଞ୍ଜୟହିଁ ଏକମାତ୍ର ଚିକିତ୍ସକ—ଅସହାୟର ସହାୟ ।

ଗାଁବାଲା ତାକୁ ଯେଉଁଠାରେ ଘର ବାନ୍ଧିବାକୁ ଦେଇଥିଲେ ସେଇ ଜାଗାଟି ସେ ସୁନ୍ଦର କରି ତୋଳିଲା । ଜାଗାଟି ଥିଲା ଅନାବାଦ । ସେ ଟଙ୍କା ଦେଇ ଜାଗାଟି କିଣିନେଲା । ଆଉ ନିଜ ନାମରେ ପଟ୍ଟା କରିନେଲା । ଦୁଇଟା ଘରକରି ଘରକୁ ସଜେଇ ନେଲା । ଗୋଟାଏ ଘର ରୋଗୀର ପରୀକ୍ଷା ପାଇଁ ଅଲଗା ରଖିଲା । ଆସ୍ତେ ଆସ୍ତେ ଷ୍ଟେଥିସ୍କୋପ୍, ଆଲମାରି ଆଉ ସାଇକେଲ କିଣିଲା । ମାଇନର ସ୍କୁଲର ହେଡ଼ମାଷ୍ଟର

ହେବାପାଇଁ ଗାଁବାଲା ତାକୁ ଖୁବ୍ ଅନୁରୋଧ କଲେ । ସେ ସେହି ଅନୁରୋଧ ବିନୀତ ଭାବରେ ପ୍ରତ୍ୟାଖ୍ୟାନ କରି କହିଲା—"ଗୋଟାଏ ହାତରେ ଦୁଇଟା ଶେଉଳ ଧରି ପାରିବି ନାହିଁ ।"

ସେହିଦିନଠାରୁ ସେ ସମାଜର ସେବାଲାଗି ନିଜକୁ ଉତ୍ସର୍ଗ କଲା । ଏକ ମନରେ ଚିକିତ୍ସାର ବହି ପଢ଼ୁଥିଲା । ରୋଗୀ ଲାଗି ଖଟି ସେ ଆତ୍ମସନ୍ତୋଷ ଲାଭ କରିଥିଲା । ପୁରୁଣା ଦିନର ଘଟଣାଗୁଡ଼ା ତା'ର ମନକୁ ଜାବୁଡ଼ି ଧରିବାକୁ ସୁଯୋଗ ପାଇ ନ ଥିଲା । ସେ ଜୀବନର ଗୋଟିଏ ଗତି ପାଇଥିଲା । ସେମିତି ଓ ସେଠାରେ ରହିବାର ଗୋଟଏ ଅର୍ଥ ବୁଝି ପାରିଥିଲା । କାଲି ବାସନ୍ତୀ ପାଖରୁ ଆସି ସେ ଜୀଇ ରହିବାର ଆଉ ଗୋଟିଏ ଅର୍ଥ ହୃଦୟଙ୍ଗମ କରିପାରିଲା । ତା' ମନର ହା ହୁତାଶ ବଢ଼ିଲା । ପୂର୍ବର ଆତ୍ମସନ୍ତୋଷ ଏକାଗ୍ରତା, ଆଉ ବାସ୍ତବକୁ ନିରସକ୍ତ ଭାବରେ ଗ୍ରହଣ କରିବାର କ୍ଷମତା ସହସା ଶିଥିଳ ହୋଇ ପଡ଼ିଲା । ଅଜାଣତରେ ନାନା ପ୍ରକାର ଭାବନା ଆସିଲା । ଆଶା ଆକାଂକ୍ଷା ବଢ଼ିଲା । ନିଜକୁ ନିଜେ ବୁଝିବାକୁ ଚାହିଁଲେ ତା' ମନରେ ବହୁତ ପ୍ରଶ୍ନ । ପ୍ରକୃତ ସୁଖ କେଉଁଠି ? ଶଙ୍କରଗୁରୁ କହିବେ—"ହରି ଭକତରେ ! ଈଶ୍ୱର କିଙ୍କର ବୋଲି ଭାବ, ତାଙ୍କୁ ନିଜର ବୋଲି ସବୁକିଛି ସମର୍ପି ଦେବା ।" ସ୍ୱାମୀଜୀ କହନ୍ତି—"ମନୁଷ୍ୟର ସେବାରେ ଦରିଦ୍ର ନାରାୟଣର ପୂଜା କରିବା ।" ତା ମନରେ ବଡ଼ ଅନୁତାପ । ସେ ଯଦି ଆଉ ପଢ଼ାଶୁଣା କରିବାର ସୁଯୋଗ ପାଇଥାନ୍ତା ! ବର୍ତ୍ତମାନ ଯଦି ବହି ପଢ଼ିବାର ସୁଯୋଗ ମିଳୁଥାନ୍ତା, ତାହାହେଲେ ତା'ର କେତେ ପ୍ରଶ୍ନର ଉତ୍ତର, ହୁଏତ ଆଂଶିକ ଉତ୍ତର, ତାକୁ ମିଳିଯାଆନ୍ତା । ଜୀବନର ଖେଳାଧୂଳା ନିଶ୍ଚୟାତ୍ମକ ହିସାବରେ କୌଣସି ସନାତନ ସମାଧାନ ଯେପରି ନାହିଁ ! ତଥାପି ସେ ଲୋକର ହିତସାଧି ସୁଖ ପାଇଛି । ଏହି ସୁଖ ଓ ଆତ୍ମସନ୍ତୋଷହିଁ ତା'ର ସୁଖର ଅନୁଭୂତି ଜ୍ଞାନକୁ ବଢ଼ାଇଛି ।

ସେ କାଲିର କଥା ଭାବି ବେଶି ସଚେତନ ହୋଇ ପଡ଼ିଛି । ବାସନ୍ତୀକୁ ମନର କଥା କହି ସେ ଭୁଲ କରିଛି କି ? ନିଶ୍ଚୟ କରିନାହିଁ ! ସେ ଯେ ଏମିତି ସୁନ୍ଦର ଭାବରେ ଉତ୍ତର ଦେଲା । କେଜାଣି, ସେହି ଉତ୍ତର ଶୁଣି ସେ ଦିନ ଗଣୁଥିଲା । ନିଜକୁ ବୁଝିବାକୁ ସେ ପଛର କେଇଟା ଘଟଣାର ଆଶ୍ରୟ ନେଲା । ଦୁଇଟା ଶ୍ରେଷ୍ଠ ଘଟଣା । ଗୋଟାଏ ବେଶ ତାଜୁପର୍ଯ୍ୟପୂର୍ଣ୍ଣ । ପାଉଁଶିଆର ସନ୍ନିପାତ ରୋଗୀ—ତଥିଦ ଦିନ ପରେ ଆହୁରି ଜର ବଢ଼ିଗଲା । ସେ ସେହିଦିନ ରୋଗୀ ପାଖରେ ଥିଲା । ଗତ ରାତିରେ ରୋଗୀ ବାଉଳୀ କରିଥିଲା । କିନ୍ତୁ ଦୁଇଟି ପାନ ଔଷଧ ଖାଇବା ପରେ, ରୋଗୀ ଶୋଇ

ପଡ଼ିଲା । ତାର ସ୍ତ୍ରୀ ହଲ୍ଲୀ ତା ପାଖରେ ଶୋଇଥିଲା । ସ୍ତ୍ରୀ ତାର ଯୁବତୀ । ଅସାବଧାନ ହୋଇ ଶୋଇଥିବାରୁ ତାର ଦେହରୁ ଲୁଗା ବାହାରି ଯାଇଥିଲା । ଦୀପର ନରମ ଆଲୁଅରେ 'ହଲ୍ଲୀ'ର ସୁଗୋଲ ଓ ଶୁଭ୍ର ଲୋଭନୀୟ ଜଂଘ ଆଉ ଅନାବୃତ ବକ୍ଷସ୍ଥଳ ତାକୁ ଅନ୍ୟମନସ୍କ କରିଥିଲା । କାମନାର ଅଶାନ୍ତ ଚନ୍ଦ୍ରା ତାକୁ ଦହନ କଲା । ସେ ଭାବୁଥିଲା ଯଦି ଦୀପ ଲିଭାଇ ଦେଇ, ତା'ର ହାତ ଧରେ, ତେବେ ସେ ତାର କାମନା ପୂର୍ତ୍ତି କରିବ । କାମନା ଚିତା ରୂପରେ ତା ମନରେ ଜଳିବାକୁ ଆରମ୍ଭ କଲା । ସେ ଭୁଲି ଯାଇଥିଲା, ସୋନାଇର ଈଶ୍ୱର ବଗରେ କେନ୍ଦ୍ର କରି ଗଢ଼ି ଉଠିଥିବା ତାର ଭବିଷ୍ୟତ ଆଉ ତା'ର ସାମୟିକ ଖ୍ୟାତି । କିନ୍ତୁ ହଠାତ୍ ଏକ ଅଜଣା ଶକ୍ତି ତାକୁ ବାଧା ଦେଇଥିଲା । ସେ ଭାବିଲା—ସ୍ତ୍ରୀଟି ଅସହାୟ । ସେହି କାରଣରୁ ହୁଏତ ନିଜର ଦେହ ସଂସାର ସମର୍ପି ଦେବ । ତା ହୃଦୟମୟରେ ହୁଏତ ଅନେକ ଭାବିବ, ଆଉ ଗୋପନରେ ଆଜୀବନ ଧନଞ୍ଜୟ ପାଇଁ ଘୃଣା ପୋଷି ରଖିବ । ଆଉ ଜଣେ ସ୍ତ୍ରୀ ଲୋକର ଘୃଣା ଯେ ତାର ସମସ୍ତ ସତ୍ତା କଳୁଷିତ କରିପାରେ ! ଏଇଟା ମାତ୍ରର ପ୍ରଶ୍ନ । ନିଜର ଲୋକପ୍ରିୟତାର ସୁଯୋଗ ନେଇ ସେ ହୀନ ହୋଇନପାରେ । ଇନ୍ଦ୍ରିୟ ଦମନ କରି ମନକୁ ସେ ସନ୍ତୁଷ୍ଟ କରିନେଲା । ରୋଗୀ ପାଖରୁ ସେ ଚାଲିଗଲା । ଆଉ ପାଞ୍ଚଦିନ ପରେ ଗାଁର ମୁଖିଆ ଶ୍ରୀଧର ବାସ୍ୟନଙ୍କ ପାଖକୁ ଯାଇଥିଲା । ବାସ୍ୟନଙ୍କ ବୟସ ପ୍ରାୟ ପୃଶକୋଡ଼ି ବର୍ଷ । ଗାଁର କଳିଆ ସେ ନିଷ୍ପତ୍ତି କରନ୍ତି । ଜ୍ଞାନୀ ମଣିଷ । ସେ ବାସ୍ୟନଙ୍କୁ କହିଲା—"ବାବା ! ମୁଁ ଭାବୁଛି କେଇମାସ ଧରି ଏଇ ସବୁ କାମରୁ ମୁଁ ଅଲଗା ରହିବି । ମୋର ନିଜ ପ୍ରତି ଅଶ୍ରଦ୍ଧା ହୋଇଛି ।"—ଆଶ୍ଚର୍ଯ୍ୟ ହୋଇ ବାସ୍ୟନ୍ କାରଣ ପଚାରିଥିଲେ । ସେ ଖୁବ୍ ଆବେଗରେ କହିଲା, "ମଣିଷ ମୋତେ ଏତେ ଭଲ ପାଇ ଭୁଲ କରିଛି । ମଣିଷ ମୋତେ ଦେବତା ଜ୍ଞାନ କରି ଆହୁରି ଭୁଲ କରିଛି । ମଣିଷ ମଣିଷ । ଦେବତା ହୋଇ ନପାରେ ।" ତାର କହିବାର ଇଚ୍ଛାଥିଲା । ଯେ, ତା'ର ଭିତରେ ଗୋଟିଏ ବିଷାକ୍ତ ସାପ ଲୁଚି ରହିଛି । କିନ୍ତୁ ଏମିତି କହିବାକୁ ତାକୁ କଷ୍ଟ ହୋଇଥିଲା । ସେ କିଛି କହିଲା, ଶ୍ରୀଧର ବାସ୍ୟନ୍ ସଠିକ ବୁଝି ନ ପାରିଲେ ବି ଭଲଭାବରେ ଉପଯୁକ୍ତ କଥା କହି ତାର ଅନୁତାପ କମାଇଥିଲା ।

କିନ୍ତୁ ସେ ବର୍ତ୍ତମାନ ଭାବିଲା—ବାସନ୍ତୀକୁ ତାର ମନର ଗୋପନ ଆକାଂକ୍ଷାର ଇଙ୍ଗିତ ଦେଇ ଭୁଲ କରିନି । ମଣିଷର ଜୀଇବା ପାଇଁ ଆଉ କିଛି ଦରକାର—ଟିକିଏ କାମଶକ୍ତି ଆଉ ଭଲ ପାଇବା । ଆଉ ବାସନ୍ତୀ ଯେ ତାକୁ ଭଲପାଏ । ଏଇକଥା ତା'ର ଆଖି କୁହେ, ମୁହଁ କୁହେ, ଆଉ ଦେହର ଭଙ୍ଗୀମା ବି କୁହେ । ତା'ଛଡ଼ା ସେ ଯେ, ତାକୁ ନେଇ ସଂସାର କରିବ ! !"

ଦ ପହରରକୁ ସେ ସୋନାଇ ପାରହୋଇ ଦକ୍ଷିଣ କୂଳକୁ ଗଲା । ସାଇକେଲ ସଙ୍ଗରେ ନଥିଲା । ବାସନ୍ତୀ ଘର ନିକଟରେ ତାକୁ ସଙ୍କୋଚ ଲାଗିଲା । ଆଗେ ବାସନ୍ତୀର ଘରକୁ ଯିବା ଓ ବର୍ତ୍ତମାନ ଯିବା ମଧ୍ୟରେ ଅନେକ ପାର୍ଥକ୍ୟ । ତା'ର ଭାବନା ହେଲା ବର୍ତ୍ତମାନ ତାଙ୍କ ଘରକୁ ଗଲେ ଯେପରି କାନ୍ଥର ପ୍ରତ୍ୟେକ କଣା ଆଖିଜାନ ପରି ଲକ୍ଷ କରିବ ।" ସୋନାଇର କୂଳେ କୂଳେ ବୁଲି ବୁଲି ସେ ଠାକୁଆ ଘାଟରେ ପହଞ୍ଚିଲା । ହଠାତ୍ ସେ ଚମକି ଉଠିଲା । ସେ ଏମିତି ଆଶା କରି ନ ଥିଲା । ଘାଟ ପାଖରେ କଦଳୀଗଛ ଛାଇରେ ବାସନ୍ତୀ ଗାଲରେ ହାତ ଦେଇ କଣ ଭାବି ବସି ରହିଥିଲା । ଧନଞ୍ଜୟ ଡାକିଲା, "ବାସନ୍ତୀ !" ସେ ଚମକି ଉଠିଲା । ହଠାତ୍ ଠିଆ ହୋଇପଡ଼ି କହିଲା, "ଆପଣ !" ଧନଞ୍ଜୟ ଆଦେଶ ଦେଲାପରି କହିଲା—"ବସ" । ସେ ବସିଲା । ସେ ଆତୁର କହିଲା, "ତମକୁ କିଛି କଥା କହିବାକୁ ଭାବି ଆସିଥିଲି, ନ କହିଲେ ହୁଏତ ଶାନ୍ତି ପାଇବିନି । ମୁଁ ଖୁବ୍ ଏକଲା, ନିସଙ୍ଗ, ଆଉ ତୁମ ଆଗରେ କିଛି ଦୁଃଖର କଥା କହି ଶାନ୍ତି ପାଇବି ।"

ଏହା କହି ସେ ବସି ରହିଲା, ସମସ୍ତ ଦ୍ୱିପହର । ସୋନାଇର କୂଳ ନୀରବ । ଦୂରରୁ ଗଙ୍ଗା ଚଲାର ଶବ୍ଦ ଭାସି ଆସୁଛି । ନୀରବ ଆତୁର ମୁଖର ହୋଇ ଉଠିଛି । ମାଛରଙ୍କାର ଶବ୍ଦ ମଧ୍ୟ ଭାସି ଆସୁଛି । ଧୀର ପବନ ସେ ପାରିର ସାରୁ ବଗିଚାରେ ଲହରୀ ଖେଳାଉଛି । ପଶ୍ଚିମ ଦିଗନ୍ତରେ କେଇଟି ଡଙ୍ଗା ଏକାଠି ମିଳିଛନ୍ତି । ଦୁଇଟି ପ୍ରାଣ ଯୁବକ ଓ ଯୁବତୀର ହୃଦୟ ଦୁରୁଦୁରୁ କମ୍ପୁଛି । ସେ ନିଜକୁ ଭୁଲି ଯାଇଛି । ସେ କହିଲା—"ବାସନ୍ତୀ ତୁମେ ଏ ଯାଏ ଜାଣନା ଯେ ମୁଁ କିଏ ।" ବାସନ୍ତୀ କହିଲା—"ଆଉ ବେଶୀ କ'ଣ ଜାଣିବା ଆବଶ୍ୟକ ?" ସେ ଅତି ସନ୍ତର୍ପଣରେ ନିଜର ଦୁଃଖର ଇତିହାସ କହି ମନର ବୋଝ ଓହ୍ଲାଇବାକୁ ଚେଷ୍ଟା କରୁଛି ।

"ବାସନ୍ତୀ ! ତୁମେ ହୁଏତ ଜାଣନା ଯେ ଏହି ଭାବରେ ସମାଜର ନାମ କରିବାଟା ନିଜକୁ ଭୁଲେଇ ରଖିବାର ଉପାୟ ମାତ୍ର ।"

'ଏହା କିପରି ସମ୍ଭବପର ?"

"ସତକଥା କହୁଛି । ବହୁତଦିନ ପରେ ସତକଥା କହି ମନ ହାଲୁକା ଲାଗୁଛି । ମୁଁ ଗାଁବାଲାଙ୍କୁ ଯାହା କହୁଛି ସେମାନେ ବିଶ୍ୱାସ କରୁଛନ୍ତି । ସୋନାଇ ପରିଆ ଲୋକେ ଏମିତି ସରଳ । ସେଥିପାଇଁ ସେ ଜାଗା ମୋତେ ନିଜର ଜନ୍ମସ୍ଥାନ ପରି ଲାଗୁଛି । ସେ କେବେହେଲେ ମୋତେ ପଚାରି ନାହିଁ —ମୁଁ ମୋର ଘରୁ କାହିଁକି ପଳେଇଆସିଛି—ମୋର ଘରେ କିଏ ଅଛନ୍ତି ?"

"ତା'ପରେ ?"

"ହଁ, ମୋର ନିଜର ଜୀବନ ତୁମର ଆଗରେ ରଖୁଛି । ତା'ପରେ ତୁମର ମୋ ପ୍ରତି ଦୟା ଆସିବ । ହୁଏତ ସେହି କାରଣ ପାଇଁ ମୋର କାହାଣୀ ତୁମେ କେବେହେଲେ ଭୁଲି ପାରିବ ନାହିଁ ।

"କାହିଁକି ଏପରି କହୁଛ ? ମୁଁ ଜାଣେ ମୁଁ କେବେ ଖରାପ ଭାବିନାହିଁ ।"

"ଶୁଣିବାକୁ ଭଲ ଲାଗୁଛି ବାସନ୍ତୀ ଖୁବ ଭଲ ଲାଗୁଛି" । ବାସନ୍ତୀର ଦୁଇଟି ଆଖି ଛଳଛଳ ହୋଇଉଠେ । ଧନଞ୍ଜୟର ସ୍ୱରରେ ମଧ୍ୟ କମ୍ପନ—ଅସ୍ଥିରତା ଆଉ ଆକୁଳତାରେ ପୂର୍ଣ୍ଣ । ବାସନ୍ତୀ ତା ଗୋଡରେ ଆଶ୍ରୟ ନିଏ । ସେ ମଝିରେ ମଝିରେ ତା'ର ନରମ ଆଙ୍ଗୁଳିକୁ ସ୍ପର୍ଶ କରୁଥାଏ—ଆଉ କେତେବେଳେ ତା'ର କୋମଳ ବାଳ ଖେଳାଇ ନିଜର ଅତୀତର ଜୀବନ କଥା ଶୁଣାଉଥାଏ ।

ଲକ୍ଷ୍ମୀପୁରର ଗୋଟିଏ ଗାଁରେ ତା'ର ଘର । ପିଲାବେଳେ ବାପ ମରିଗଲେ । ବଡ଼ବାପା ପାଖରେ ରହି ସେ ଆଉ ତାର ଭଉଣୀ ବଡ଼ ହେଲେ । ଗରିବ ଅବସ୍ଥାରେ ଆଈ ସୁଙ୍ଗା ପରଘରେ ଚାକରି କରି, ବୋଉ ତାର ଦୁଇ ତିନି ଶ୍ରେଣୀ ଯାଏ ପଢ଼ାଇଲା କିନ୍ତୁ ମା ମଧ୍ୟ ବେଶିଦିନ ବଞ୍ଚିଲା ନାହିଁ । ବଡ଼ବାପା ଭଲଲୋକ ନ ଥିଲେ । ଧୀରେ ଧୀରେ ସେ ଭାଇ ଓ ଭଉଣୀକୁ ଭଲ ଭାବରେ ଦେଖିଲେ ନାହିଁ । କଥା କଥାରେ ଅପମାନ ଦେବାକୁ ଆରମ୍ଭ କଲେ । ସେ ସ୍କୁଲ ଛାଡ଼ି ଗୋରୁ ରଖିଲା । ଭଉଣୀ ମଧ୍ୟ ଚାକରାଣୀ ପରି ଦିନ କଟାଇଲା । କେହି ତାହାର ଖବର ରଖିଲେ ନାହିଁ । କେତେ ରାତି ସେ କାନ୍ଦି କାନ୍ଦି ଉଜାଗରରେ କଟେଇଛି—ତାକୁ ଶୁଣି ମଧ୍ୟ କାହାର ହୃଦୟ ଦରବିଲା ନାହିଁ । ଅର୍ଥାତ୍ ବଡ଼ବାପା ନିଜ ପୁଅଝିଅଙ୍କୁ ଖୁବ୍ ଭଲ ଭାବରେ ପାଳୁଥିଲେ । ସେମାନଙ୍କ ଖାଇବା— ପିନ୍ଧିବା, ଧନଞ୍ଜୟ ଓ ତାର ଭଉଣୀଠାରୁ ଅଲଗା ଥିଲା । ବଡ ହୋଇ ସେ ଏସବୁ ବୁଝି ପାରିଲା ଏବଂ ଶ୍ମଶାନରେ ଯେଉଁଠି ବୋଉକୁ ପୋଡ଼ିଥିଲା, ସେଠି ଠିଆ ହୋଇ ପାଟିକରି କାନ୍ଦିଲା ଏବଂ ନିଜ ମନ କଥା କହିଲା । ଶ୍ମଶାନର ଗମ୍ଭୀର ଆଉ ନିଥର ବାୟୁ ଆହୁରି ବେଦନାମୟ ଏବଂ ଅସହନୀୟ ହୋଇ ଉଠିଲା । କିନ୍ତୁ ଭଗବାନ ତାହାପ୍ରତି ସଦୟ ହେଲେ ନାହିଁ । ସ୍ୱର୍ଗରେ ଥିବା ବୋଉର ଆତ୍ମା ଯଦିଓ ଆଶୀର୍ବାଦ ଦେଲା, ସେହି ଆଶୀର୍ବାଦ ତାର ଜୀବନର କିଛି ଶୁଭ ଦେଲା ନାହିଁ । ସଂକ୍ଷେପରେ ହଠାତ୍ କିଛି ଫଳ ପଡ଼ିଲା ନାହିଁ । ଶ୍ରେଷ୍ଠ ଭଉଣୀ ମନ୍ଥରା ପ୍ରତି ବଡ଼ବାପାଙ୍କ ପରିବାରର ଅତ୍ୟାଚାର ବଢ଼ିବାକୁ ଲାଗିଲା । ଦିନେ ଘରକୁ ଆସି ଭଉଣୀ ପ୍ରତି ଅତ୍ୟାଚାର ଦେଖିଲା, ଯାହା ତା'ପ୍ରତି ଅସହ୍ୟ ହୋଇ ପଡ଼ିଲା । ଦିନେ ମନନ୍ତରକୁ

ଏକାଣ୍ଟିଆ କହିଲା—"ଏବେ ମୁଁ ଏମାନଙ୍କୁ ଦେଖାଇଦେବ—ଘରଛାଡ଼ି ଚାଲିଯିବ । ଏମାନେ ମୋତେ ଘରେ ରହିବାକୁ ଦେବେ କହିବେ ନାହିଁ । ମୁଁ ଏକଥା ଜାଣେ । କେଉଁଠି ଯାଇ ଚାକିରି କରିବ । ତୋତେ ନିୟମିତ ଭାବରେ ପଇସା ପଠେଇବ, ଏମାନଙ୍କର ଅତ୍ୟାଚାରକୁ ଖାତିର ନ କରି ସୁଖରେ ରହିବୁ । ମୋ ଇଚ୍ଛା ଅଳ୍ପ ଡେରି ହେଲେ ବି ମୁଁ ଆସି ତୋତେ ନେଇଯିବି ଓ ନିଜର ଜମିକୁ ଫେରାଇ ନେବି । ଯଦି ନଦେବେ ତାହାହେଲେ ଅଦାଲତରେ ଅଶ୍ରୟ ନେବି ।" ତା କଥାରେ ମନତରି ରାଜି ହେଲା ।

ସେ ଘର ଛାଡ଼ିଲା । ଦବୁଗଡ଼ରେ ପହଞ୍ଚି ଚାହା ଦୋକାନରେ କାମ ଖୋଜିଲା । ଏହିପରି ଦୁଇମାସ କଟିଲା । କିନ୍ତୁ ମନର ବଳ ବଢ଼ିଲା । କୋଡ଼ିଏ ଟଙ୍କା ନେଇ ସେ ଘରକୁ ଫେରିଗଲା । ଚା ଦୋକାନରେ ଆଉ କାମ କରିବାର ଇଚ୍ଛା ତାର ନାହିଁ । ତାକୁ ଦେଖି ବଡ଼ ବାପା ଟିକିଏ ହେଲେ ଅନୁକମ୍ପା ପ୍ରକାଶ କଲେ ନାହିଁ । ତା ଛଡ଼ା ନିଜ ସ୍ତ୍ରୀକୁ ଶୁଣାଇ କହିଲେ—"ସେ କାଲି ଚାଲିଯିବ । ସେ ଯେ କେମିତିକା ପିଲା ମୁଁ ଏତେଦିନ ବୁଝିନଥିଲି । ବୁଝିଛି—ସେ ବାପର ଭାଗ ନେବାକୁ ଆସିଛି ।" ଘରେ ତାହା ସହିତ କେହି କଥା କହିଲେ ନାହିଁ । ଆହୁରି ବଡ଼ବାପା ପୁଅ ନରେନ୍ ତାର ସମବୟସୀ ଓ ବନ୍ଧୁ—ସେ ମଧ୍ୟ କଥାଟି କହିଲାନି—ତାକୁ ଦେଖି ମୁହଁ ଘୁରାଇ ଦେଲା । କେବଳ ମନତରି ତାକୁ ଧରି କାନ୍ଦିଲା । ସେ କିନ୍ତୁ କାନ୍ଦିଲା ନାହିଁ । ସେ ଅଧିକ କଠିନ ହେଲା, ମନତରି ହାତରେ ଟଙ୍କା ଦେଇ ସେ କହିଲା—"ମନ ! ଏଇଥିରେ ଭଲ ଶାଢ଼ୀ କିଣିବୁ ।" ଏହା କହି ସେ ତା କଥା ନ ଶୁଣି ବାକି ପାଞ୍ଚଟା ଟଙ୍କାକୁ ସମ୍ବଳ କରି ଜୀବନ ସଂଗ୍ରାମ ପାଇଁ ବାହାରର ନିର୍ଦ୍ଦୟ ପୃଥିବୀକୁ ଚାଲିଗଲା ।

ଏଥର ସେ ଦବୁଗଡ଼ ଗଲାନାହିଁ । ମରିଣ ପାଇଁ ବସରେ ଟିକଟ କାଟିଲା । ବସର କଣ୍ଡକ୍ଟର ତାର ଜଣାଶୁଣା । କାରଣ ଚାହା ଦୋକାନରେ କାମ କଲାବେଳେ, କଣ୍ଡକ୍ଟର ପ୍ରାୟ ଦୋକାନକୁ ଆସୁଥିଲା । ଖୋଆଙ୍ଗରେ ବସ ଠିଆ ହେଲାବେଳେ ସେ ଧନଞ୍ଜୟକୁ ପଚାରିଲା ଯେ ସେ କୁଆଡ଼େ ଯିବ ? କଣ୍ଡକ୍ଟର ମଣିଷର ଦୁଃଖ ବୁଝିବା ଲୋକ । ଧନଞ୍ଜୟକୁ ଦେଖି ସେ ବୁଝିଥିଲା ଯେ ସେ ବଡ଼ ଅସହାୟ । ଅତି ସହାନୁଭୂତିରେ ତାର ଗନ୍ତବ୍ୟ କଥା ପଚାରିଲା ଆଉ ସେ ଖୁବ୍ ଅଳ୍ପରେ ତା'ର ସବୁ ଦୁଃଖ କଥା କହିଲା । କଣ୍ଡକ୍ଟର ଯୁବକ, ବୟସ କୋଡ଼ିଏ କି ଏକୋଇଶ । କଣ୍ଡକ୍ଟର ପାଖରେ ସେ ତାର ସିଟ ପାଇଥିଲା । ବାଟରେ ଅର୍ଥାତ୍ ଚଳନ୍ତା ବସରେ ସେ ଧନଞ୍ଜୟକୁ ପଚାରିଲା—"ତୁମେ କ'ଣ ପଢ଼ିଛ ?" ସେ କହିଲା—"ଅଷ୍ଟମ ଶ୍ରେଣୀରେ ଚାରିମାସ ପଢ଼ିଥିଲି ।" ସେ ନିର୍ଭୟ ଦେଇ କହିଲା—"ଆଚ୍ଛା ତୁମ ପାଇଁ ମୁଁ ଗୋଟାଏ

ଚାକିରି ଠିକ୍ କରିବ । ତୁମପରି ମୁଁ ମଧ୍ୟ ଅସହାୟ ପ୍ରାଣୀ । ମୁଁ ଏଇ କାମ କରେ କେବଳ ପେଟ ପାଇଁ ନୁହେଁ—ଭବିଷ୍ୟତ ପାଇଁ । ମୁଁ ଟ୍ରାନସପୋର୍ଟ ଅଫିସରେ କାମ ବ୍ୟବସ୍ଥା କରିଛି । ଯେପରି ମୁଁ ଚାରିଟା ଆଗରୁ ଡବ୍ଲୁ ଗଡ଼ ପହଞ୍ଚିବି । ମୁଁ ରାତି କଲେଜରେ ପଢ଼େ । ଏଇଥର ଆଇ. ଏ. ଦେବି । ଶୁଣି ଧନଞ୍ଜୟ ଆଶ୍ଚର୍ଯ୍ୟ ହେଲା । କଣ୍ଡକଟର ଚାକିରି କରି ଯେ ରାତି କଲେଜରେ ପଢ଼େ—ତାର ମନୋବଳ ଅସୀମ । କଣ୍ଡକ୍ଟର ଆହୁରି କହିଲା—"ଦୁଃଖ ଦୁର୍ଯ୍ୟୋଗ ତ ଅଛି । ବୁଝିଛ ଭାଇ ଯେତେ ବିପଦର ଆମେ ସମ୍ମୁଖୀନ ହେବା—ଆମେ ସେତିକି ଦୃଢ଼ ହେବା । ତା ହେଲେ ଆମର ନିସ୍ତାର ନାହିଁ । ଶ୍ରେଷ୍ଠ ଅବସ୍ଥାରୁ ହିଁ ଆମେ ବଡ଼ ହୋଇ ପାରିବା ।" ଏଇ କେତୋଟି କଥା ଧନଞ୍ଜୟକୁ ବଳ ଦେଲା । ସତରେ କଣ୍ଡକ୍ଟର ତାକୁ ଚାକିରି ଯୋଗାଡ଼ କରିଦେଲା ।

ଚାହା ବଗିଚାରେ ପେନ୍‌ସନ ପ୍ରାପ୍ତ ଡାକ୍ତର ଗୋଟିଏ ନୂଆ ଔଷଧ ଦୋକାନ ଖୋଲିଲେ । ଦୋକାନରେ ଔଷଧ ଅଛି । ତାଙ୍କୁ ସାହାଯ୍ୟ କରିବାକୁ ପିଲାଟିଏ ଲୋଡ଼ା । କମ୍ପାଉଣ୍ଡର ରଖିଲାଭଳି ଶକ୍ତି ତାର ନାହିଁ । ଇଂରାଜୀ ପଢ଼ି ପାରିବା ପିଲାଟିଏ ହେଲେ ହେଲା---ଶିଖାଇଲେ ମିକ୍ସ୍ଚର ତିଆରି କରି ପାରିବ । ସେ ନ ଥିଲା-ବେଳେ ଗ୍ରାହକଙ୍କୁ ଔଷଧ ବିକ୍ରି ମଧ୍ୟ କରି ପାରିବ । ଜଣାଶୁଣା କଣ୍ଡକ୍ଟର ଧନଞ୍ଜୟକୁ ତାଙ୍କ ପାଖକୁ ନେବାରୁ ଡାକ୍ତର ଖୁବ୍ ଖୁସୀ ହେଲେ । ମାସରେ କୋଡ଼ିଏ ଟଙ୍କା ହିସାବରେ ଧନଞ୍ଜୟ ସେଠି କାମ କଲା । ତା'ରି ଭିତରେ ସେ ଚିକିତ୍ସାର ବିଷୟରେ କିଛିକଥା ଶିଖିନେଲା । ଦୋକାନରେ ରହି ସେ ଜାଣି ପାରିଲା ଯେ, ବେଶି ମଣିଷ ହୋମିଓପାଥି ଔଷଧକୁ ଭଲପାନ୍ତି । ତା'ଛଡ଼ା କେତୋଟି ବେମାରିରେ ହୋମିଓପାଥି ଔଷଧ ଭଲ । ମରିଣିର ପଶ୍ଚିମ ଦିଗରେ ଥିବା ଡାକ୍ତରର ରୋଜଗାର ଖୁବ୍ ବେଶି । ଧନଞ୍ଜୟର ହୋମିଓପାଥି ଶିଖିବାକୁ ଖୁବ୍ ଆଗ୍ରହ ଥିଲା । ଶିଖିବାକୁ ସୁବିଧା ଅଛି କାରଣ ହୋମିଓପାଥି ବହି ବଙ୍ଗଳା ଓ ଆସାମୀୟାରେ ଅଛି । ମରିଣିରେ ଥିଲାବେଳେ ସେ ଦୁଇଟି ବହି ପଢ଼ିଲା ଓ ଗୋଟିଏ ବହି କିଣି ରଖିଲା । ମରିଣିରେ ରହିବାକୁ ଭଲ ଲାଗିଲେ ମଧ୍ୟ ସେ ଭାବିଲା ଯେ, ଏମିତି ରହିଲେ ତାର ଉନ୍ନତି ହେବ ନାହିଁ । ଗାଁବାଲାଙ୍କୁ କହି ସେ ଭିତରୁ ବାଲି ଗାଁରେ ଚଟଶାଳୀରେ ମାଷ୍ଟର କାମ ପାଇଲା । କାରଣ ସ୍କୁଲ ମାଷ୍ଟର ହେଲେ, ସ୍କୁଲରେ ନ ପଢ଼ି ସୁଦ୍ଧା ମାଟ୍ରୀକ ପରୀକ୍ଷା ଦେଇ ପାରିବ । ସେଇଠି ରହି ସେ ମାଟ୍ରିକ ପାଶ କଲା, ମନ ଆହୁରି ଉତ୍ସାହିତ ହେଲା, କଣ୍ଡକ୍ଟର ପରି କଲେଜରେ ପଢ଼ିବାକୁ ମନ ହେଲା । ନୂଆ ହୋଇ ଖୋଲିଥିବା ଷ୍ଟାଟିଷ୍ଟିକ୍ ଅଫିସରେ କିରାଣୀ ଚାକିରି ପାଇଲା । ତାହା ହେଲା,

ଅଗଷ୍ଟ ୧୯୫୦ ମସିହା । ହଠାତ୍ ଆସିଲା ପ୍ରଳୟଙ୍କରୀ ଭୂମିକମ୍ପ । କେତେ ମଣିଷ ମରିଲେ—କେତେ ଗୋରୁ ଗାଈ ମଲେ ତା'ର ଅନ୍ତ ନାହିଁ । କେତେ ଚରନ୍ଦନ ପାଇଁ ନଖୋଜ ହେଲେ ।

ଏତକ୍ସବୁ କହିବା ପରେ ଧନଞ୍ଜୟ ନୀରବ ହେଲା । ତାର ବର୍ତ୍ତମାନ ମନେ ପଡ଼ିଲା ଯେ, ବାସନ୍ତୀ ତାର ଗ୍ରନ୍ଥରୁ ମୁଣ୍ଡ ଉଠାଇ, ଗାଲ ଉପରେ ହାତ ରଖି ଏକ ଧ୍ୟାନରେ ତାର କଥା ଶୁଣୁଛି ।

ସେ ହଠାତ୍ କହିଲା "ଧନଭାଇ !" ନିଜେ ନିଜର ସ୍ୱର ଶୁଣି ସେ ଆଶ୍ଚର୍ଯ୍ୟ ହେଲା—

ଧନଞ୍ଜୟ ପଚାରିଲା – "ବାସନ୍ତୀ ! ତୁମେ କଷ୍ଟ ପାଇଲକି ?

"ମୋ' ରାଣ—ତୁମେ କହିଯାଅ"

"ମୋର ଦୁରବସ୍ଥା କଥାଶୁଣି ଦୁଃଖ ପାଉନାହଁ ତ ?"

"ଦୁଃଖ ହେଲେ କଣ ହେଲା ? ପୁଣି ମୁ ବି ଯଦି ଆପଣଙ୍କ କଥା ନ ଶୁଣିବି···· ?"

ଶୁଣ ବାସନ୍ତୀ ! ମୋ ଭଉଣୀ ପାଇଁ କେବଳ ଦୁଇବୁନ୍ଦା ଲୁହ ।

"ଆପଣଙ୍କ ଭଉଣୀ ପାଇଁ !

ଭୂମିକମ୍ପରେ ସେ କଣ ମରିଗଲା ?"

"ମରିଥିଲେ ଭଲ ହୋଇଥାନ୍ତା । ଭୂମିକମ୍ପର ପ୍ରଳୟ ଦେଖି ତା ପାଇଁ ମୋ ହୃଦୟ ଥରିଗଲା । ଭାବିଲି, ତାର କଣ ହେଲା ? ଘରକୁ ଗଲି । ଦେଖିଲି ଯେ, ମୋ'ର ଭିଟାମାଟିର ଚିହ୍ନନାହିଁ । ବ୍ରହ୍ମପୁତ୍ରରେ ସବୁ ମିଶିଯାଇଛି । ମୋ ଧାନଜମି ବାଲିରେ ଭର୍ତ୍ତି । ସେଥିରେ ଫସଲ ଆଉ ହେବନି । ବ୍ରହ୍ମପୁତ୍ର ପାଣି ରାସ୍ତାଘାଟ ଓ ବିଲ୍ ବାଡ଼ିରେ ଜମା । ବ୍ରହ୍ମପୁତ୍ରର ଏହା ନିୟମିତ ନୀତି ?"

"ଆପଣ ଘରେ କାହାକୁ ପାଇଲେ ନାହିଁ ?"

"କିଏ କହିଲେ ସେମାନେ ନାହାନ୍ତି, କିଏ କହିଲେ ସେମାନେ କିଛି ଜାଣନ୍ତି ନାହିଁ । ବଡ଼ବାପା ପିଲାପିଲି ନେଇ ଶିବସାଗର ଗଲେ । ସ୍ୱ ବଗିଚାରେ ଚାକିରୀ ଯୋଗାଡ଼ କରିଥିଲେ । ଆଉ ମନ୍ତର ? ଧନଞ୍ଜୟ ବିଚଳିତ ହୋଇ ପଡ଼ିଲା । ଦୁଇବାର ଛେପ ଢୋକି ଦୁଃଖକୁ ଦବେଇବାକୁ ଚେଷ୍ଟାକରି ଧନଞ୍ଜୟ କହିଲା—"କଣ କରିବ ? ସେତ ମୋର ଦୋଷ । ଶୁଣିଲି ଦମାସ ତଳେ ଅନେକ ଟଙ୍କା ନେଇ ବଡ଼ ବାପା ତାକୁ ବୁଢ଼ାବରକୁ ଦେଇଦେଲେ । ସେ ତ କିଛି ଜାଣେ ନାହିଁ । ମୋ

ପାଖକୁ ଖବର ଦେବାର ଶକ୍ତି ତା'ର ନାହିଁ । ଜୋର ଜବରଦସ୍ତି କରି, ତାକୁ ବାହାରେଦେଲେ ।"

ବାସନ୍ତୀ ଏକ ଦୀର୍ଘଶ୍ବାସ ନେଲା । ଧନଞ୍ଜୟ ଦେଖିଲା ଯେ ତା ଆଖିରୁ ଦୁଇବୁନ୍ଦା ପାଣି ଗଡ଼ିଗଲା । ସେ ତା' ହାତକୁ ହଲେଇ ଅଳ୍ପ ନାଟକୀୟ ଭାବରେ କହିଲା, "ତୁମେ କୁହତ ବାସନ୍ତୀ ! ଏସବୁ ଶୁଣିଲାପରେ କୁହ ମୁଁ କେମିତି ଧର୍ଯ୍ୟଧରି କାମ କରିବି ? ମନରେ ମୋର ଏକମାତ୍ର ଭରସା ଥିଲା—ସେ ଭରସା ଗଲା—ତାହା ହେଲେ କାହାପାଇଁ ମୁଁ ଏତେ ଖଟିବି ? ଆଉ ବଡ଼ହୋଇ ମୋର ଲାଭ ବା କଣ ?"

ଧନଞ୍ଜୟ ବାସନ୍ତୀ କାନ୍ଧରୁ ହାତ ତଳକୁ ନେଲା ଏବଂ କହିଲା "ବାସନ୍ତୀ ! ସେଦିନ ବ୍ରହ୍ମପୁତ୍ର କୂଳରେ ବସି ଭାରି ହତାଶ ହେଲି । ଭାବିଲି ଶିବ ସାଗର କି ଲକ୍ଷ୍ମୀପୁର କେଉଁଠିନା କେଉଁଠି ରହିଲେ ମନ୍ଦିରା ସହିତ ଦେଖା ହୋଇପାରେ । ଆଉ ମୁଁ ମଧ୍ୟ ତାକୁ ଦେଖିବାର ଇଚ୍ଛାକୁ ଦମନକରି ପାରିବିନି । ତାକୁ ଦେଖିଲେ ବି ମୁଁ ତାକୁ କି ସାନ୍ତ୍ବନା ଦେବି ? ବୃଢ଼ାର ସ୍ତ୍ରୀ ଭାବରେ ମୁଁ ତାକୁ କେମିତି ଦେଖିବି ?" କହି ନୀରବ ହେଲା ଧନଞ୍ଜୟ । ଅବଶ ହୋଇ ବସି ରହିଲା । ବାସନ୍ତୀ ତା ପାଖରେ ଠିଆହୋଇ ତା ମୁଣ୍ଡ ଆଉଁଷିଲା ।

ସେ ଖୁବ୍ ଆସ୍ତେ ଆସ୍ତେ କହିଲା—"ଅନେକ ଭାବିଚିନ୍ତି ମୁଁ ଏଠାକୁ ଆସିଛି । ଏ ମୋର ଅଜ୍ଞାତବାସ । ଏଠି ଥିଲେ ମୁଁ ବଡ଼ବାପାଙ୍କ କଥା ଶୁଣି ପାରିବିନି କି ମନ୍ଦିରା ମଧ୍ୟ ମୋତେ ଖୋଜି ପାଇବ ନାହିଁ । ଭାବୁଛି ଏଠି ରହିଲେ ମୁଁ ନିଜକୁ ଭୁଲି ପାରିବି ।"

ବାସନ୍ତୀର ଦୁଇ ହାତ କମ୍ପି ବାକୁ ଆରମ୍ଭ କଲା । ସେ କଣ ପଚାରିବାକୁ ବ୍ୟାକୁଳ, କିନ୍ତୁ କଥା ମୁହଁରେ ହିଁ ରହିଗଲା । ସେ ପଚାରିବାକୁ ଚାହୁଁଥିଲା—"ତୁମେତ ବହୁତ ଜାଗାରେ ରହି ବହୁତ ଜାଗା ଛାଡ଼ି ଆସିଲ । ଏବେ ସୋନାଇ କୂଳକୁ ଛାଡ଼ି ଯାଇପାର !"

କିନ୍ତୁ ସେ ପଚାରି ପାରିଲା ନାହିଁ ! ଭାବିଲା ଯେ ସେ ସୋନାଇକୂଳ ଛାଡ଼ିଯାଇ ପାରିବନାହିଁ । କାରଣ ଧନଞ୍ଜୟ ବାସନ୍ତୀକୁ ଛାଡ଼ିଯାଇ ପାରିବ ନାହିଁ । ଧନଞ୍ଜୟର ଆଉ ଗୋଟାଏ କଥା ମନେ ପଡ଼ିଲା । ସବୁ କଥା କହିଲା କିନ୍ତୁ ନିଜ ଜାତି କଥାତ କାହିଁକି ସେ ନିଜେ କହିଲା ନାହିଁ !!

"ଏତେ କହୁଛ କିନ୍ତୁ ନିଜର ବଂଶ ପରିଚୟ ଦେଇନାହଁ"—ସେ ଉପରେ ପଡ଼ି କହିଲା—"ବାସନ୍ତୀ ! ମୋ ଜାତି କଣ ଜାଣ ?"

ବାସନ୍ତୀର ସ୍ଫୁଟ ଥର ଉଠିଲା । କିଏ ଜାଣେ । ସେ ତାର ଆଶା ନ କରିବା ଜାତି ହୋଇପାରେ । ଯଦି ସେ କୁହେ ଯେ ସେ ନୀଚ କୂଳର ? ସେ ଅଳ୍ପ ମ୍ରିୟମାଣ ହୋଇ ପଡ଼ିଲା ।

ବଡ଼ ବିତୃଷ୍ଣାରେ ଧନଞ୍ଜୟ କହିଲା—"ଜାତିରେ ମୁଁ ବ୍ରାହ୍ମଣ । ଠିକ୍ ସମୟରେ ପଇତା ପିନ୍ଧି ଆମକୁ ଆହୁରି ଥରେ ଦ୍ୱିଜ ହେବାକୁ ହୁଏ । ପିଲାଦିନୁ ଶୁଣି ଆସିଛୁ ଯେ, ବ୍ରାହ୍ମଣ ଯଦି ନୀଚ କୂଳର ଲୋକକୁ ଛୁଏଁ ତାହାହେଲେ ତାକୁ ଗାଧୋଇବାକୁ ପଡ଼େ ।"

ବାସନ୍ତୀ ଆଖି ବନ୍ଦକଲା । ଦୂରରୁ ଭୋଗରାମର ଗଳାଶୁଣି ବାସନ୍ତୀ ସଜାଗ ହେଲା । ଦୁଇଜଣ ସଙ୍ଗେ ସଙ୍ଗେ ଅଲଗା ହୋଇ ଦୁଇଦିଗକୁ ଚାଲିଲେ ।

## ଚାରି

ଆଗଦିନର କଥା ଭାବି ବାସନ୍ତୀ ମଝିରେ ମଝିରେ ଯଦିଓ ରୋମାଞ୍ଚିତ ହୋଇ ଉଠେ ତଥାପି ତାର ଗୋଟିଏ କଥା ନେଇ ଅନୁତାପ ହୁଏ । ତା'ର କଣ ଦୋଷ ହୋଇଛି, ଥରକୁ ଥର ସେ ସେହିକଥା ଭାବୁଥାଏ । ଭଗବାନଙ୍କ ଦୟାରୁ ତାକୁ ଧନଞ୍ଜୟ ସଙ୍ଗରେ ଏକାଟିଆ କଥାବାର୍ତ୍ତା କରିବାର ସୁଯୋଗ ମିଳିଥିଲା । ଆଜି ପ୍ରଥମ ଦିନରେ ସେ ତା ହାତକୁ ଧନଞ୍ଜୟ ହାତ ଉପରେ ରଖିବାକୁ କାହିଁକି ଦେଇଥିଲା ? ସେହି କାରଣରୁ ଧନଞ୍ଜୟ ତାକୁ ଶସ୍ତା ଧରଣର ଝିଅ ଭାବିନେଲା କି ? ତା'ର ବାଳରେ ହାତ ବୁଲେଇଥିଲା । ସେଥିପାଇଁ ମନକୁ ମନ ଯୁକ୍ତିକରି ସେ ନିଜକୁ ସାନ୍ତ୍ୱନା ଦେବାକୁ ଚେଷ୍ଟାକଲା । ସେ ତାର ଆଗରେ ନିଜକଥା କହିବାକୁ କିଞ୍ଚିତ୍ ଉତ୍ସାହ ପାଇଥିଲା । ଦୁଇଟା ତିନିଟା କଥା କହି ସେ ଆଙ୍ଗୁଳିଗୁଡ଼ିକୁ ଚାହିଁଥିଲା । ତାର ମନେହେଲା ଯେମିତି ତା' ଆଗରୁ କେହି ତାକୁ ସାନ୍ତ୍ୱନା ଦେଇନ । ସେ ତାର ଆଙ୍ଗୁଳିକୁ ଦୁଇ ହାତରେ ଆଉଁଷୁଥିଲା । ସେତେବେଳେହିଁ ସେ ତାର ମନର ଦୁଃଖ କଥା କହିପାରିଥିଲା । ତା'ର ସ୍ପର୍ଶକାତର ଯନ୍ତ୍ରଣାଗ୍ରସ୍ତ ମନ ଯେପରି ବାସନ୍ତୀକୁ ସ୍ପର୍ଶକରି

ଅସହାୟତାରୁ ମୁକ୍ତି ଖୋଜୁଥିଲା । ସେ ଆପଣା ହାତକୁ ବାସନ୍ତୀ ହାତରେ ରଖି ତା' ମୁହଁକୁ ଚାହିଁ ଥିଲା, ଆଉ ବୋଧହୁଏ ଭାବୁଥିଲା ଯେ ତା'ର ଆଙ୍ଗୁଳି ଗୁଡ଼ାକ କି ସୁନ୍ଦର ! ସେ ଆଜି ଜାଣିପାରିଲା ଯେ ପୁରୁଷର ପ୍ରଥମ ସ୍ପର୍ଶ ତାର ମନରେ କମ୍ପନ ଆଣିଛି ! ମନ ନିଜକୁ ପାଶୋରିଗଲା । ଦେହରେ ଆସିଥିବା ଶିହରଣରେ ସେ ନିଜକୁ ପାଶୋରି ଯାଇଥିଲା ! ଆଉ ଧନଞ୍ଜୟର ମୁହଁଟା ଯେ କି ସୁନ୍ଦର ! ଖୁବ୍ ସରଳ ଲାଗେ । ସେହି ମୁହଁରେ ଅଛି ଶିଶୁର ପବିତ୍ରତା । ସେ ଯେତେବେଳେ ଭଉଣୀ କଥା କହୁଥିଲା ସେହି ସମୟରେ ତାର ଗୋଡ଼ ଦୁଇଟା କମ୍ପି ଥିଲା, ଆଖି ଦୁଇଟା ଭୟାନକ ଆକ୍ରୋଶରେ ହଠାତ୍ ଶ୍ରେଷ୍ଠ ଓ ବଡ଼ ହୋଇଥିଲା । ରହି ରହି କଥା କହୁଥିଲା । ବାସନ୍ତୀ ଭାବିଥିଲା, ଏକଲା ରହୁଥିଲାବେଳେ ତାର ଏଇସବୁ କଥା ମନେ ପଡ଼ିଲେ, ଆଖିରୁ ତାର ଲୁହ ଗଡ଼ୁଥିବ । ସେଥିପାଇଁ ସେ ଖୁବ୍ ଭଲ ପାଇବା ଖୋଜୁଥିଲା । ତାର ଦୁଃଖରେ କାନ୍ଦିବାକୁ ମନ ହେଲା ଆଉ ସେହି କାରଣରୁ ଅତର୍କିତରେ, ଅଜାଣତରେ, ତା'ର ହାତ, ତା'ର ବାଳ ଭିତରେ ବୁଲୁଥିଲା । ସେ ଖୁବ୍ ଆଦର କରି, ତା ମୁଣ୍ଡରେ ହାତ, ବୁଲାଉଥିଲା । ସେ ଦୀର୍ଘଶ୍ୱାସ ପକାଉଥିଲା । ଆଉ ତାର ହାତଟି ଧରିଥିଲା । ତାର ଦୁଇ ହାତର ମୁଠାଟିରେ କେମିତି ଉତ୍ତାପ, କିପରି ସଂକଳ୍ପ, କିପରି ବ୍ୟାକୁଳତା, ସେହି ଅନୁଭୂତି ଏ ଯାଏଁ ପାଶୋରି ହୋଇନାହିଁ । ବର୍ତ୍ତମାନ ସେଥିପାଇଁ ସେ ଭାବି ପାରୁଛି ଯେ ନିଜକୁ ଛୁଇଁବାକୁ ଦେଇ ସେ ବିଶେଷ ଭୁଲ କରିନାହିଁ । ବାଳରେ ହାତ ବୁଲାଇ ମଧ ଭୁଲ କରିନାହିଁ । ପଛରେ ଗୋଟାଏ ବଡ଼ ଭୁଲ କରିଛି ସେ ତାକୁ ସ୍ପର୍ଶକରିବାବେଳେ । ସେ ତାର ଗୋଡ଼ଛୁଇଁ ସେବା କରିବା ଦରକାର ଥିଲା—ଆଉ ସେହି ସେବାରେ ସେ ତା'ର ଆତ୍ମାର ଅଟଳ ଦୃଷ୍ଟିରେ ତାକୁ ଚାହିଁ ତାକୁ ବୁଝାଇ ଦେବା ଦରକାର ଥିଲା ଯେ ଆଜିଠାରୁ ସେ ତାର ହୋଇଗଲା । ତା ସହିତ ସଂସାର କରିଲେ ଏଇ ଜୀବନରେ ସେ ତାର ଏକମାତ୍ର ନିଜର ହେବ । ତା'ର ଦୁଃଖ କଷ୍ଟର ସେ ସମଭାଗୀ ହେବ । ତା' ଛଡ଼ା ବ୍ୟକ୍ତିଗତ ଭାବରେ ତାଙ୍କର ସୁଖ ଦୁଃଖ ଅଲଗା ରହିବନି । ଦୁହେଁ ଏକାଠି ପିଲାପିଲାଙ୍କ କଥା ଚିନ୍ତା କରିବେ; ଦୁହେଁ ଏକାଠି ବୁଢ଼ାବୁଢ଼ୀ ହେବେ—ଏକାମତ ପୋଷଣ କରିବେ । ଜୀବନ ସଂପର୍କରେ ଗୋଟିଏ ଧାରଣାକୁ ନେଇ ଏକାଠି ମରିବେ । ସେହିପରି ମନକୁ ମନ ଧନଞ୍ଜୟକୁ ସ୍ୱାମୀ ରୂପରେ ବରଣ କରିବା କଥା ତା'ର ଜାଣିବା ଉଚିତ ଥିଲା । ସେ ଆବେଗରେ ପାଗଳ ହୋଇ ତାର ଛାତିରେ ମୁଣ୍ଡ ରଖିଥିଲା ଆଉ ତାର ଆଦର ପାଇ ତାର ମନର ବାସନା ପୂର୍ତ୍ତି ହୋଇଥିଲା । ଏହିଠାରେ ହିଁ ସେ ବୋଧେ ଭୁଲ କରିଥିଲା ! କିନ୍ତୁ ତାର ସେମିତି ସଂଯମ ହରେଇବାର ଧର୍ଯ୍ୟ ନ ଥିଲା । ସେ ସୋନାଲିପୁରଆର

ହୁଏ । ଏହାହିଁ ବୋଧହୁଏ ସୋନାଇର ବାୟୁ ଓ ପାଣିର ଦୋଷ । ଦ୍ୱିପହରର ନିଜ୍ଜନ ପରିବେଶରେ ମୃଦୁ ପବନରେ ନଇଁପଡ଼ି ଖେଳୁଥିବା ଓଲୁଅ ଓ ସାରୁବଣ । ଅଦୂରରେ ଥିବା ପୋଖରୀର ଶ୍ୟାମଳୀ ବସୁନ୍ଧରା ମଧ୍ୟରେ ଅଙ୍ଗ ସୋନାଇର ଆବଗ୍ରାନ୍ତ ସ୍ରୋତରେ ସେ ନିଜକୁ ପାଶୋରି ଦେଇଥିଲା । ସେହି ମୋହମୟ ପ୍ରକୃତି ମଝିରେ ସେ ଧନଞ୍ଜୟକୁ ତା ପାଖରେ ଦେଖିଥିଲା । ସେଥିପାଇଁ ବି ସଂକୋଚରେ ସେ ତାର ଭଲ ପାଇବାକୁ ସ୍ୱାଗତ କରିଥିଲା ।

ବୋଉ ପ୍ରତି ବେଶି ଭକ୍ତି ଓ ଭଲ ପାଇବା ବାସନ୍ତୀ ମନରେ ଜାଗିଛି । ତାକୁ ଏ ଘର ଛାଡ଼ିବାକୁ ପଡ଼ିବ । ନିଜ ଘର ଛାଡ଼ିବା କେତେ କଷ୍ଟ । କି ମାୟା ! ବୁଢ଼ୀ ବୋଧହୁଏ କୁଆଁରୀ ଝିଅକୁ ମନେ ମନେ ଚାହୁଁଛି ବୋଲି ଭାବେ । ସେ ନିଜେ ତ କୁଆଁରୀ ଦିନରେ ଘରଛାଡ଼ି ଆସିଛି ।

ଆଖିର ପଲକ କଟାଗଲା ପରେ ବୋଉର ଆଚରଣରେ ପରିବର୍ତ୍ତନ ଆସିଛି । ଝିଅକୁ ଆଜିକାଲି ଉପଦେଶ ଦିଏ । ବେଶି ଆଦର ମଧ୍ୟ କରେ । କୁହେ ଝିଅ ମୋର । ଆଉ ମରିବାକୁ ବେଶିଦିନ ନାହିଁ । ମୋର ବଞ୍ଚିଥିବା ଭିତରେ ତୋର ବାହାଘରଟା ଦେଖିଥିଲେ ଭାରି ଭଲ ଲାଗନ୍ତା । ଗୋଟାଏକୁ ତ ପାର କରିଲି, ସେ ପୁଅ ମୁହଁ ଦେଖିଲାଣି । ଏବେ ମୋର ଖାଲି ତୋରି ଚିନ୍ତା । ମନ ଦେଇ ବାସନ୍ତୀ ଶୁଣେ, କିଛି କୁହେନା ।

ସେଥିପାଇଁ ଆଜି ଶୋଇଲାବେଳେ ବୋଉ କହିଲା, "ବାସନ୍ତୀ ! ତୁ ଆଜି କାଲି ଅଲଗା ଶୋଉ । ବୁଢ଼ୀ ପାଖରେ ଶୋଇବାକୁ ଖରାପ ଲାଗୁଛି ?" ବାସନ୍ତୀ କହିଲା, "ଏମିତି ମନକୁ ଲାଗିବା କଥା କାହିଁକି କହୁ ବୋଉ ! ତୋର ଅସୁବିଧା ହେବ ଭାବି..."

"ମୋ'ର ଗୁହରେ ଝିଅ ଶୋଇଲେ କେଉଁ ମା ଖରାପ ପାଇବ ? ପୁଣି ଆଜି କାଲି ମୋ ମନ ସବୁବେଳେ ଉଦାସ !"

ବାସନ୍ତୀ ବୁଝିଲା ଯେ, ବୋଉ ପାଖରେ ନ ଶୋଇଲେ ସେ ମର୍ମାନ୍ତିକ ଦୁଃଖ ପାଇବ । ଭାଉଜ ମଧ୍ୟ ବୋଉର ମନକଥା ଜାଣି ପାରିଲା । ଭାଉଜ କହିଲା, "ବାସନ୍ତୀ ! ତୁମେ ବୋଉ ପାଖରେ କାହିଁକି ଆଜିକାଲି ଶୋଉନାହଁ ? ଏ ଘରେ କିଏ ଜାଣେ ଆଉ କେତେଦିନ ରହିବ ! ଯୁବତୀ ଝିଅ ଗୋଟିଏ ଗୋଡ଼ ସବୁବେଳେ ଘର ବାହାରକୁ ଯିବାକୁ ଆଗରେ ଥାଏ ।"

ଭାଉଜର କଥାର ମର୍ମ ବୁଝି ସେ କହିଲା—"ତୁମେ ଖୁବ୍ କହିଲାବାଲା ।"

ରାତିରେ ବୋଉ ଅନେକ କଥା କହିଲା । ବାସନ୍ତୀ ମନରେ ପ୍ରଶ୍ନ ହେଲା । ବୋଉ ଏମିତି କଥା କେବେ କହିନାହିଁ । କିଛି ଖବର ପାଇଛିକି ? "ବାସନ୍ତୀ ଦେଖୁ ଦେଖୁ ଗଛପରି ତୁ ବଢ଼ିଗଲୁ । ଏଇକ୍ଷଣି ତୁ ପୂରାପୂରି ଯୁବତୀ । ତୋ ମୁହିଁ ଦେଖି ମୁଁ ତୋର ବୟସ କଥା ବୁଝିପାରୁଛି । ତୁ ଆଗପରି ଖିଲ୍ ଖିଲ୍ ହସୁନୁ । କିନ୍ତୁ ଝିଅ, ଏଟା ନିଶ୍ଚୟ ଯେ ଜନ୍ମ-ମରଣ-ବିବାହ-- ଏଇ ତିନି କଥା ବିଧାତାର ବିଧାନ । ସେଥିପାଇଁ ମୁଁ ମୁଣ୍ଡପିଟି ମରୁଛି ।"

ବାସନ୍ତୀ ଜୋରରେ ସଜଳ ନୟନରେ କହିଲା—"ବୋଉ ! ଆଜି ସବୁ ଏ କଥା କହି ମୋତେ କାହିଁକି ଦୁଃଖ ଦେଉଛୁ । ମୁଁ କ'ଣ ତୁମର ସବୁ କଣ୍ଟା ହୋଇଛି କି ?"

ବିଚଳିତ ନ ହୋଇ ଗମ୍ଭୀର ସ୍ୱରରେ ବୋଉ କହିଲା, "ଠିକ୍ କଣ୍ଟା ନୁହେଁ ବାସନ୍ତୀ ! ପ୍ରକୃତିରେ ଝିଅ ଗୋଟିଏ ବଡ଼ ବୋଝ । ତୋର ବିବାହ ନ ହେଲାଯାଏଁ ମୋତେ ଆଉ ତୋର ବାପାଙ୍କୁ ବା କାହାକୁହିଁ ଶାନ୍ତି ମିଳିବ ନାହିଁ । ଝିଅର ଠିକ୍ ବୟସରେ ବିବାହ କରାଇଲେ ଆମକୁ ପୁଣ୍ୟ ମିଳିବ ।"

"ବୋଉ ! ତୁ ଯାହା କହିବୁ ମୁଁ ଶୁଣିବି । କିନ୍ତୁ ଏହିସବୁ କଥା କହିବୁ ନି ! ଏହିସବୁ କଥା କହି ଲାଭ କଣ ?" "ସେଥି ସକାଶେ କହୁଛି, ତୁ ଆଜିକାଲି ଘାଟରେ ବହୁତ ସମୟ ବସୁଛୁ । ଘରେ ରହିଲେ କେତେ କଥା ଭାବୁ ।"

ବାସନ୍ତୀ କିଛି କହି ପାରିଲାନାହିଁ । ବୋଉ ଯେପରି ସବୁ ଜାଣିଲାପରି କଥାବାର୍ତ୍ତା କରୁଛି । ରାତିରେ ତାକୁ ନିଦ ହେଲାନାହିଁ । ବୋଉ କଥା ତା କାନରେ ଗୁଞ୍ଜରୁଛି । ବୋଉ କହିଲା, "ସ୍ତ୍ରୀ ଯଦି ପ୍ରକୃତିରେ ଭଲ, ଯେ କୌଣସି ପୁରୁଷ ସହିତ ସେ ସଂସାର କରି ପାରିବ । ସ୍ତ୍ରୀର ଗୋଡ଼ ଯଦି ଥରେ ଖସେ ତେବେ ଗୋଟିଏ ଦୋଷ ଲୁଚାଇବା ପାଇଁ ହଜାର ହଜାର ଦୋଷ କରିବାକୁ ପଡ଼େ । ଆଉ ସୁଖ ଶାନ୍ତିହିଁ ବିଦାୟ ନିଏ ।" କିନ୍ତୁ ଗୋଟିଏ କଥାର ମର୍ମ ସେ ବୁଝି ପାରିଲାନାହିଁ । ବୋଉ କହିଥିଲା, "ଭଗବାନ ନାରୀକୁ ଗୋଟିଏ ବିଶେଷ ଗୁଣ ଦେଇଛନ୍ତି । ଯେ କୌଣସି ଅବସ୍ଥାରେ ସେ ନିଜକୁ ସମ୍ଭାଳି ପାରିବ ।" ଏସବୁ କଥା ବୋଉ ଆଗରୁ ଭଲି କହିଥାନ୍ତା । ରାତିରେ ବୋଉ କଥା କହୁଥିଲା ଆଉ ସେ ଗୋଟିଏ ଶ୍ରେଷ୍ଠ ଝିଅପରି ଶୁଣୁଥିଲା ଏବଂ ଏକ ନୈତିକ ଚେତନା ତାକୁ ଅତିଷ୍ଠ କରୁଥିଲା ।

ପରଦିନ ତାର ମନରେ ଅନ୍ଧାର କଟିଯାଇଥିଲା ଓ କାମ କରି ମନଟାକୁ ଭୁଲାଇ ରଖିବାକୁ ଚେଷ୍ଟା କରୁଥିଲା । ମଇଳା ଲୁଗାପଟା ନେଇ ଘାଟରେ ସଫା

କଲା । ଘରର ସମସ୍ତେ ଉଠିବା ଆଗରୁ ଦିନସେର ଧାନ କୁଟିଥିଲା । ସନ୍ଧ୍ୟା ପୂର୍ବରୁ ଛଅକାଠି ଲୁଗା ବୁଣିଲା । ସନ୍ଧ୍ୟାରେ ବୋଉ ଆଉ ଭାଉଜ ପାଖରୁ ଅଲଗା ରହିଲା । ଧୂପ ଜଳେଇ ସବୁଘରେ ଧୂଆଁ ଦେଲା । ଗୁହାଳ ପାଖ ଅଲଆରେ ନିଆଁ ଲଗେଇ ଧୂଆଁ କଲା । ଯେମିତି ମଶା ଆଉ ରହିବେ ନାହିଁ । ରାତିରେ ଖାଇସାରିଲା ପରେ ପ୍ରଭୁଙ୍କ ଜଣାଣ ଗୁଣୁଗୁଣୁ କରି ବୋଲିଲା ଓ ପରଦିନ ସକାଳେ ଘରର ସବୁକାମ କଲା । ରାତିରେ ତାକୁ ଭଲ ନିଦ ମଧ୍ୟ ହୋଇଥିଲା ।

ସକାଳୁ ଉଠି ସେ ଘର ଝାଡ଼େ । ଭାଉଜ ସକାଳେ ଥରେ ବାରି ସଫା କଲେ । ସେ ପଛପିଣ୍ଡା ସଫା କରିଦିଏ । ଘରପଛର ନଡ଼ିଆଗଛ ଠାରୁ ନେଇ ଘାଟ ଯାଏ ଗଛଲତା ମଝିରେ ଯେଉଁ ସରୁରାସ୍ତା, ତାକୁ ମଧ୍ୟ ଝାଡ଼ୁଦିଏ । ଦୁଇଟି ରଜନୀଗନ୍ଧା ଗଛ ମୂଳକୁ ମଧ୍ୟ ସଫା କରେ । ଆଜି ମଧ୍ୟ ଠିକ୍ ସେମିତି ସଫା କଲା । ସବୁ ସଫା କରି ସାରିଲା ପରେ ଫାଟକ ପାଖରେ ଥିବା ଦୁଇଟି ବଉଳ ଗଛ ତଳୁ କିଛି ଫୁଲ ଗୋଟେଇ ଅଣ୍ଟିରେ ପୂରେଇଲା । ସେଥିରେ ମାଳା ଗୁନ୍ଥିଲା । ଗୋଟିଏ ନିଜ କବରୀରେ ଲଗାଇଲା । ଅନ୍ୟଟି ରାଧାକୃଷ୍ଣଙ୍କ ଫଟରେ ପିନ୍ଧେଇଲାବେଳେ ସେହି ଘରର ଅବସ୍ଥା ଦେଖି ଭାରି ମନ ଖରାପ କଲା । ଏତେଦିନ ତାର ଖିଆଲ ବି ହୋଇନି ଯେ, ମେଳା ଘରଟାର ଅବସ୍ଥା ଏତେ ଖରାପ । ଆଜି ସେ ଅନୁଭବ କଲା ଯେ, ଯେଉଁ ଘରେ ଯୁବତୀ ଝିଅ ଅଛି ସେହି ଘରର ବାହାର ଘରର ଅବସ୍ଥା ଏପରି ହେବା ଉଚିତ୍ ନୁହେଁ ।

ଘରର ଦକ୍ଷିଣ ଦିଗରେ ଥିବା ଧାନ ବସ୍ତାକୁ ଟାଣି ଟାଣି ଗୋଟାଏ କୋଣକୁ ଆଣିଲା । ଧାନ ବସ୍ତାଟାଏ ସେ ଘରେ ରହିଛି ବୋଲି ଯେପରି କେହି ନ ଦେଖନ୍ତି, ସେଥିପାଇଁ ହେଂସରେ ତାକୁ ସବୁ ଢାଙ୍କି ଦେଲା । ଧାନ ଥିବା ଦୁଇଟା ବଡ଼ ଟେକେଇ ଗୋଦାମ ଘର ଆଗରେ ରଖିଲା । ଘରର ଉତ୍ତର ଦିଗରେ ଥିବା ଅତିଥିଙ୍କ ଲାଗି ଖଟରେ ରଙ୍ଗିନ ଶାଢ଼ୀର ଖଣ୍ଡେ ବିଛେଇ ଦେଲା । କାନ୍ଥରେ ଥିବା ହରିଣ ସିଂଘ ଦୁଇଟାକୁ ପରିଷ୍କାର କଲା । ଘର ମଝିରେ ଗ୍ଳେଟ ଟେବୁଲ ଆଉ ଚୌକି ଦୁଇଖଣ୍ଡ ରଖିଲା । ମୋଡ଼ା ପିଢ଼ା ଦୁଇଖଣ୍ଡ ଅର୍ଦ୍ଧବୃତ୍ତାକାର କରି ରଖିଲା । ଫୁଲପକା କପଡ଼ା ଟେବୁଲରେ ପକେଇଲା । ବୋତଲରେ ପାଣି ପୂରେଇ ଫୁଲତୋଡ଼ା ଗୁନ୍ଥି ଟେବୁଲ ଉପରେ ରଖିଲା । ମେଳା ଘରର ଚେହେରା ବଦଳିଗଲା । ନିଜ ମନର ଏହି ପ୍ରକାର ବହିଃପ୍ରକାଶରେ ସେ ନିଜେ ସ୍ତମ୍ଭିତ ହୋଇ ପଡ଼ିଲା ।

ଭାଉଜ କିନ୍ତୁ କମ୍ ବୁଦ୍ଧିଆ ନୁହନ୍ତି । ବାସନ୍ତୀର ଏହି ସବୁ କାଣ୍ଡକାରଖାନା ଦେଖି ସେ କିଛି ଗନ୍ଧ ପାଇଲେ । ହସି ହସି କହିଲେ—"ଆଜି ତୋ କାମଗୁଡ଼ା

ବେଶ୍ ମନକୁ ପାଉଛି । କଏ ଦେଖିବାକୁ ଆସିଲେ ଘରର ସଜା ଦେଖି ଆଖି ଲାଗିଯିବ ।" ବାସନ୍ତୀ ଅଭିମାନର ଅଭିନୟ କରି ମୁହଁ ମୋଡ଼ିଲା । ଭାଉଜ ଆଡୁରି କହିଲେ, "ଆଉ ବେଶିଦିନ ନାହିଁ । ସେଦିନ ଆସିଯିବ ଲୋ । ଭାଇ ଗୋଟିଏ ଯାଗାରେ କଥା ପକେଇଛି ।"

"ଭାଉଜ, ମୋତେ ବଡ଼ା କରିବାକୁ ଯଦି ଏମିତି ଲଗାଅ ତାହାହେଲେ ମୁଁ ତୁମ ସଙ୍ଗରେ କଥା କହିବିନି ।"

"ଓଃ, ସତକଥା କହିଲେ ଏମିତି ଦେହରେ ଲାଗେପରା !" ଏତିକରେ ବାସନ୍ତୀର ସବୁ ସନ୍ଦେହ ଦୂର ହେଲା । ଭାଉଜଙ୍କର ଏହି କଥାରୁ ସେ କିଛି ବୁଝିପାରିଲା ନାହଁ । ଧନଞ୍ଜୟ ତାଙ୍କ ଘରକୁ ଆସିଲେ ସେ ତା ଆଗକୁ ଯାଇ ପାରିବ—କଥାବାର୍ତ୍ତା ହୋଇ ପାରିବ । କିନ୍ତୁ କଥା ବୃଣିଦିନ ବି ଛପି ରହିଲାନାହିଁ । ଶନିବାର ଦିନ ଭୋଗରାମ ସୂର୍ଯ୍ୟ ଅସ୍ତ ହେଲାପରେ ଘରକୁ ଫେରେ । ସେଥିପାଇଁ ଘରର ସମସ୍ତେ ସେଦିନ ଆଗରୁ ଖିଆ ପିଆ ସାରିଦିଅନ୍ତି । କେବଳ ତରୁଲତା ସ୍ୱାମୀଙ୍କ ଲାଗି ଅପେକ୍ଷା କରେ । ସେ ପିଣ୍ଡାରେ ବସି ଖଇ ବାଛୁଥିଲା । ସେତିକିବେଳେ ଦଉଡ଼ି ଦଉଡ଼ି ଝିଅ ଆସି ପହଞ୍ଚିଲା । ତରୁଲତା ରାଗି ଝିଅକୁ ପଚାରିଲା—"ଏକାକିଆ ଘାଟକୁ ଯିବାକୁ ମନା କରିଥିଲି ନା ? କହ କାହିଁକି ଯାଇଥିଲୁ ? ଦେହରେ ଖୁବ୍ ଚର୍ବି ହେଲାଣି ନା ?"

ଝିଅର ବୟସ ମାତ୍ର ସାତବର୍ଷ । ବୁଝିବା ବୟସ ମଧ୍ୟ ତାର ହୋଇନି । ବୋଉର ରାଗଦେଖି ଡରି ଡରି କହିଲା—"ମୁଁ ଏକା ଯାଇ ନ ଥିଲି । ବାସନ୍ତୀ ଅପା ସାଙ୍ଗରେ ଥିଲି ।" ସେମିତି ରାଗି ତରୁଲତା କହିଲା—"ଯାହା ସାଙ୍ଗରେ ଯାଆ ପଛେ, ତୁଠଟା ଭାରି ଖସଡ଼ା । ଗୋଡ଼ ଖସିଗଲେ ନଈ ଭିତରେ ପଡ଼ିବୁ । ତୋ ଅପା ଆସିଲାଣି ନା ନାହିଁ ?"

"ଆସିନି । ଆଚ୍ଛା ବୋଉ କହିଲୁ, ଆଜି ବାପା ମୋ ପାଇଁ ନାଲି ଫ୍ରକ ଆଣିବେ କି ନାହିଁ ?" ପ୍ରଶ୍ନର ଉତ୍ତର ନ ଦେଇ ତରୁଲତା ଆଉ କଥା ଉଠେଇ କହିଲା— "ଅପା କଣ ଏ ଯାଏଁ ଲୁଗା ଧୋଉଛି ?"

"ନାଁ ଧୋଇ ନାହିଁ ।"

"ତା ହେଲେ କଣ ଶାଳଗଛ କାଟୁଛି ?"

"ଅପାମନ ଭାରି ଖୁସି । ଖୁବ୍ ହସେ । ମଣିଷଟା କଥା କହିଲେଇ ଅପା ଖୁବ୍ ହସେ । ମଣିଷଟା ବି ହସେ ।"

"ମଣିଷ ? କାହା ସଙ୍ଗରେ କଥାବାର୍ତ୍ତା ହେଉଛି ?
—କହୁନୁ କାହିଁକି ? ମୋ ମୁହଁଟାକୁ ଚାହିଁ ରହିଛୁ କଣ ?"

"ସେଇମ ଯେ, ଆଈଙ୍କୁ ସହରକୁ ନେଇଥିଲ । ସେହି ଡାକ୍ତର । ଆଉ ଅପାର କ ସାହସ ! ବଡ଼ ମଣିଷଙ୍କୁ ଆପଣ ନ କହି ତୁମେ ବୋଲି ଡାକୁଛ ।"

ତରୁଲତା ଖୁବ୍ ଚମକିତ ହୋଇ ପଡ଼ିଲା । ଖଇ ଡାଲାକୁ ଥୋଇ ପଛପଟରେ ଘାଟ ରାସ୍ତାକୁ ଚାହିଁ ରହିଲା । ବାସନ୍ତୀକୁ ଆସ୍ତେ ଆସ୍ତେ ଆସିବାର ଦେଖିଲା । ମୁହାଁ ମୁହିଁ ହେବା ସମୟରେ, ବାସନ୍ତୀର ମୁହଁର ରଙ୍ଗକୁ ଲକ୍ଷ କରି ବ୍ୟଙ୍ଗ କରି କହିଲା— "ତୁମର ଘାଟରେ ଯେ କାହିଁକି ଏତେ ଡେରି ହୁଏ ଆଜି ବୁଝିଲି । ଝିଅଙ୍କୁ ତା'ହେଲେ ପୁରୁଷ ଦେବତାଟିଏ ମିଳିଗଲାଣି !"

ଚଡ଼କ ପଡ଼ିଲା ପରି ବାସନ୍ତୀ ଥମକି ଠିଆ ହୋଇ ରହିଲା । କିଛି ନ କହିଲେ ଖରାପ ହେବ ଭାବି ଡରି ଡରି କହିଲା । "କଣ ହେଲା ଭାଉଜ ? ମୁଁ କଣ କଲି ?"

"କିଛି ନ ଜାଣିବାର ଅଭିନୟ ଆଉ କରନା । ତୁମେ କଣ କରୁଥିଲ ସେ କଥା ମୁଁ କହିବ ? ବର୍ତ୍ତମାନ ଏତିକି ଯଥେଷ୍ଟ, ତୁମକୁ ସତକଥା କହିବାର ଅଧିକାର ମୋର ନାହିଁ ।"

"ଭାଉଜ !" ବାସନ୍ତୀର କଣ୍ଠରେ ଅନେକ ମିନତି ।

କୋମଳ କଣ୍ଠରେ ଭାଉଜ କହିଲେ—"କଣ ?" ଅନ୍ତରର ସବୁ ଆବେଗ ଚାପି ବାସନ୍ତୀ କହିଲା—"ଭାଉଜ ତୁମ ଆଗରେ ଯଦି ମୋ ଗୁମରଟାକୁ ଚାପିଦେଇ ପାରନ୍ତି ନା ।"

ଭାଉଜ ମୁଣ୍ଡପୋତି ନୀରବ ରହିଲା ।

## ପାଞ୍ଚ

ବାସନ୍ତୀର ମନ କଥା ଜାଣି ସୁଦ୍ଧା ଭାଉଜ ତାକୁ ସାବଧାନ କଲାନାହିଁ । କେବଳ ବାସନ୍ତୀ କେତେବେଳେ ଠାକୁଆ ଘାଟକୁ ଯାଏ ଆଉ କେତେବେଳେ ଆସେ ତାହାକୁ ଅଲକ୍ଷରେ ଲକ୍ଷକଲା । ତରୁଲତା ଯେ ବାସନ୍ତୀର ପିଛୁନେଇଛି ଏବଂ ଗୋପନରେ ତା ପ୍ରତି ନଜର ରଖିଛି ଏ କଥା ବୁଝିବାକୁ ବାସନ୍ତୀକୁ ବେଶି ସମୟ ଲାଗିଲା ନାହିଁ ।

ସେ ଆଗପରି ଘାଟକୁ ଯିବା ଆସିବା କଲା । ଆଗପରି ଏ ଘରୁ ସେ ଘର ବୁଲିବାକୁ ଗଲା । ଯାତ୍ରା ଦେଖିବାକୁ ଗଲା । ତଥାପି ମନେ ମନେ ସେ ଯେପରି ପରାଧୀନ ହୋଇ ପଡ଼ିଲା ! ଆଗର ମୁକୁଳାମନ ଓ ଦ୍ୱିଧାହୀନ ସରଳ ସ୍ୱଭାବ ପ୍ରେମର ଗୋପନ ପରଶରେ କୋମଳ ଦୁବଘାସ ଗୋଡ଼ତଳେ ଚାପି ହେଲାପରି ହୋଇଗଲା । ଘରର ସ୍ୱଭାବଚପଳ ଝିଅଟି ଆଜି ପ୍ରଥମଥର ପାଇଁ ଅନୁଭବ କଲା ସେ ପିଞ୍ଜରାବଦ୍ଧ ଚଢ଼େଇ ।

ଯେଉଁ ଭାଉଜ ତାକୁ ଏତେ ଭଲପାଏ ସେ ମଧ୍ୟ ବିଶ୍ୱାସ କରିବାକୁ ଲାଗିଛି ଯେ, ପିଞ୍ଜରାର ପକ୍ଷୀ କେଉଁଦିନ ଉଡ଼ିଯାଇପାରେ । ତିନିପିଲାଙ୍କ ମା ତରୁଲତା ଘରର ସବଳରେ ପିଲାପିଲାଙ୍କୁ ପାଳିବାରେ, ପାରିବାରିକ ଜୀବନରେ ଯନ୍ତ୍ରଣାମୟ ଗତାନୁଗତିକତାରେ ଭୁଲି ଯାଇଛି ଯେ ସେ ବି ଦିନେ ଯୁବତୀ ଥିଲା ଏବଂ ବାସନ୍ତୀପରି ମଧ୍ୟ ତାର ମନ ବ୍ୟାକୁଳ ଥିଲା ! ବାସନ୍ତୀର ପ୍ରେମର ନିଶ୍ଚିତ ଇଙ୍ଗିତପାଇ ତରୁଲତା ବାସନ୍ତୀର ବ୍ୟବହାରକୁ ଗ୍ରହଣ କରିପାରିଲା ନାହିଁ । ସେଥିପାଇଁ ଭାବିଲା ବାସନ୍ତୀକୁ ଏହି ସର୍ବନାଶି ପଥରୁ ଫେରାଇ ଆଣିବା ତା'ର କର୍ତ୍ତବ୍ୟ । ତାହା କଲେହିଁ ବାସନ୍ତୀର ଉପକାର ହେବ ।

ତଥାପି ବାସନ୍ତୀ ତରୁଲତା ପ୍ରତି କୃତଜ୍ଞ ହେଲା ଆଉ ତା ନିକଟରେ ଭୟ ଭୟରେ ରହିଲା । କୃତଜ୍ଞ ହେବାର କାରଣ ହେଲା ଦୁଇଦିନ ହୋଇଗଲା ତରୁଲତା ସ୍ୱାମୀଙ୍କୁ ଏ କଥା କହିନାହିଁ । ଭେଗରାମର ଆଚରଣରୁ ବାସନ୍ତୀ ସବୁକଥା ବୁଝି ପାରିଛି । ବୋଧହୁଏ ଭାଇକୁ ମଧ୍ୟ ଭାଉଜ କହିନାହିଁ । କାରଣ ବୋଉ ଆଗପରି ତାକୁ ସେହି ସବୁ ଉପଦେଶ ଦେଉଛି । କିନ୍ତୁ କେତେଦିନ ସେ ଏମିତି ରହିବ ? ଯେତେ-ବେଳେ ମାୟା ଆଉ ସ୍ନେହର ଅତଳ ତଳେ ଦେହ ଆଉ ମନ ବୁଡ଼ିଲା ସେତେବେଳେ ଉପାୟ ଆଉ କଣ ? ନିଷ୍ଠୁର ନିୟମରେ ବନ୍ଧା ବଂଶ ଓ ପରିବାରର ପ୍ରାଚୀନ ଗଣ୍ଡି ଡେଇଁ ଯିବାକୁ ତାର ଇଚ୍ଛା ହୋଇଛି । ଯେପରି ସେ ମୁକ୍ତ ପ୍ରାନ୍ତରରେ ଜୀବନ ଉତ୍ସବର ବଂଶୀଧ୍ୱନି ଶୁଣୁଛି ଆଉ ସଂସାରର ପରିଧିକୁ ଲଙ୍ଘି ବାହାରି ଯିବାକୁ ତାର ମନ ବାଉଳା ହେଉଛି ।

ଗୋଟିଏ ଗାଁଉଲି ଝିଅ ଯେତିକି ମନବେଦନା ଆଉ ସାହାନୁଭୂତିରେ ନିଜର ହୃଦୟସ୍ଥ କଥା କହିପାରେ, ଅତି ଆବେଗ ଆଉ ବେଦନାରେ ସେ ଭାଉଜଙ୍କୁ ସବୁକଥା କହିଲା । ତା କଥା ବୁଝି ତରୁଲତାର ତା ପ୍ରତି ଅନୁକମ୍ପା ଜାଗିଲା । ସେଥିପାଇଁ ଭଲମନ୍ଦ ମନ୍ତବ୍ୟ ନ ଦେଇ ସେ କହିଲା – "ବାସନ୍ତୀ ! ତୁମ ମନକୁ ଭଲ ଭାବରେ ବୁଝି ପାରିଛି । ଗୋଟାଏ କଥା ଥରକୁଥର ମନକୁ ଆସୁଛି । କେତେ ଲୋକ ଅଛନ୍ତି

ଯେଉଁମାନେ ମନଇଚ୍ଛା ପାଣି ପିଇ ପାରନ୍ତି । ହିଁଅ ନିଜର ଦେହଟାକୁ ରକ୍ଷା କରିବୁ । ମନେ ରଖିବୁ, ତୁ ଯେତିକି ନୀଚ ହେବୁ ସେତିକି ତୋର ନିଜର ବୋଲି କେହି ନ ଥିବେ ଓ ସେତିକି ଦୁଃଖ ପାଇବୁ ।"

ବାସନ୍ତୀ ଏକ ଦୀର୍ଘଶ୍ୱାସ ଟାଣିଲା । ଚରୁଲତା ଏମିତି ସହାନୁଭୂତି ଦେଖାଇ ସୁଦ୍ଧା, ପରଦିନ ଧନଞ୍ଜୟ ଆସିଲାରୁ ବାସନ୍ତୀକୁ ଗୁହା ଓ ପାନ ନେଇ ତା ଆଗକୁ ଯିବାକୁ ସୁବିଧା ଦେଲା ନାହିଁ । ତା ମନରେ ଲଜ୍ଜା ପ୍ରତି ଖୁବ୍ ରାଗ ହେଲା । ଆଉ ରନ୍ଧାଘରେ ଏ ପାଖ ସେପାଖ ହେଲା । ଲୋକଙ୍କର ତୀକ୍ଷ୍ଣ ଦୃଷ୍ଟି ସକାଶେ କବାଟର ଫାଙ୍କରେ ଧନଞ୍ଜୟକୁ ଥରେ ଚାହିଁବା ତାହାର ଭାଗ୍ୟରେ ହେଲାନାହିଁ ।

ଚରୁଲତା ବାସନ୍ତୀ ପାଇଁ ବେଶି ଚିନ୍ତିତ ହୋଇ ପଡ଼ିଲା । ବାସନ୍ତୀ ଦୁଃଖରେ, ଅବଶ ଓ ବିବଶ ହୋଇ ରହିଲା । ଆଗପରି ଲୁଗାପଟା ପିନ୍ଧିଲା ନାହିଁ ଆଉ ନିଜକୁ ସଜେଇଲା ନାହିଁ । ମନେ ମନେ ଗୁଣୁ ଗୁଣୁ କରି ବାହାଗୀତ ଗାଇଲାନି । ବର୍ତ୍ତମାନ ଯେପରି ଧନାଶ୍ରୀ ରାଗର ମଧୁରତା ହଠାତ୍ କରୁଣ ମୂର୍ଚ୍ଛନାରେ ସ୍ତବ୍ଧ ହେଲା । ଚରୁଲତା ଗୋପନରେ ଶାଶୁକୁ ସବୁ କଥା କହିଲା । ସୁଜଳା କିନ୍ତୁ ତା ପାଇଁ ଉତ୍କଣ୍ଠା ଦେଖାଇଲା ନାହିଁ । କହିଲା, "ତା ହେଲେ ଶୀଘ୍ର ତାର ଗୋଟାଏ ବ୍ୟବସ୍ଥା କରିବା ଉଚିତ । ଏହି ଜଞ୍ଜାଳ ଶୀଘ୍ର ହଟେଇବା ଦରକାର ନ ହେଲେ ବିପଦ । କାହାର ମନ କୁଆଡ଼େ ଯାଏ କିଏ ଜାଣେ ? ତା ଛଡ଼ା ପୁରୁଷର ମନ ହେଲା ଫଗୁଣର ପବନ ପରି ।"

"ଆଚ୍ଛା ବୋଉ ! ସେ ପିଲାଟି କିପରି ହେବ ? ବର୍ତ୍ତମାନ ମୁଁ କିଛି ସ୍ଥିର କରିନି । ଦେଖିବାକୁ ଶୁଣିବାକୁ ଭଲ ଭାଉଲ । ତା ବିଷୟରେ ବେଶି କିଛି ଜାଣିନାହିଁ । କଥାବାର୍ତ୍ତା ଶୁଣି ଯାହା ବୁଝିଛି । ସେ ଗୁଡ଼ାଏ ବଡ଼ ବଡ଼ କଥା ବି କୁହେନା ।"

ଦ'ପହରେ ବାସନ୍ତୀ ବୋଉ ପାଖରେ ଥିଲା । ବୋଉର ଆଖି ଖରାପ ହେବା ପରେ, ଆଗପରି ପୋଥି ପାଞ୍ଜି ପଢ଼ି ପାରେନା । ବାସନ୍ତୀ ପୋଥୀ ପଢ଼ି ଶୁଣାଇ-ଥିଲା । ହଠାତ୍ ସେ ଅନ୍ୟମନସ୍କ ହୋଇ ପଡ଼ିଲା । ଫାଟକ ପାଖରେ ସାଇକେଲର ଘଣ୍ଟି ଶୁଣିଲା । କିଂ କିଂ କରି ଘଣ୍ଟି ବାଜିଲା । ଟିକିଏ ରହି ଆଉ ଥରେ ବାଜିଲା । ଏହି ଘଣ୍ଟି ତାର ପରିଚିତ । ସେଥିପାଇଁ ପୋଥୀ ପଢ଼ିବା ସେ ବନ୍ଦ କରିଥିଲା । ବୋଉର କାହିଁକି ଅଧ୍ୟାୟ ଶେଷ କଲୁନି ପ୍ରଶ୍ନ ତା' କାନରେ ପଡ଼ିଲା ନାହିଁ । କାନ ଠିଆ କରି ସେ ବାରି ପାରିଲା ଯେ ସେ ଏହା ଭିତରେ ସାଇକଲଟା ଭିତର ରଖୁଛି । କିଛି ସମୟ ପରେ ସେ ମେଲାରେ ତାର କଣ୍ଠ ଶୁଣିବାକୁ ପାଇଲା । କିନ୍ତୁ ବୋଉ ତା'

ମନର ଅବସ୍ଥା ଜାଣି ପାରୁଥିଲା । ଆଉ ମେଳରେ ବସିବାକୁ କହି ଧୀରେ ଧୀରେ ମେଳ ଘରକୁ ଯାଉଥିଲା । ଧନଞ୍ଜୟ ସହିତ ଗୋଟିଏ ଦୁଇଟା କଥା କହି ତାକୁ ବିଦାୟ ଦେଇ ବାସନ୍ତୀକୁ ଖୁବ୍ ଦୁଃଖ ମନରେ କହୁଥିଲା—"ଆଚ୍ଛା ଝିଅ ! ତୁ କଣ କଲୁ ? ମୁଁ ତା ଆଖିରେ ତୋର ସର୍ବନାଶ ଦେଖି ପାରିଲି ।"

ବାସନ୍ତୀ କାନ୍ଦୁଥିଲା । ବୋଉ ପୁଣି କହିଲା—"ଜନ୍ମକାଳ କଟାଇଲି, ମଣିଷ ଚିହ୍ନିବାକୁ ମୋତେ ଡେରି ହେବ ନାହିଁ । ଧନଞ୍ଜୟକୁ ଦେଖି ମୋର ମନେ ହେଲା ସେ ଭଲ ପିଲା ନୁହେଁ । ଏମିତି ଲୋକ ବି ଅଛନ୍ତି ଯେଉଁମାନେ ସବୁ ଦିଗରୁ ଭଲ, ଧନଞ୍ଜୟ ସେହିପରି, ତଥାପି ତାକୁ ଦେଖି ମୋର ଧାରଣା ଯେ, ସଂସାର କରି ସେ ରହି ପାରିବା ମଣିଷ ନୁହେଁ । ଏମିତି ଅନେକ ଲୋକ ଅଛନ୍ତି, ଯେଉଁମାନେ ଭଲପାଇବା ଦେଇ ପାରିବେ ଓ ପାଇ ପାରିବେ । କିନ୍ତୁ ଗୋଟିଏ ସ୍ଥାନରେ ରହି ପାରିବେ ନାହିଁ । ବାୟା ଚଢ଼େଇପରି ଭିନ୍ନ ଭିନ୍ନ ଯାଗାରେ ଉଡ଼ିବାକୁ ଭଲ ପାନ୍ତି । ଧନଞ୍ଜୟ ମଧ୍ୟ ଏମିତିଆ ପିଲା ।"

ବାସନ୍ତୀର କାନ୍ଦ ଦିଗୁଣ ବଢ଼ିଲା । କାଲି ପାଣି ଅଣିବାକୁ ଘାଟକୁ ଯାଇ ସେ କୂଳରେ ଧନଞ୍ଜୟକୁ ଏକା ବସିଥିବାର ଦେଖିଥିଲା । ବନ ହରିଣୀ ପରି ତାକୁ ଚାହିଁ ରହିଥିଲା । କେତେବେଳେ ତରୁଲତା ଆସି ତା ପାଖରେ ଠିଆ ହୋଇଛି ବାସନ୍ତୀ ଆଦୌ ଜାଣି ପାରି ନ ଥିଲା । ଧନଞ୍ଜୟ ତରୁଲତାକୁ ଦେଖି ଗଛ ଆଢୁଆଳରେ ଲୁଚିଗଲା ।

ବାସନ୍ତୀର ହାବଭାବ ଦେଖି ବୋଉ ଓ ତରୁଲତା ଗୋପନରେ ବହୁ ସମୟ ଆଲୋଚନା କରିଥିଲେ । ସେମାନେ ଠିକ କରିଥିଲେ ଯେ, ଝିଅର ମନ ଜଣଙ୍କ ଠେଇଁ ଅଛି ଯେତେବେଳେ ତାକୁ ସେଇଠି ବିଭା ଦେବାହିଁ ଭଲ । ସବୁ କଥା ଭୋଗରାମକୁ କହିବା ଭଲ ବୋଲି ଭାବିଥିଲେ । ସେ ଶୁଣିଲେ ଗାଳି ଦେବେ । ବାହାଦେଇ ଦେବ । ସେତେବେଳେ ତାଙ୍କର ଚିନ୍ତା ଦୂର ହେବ । କିଛିଦିନ ପାଇଁ ବାସନ୍ତୀକୁ ମାମୁଁ ଘରକୁ ପଠାଇବା ଭଲ ହେବ ବୋଲି ସିଦ୍ଧାନ୍ତ କରିଥିଲେ । ବୋଉ କହିଲା, "ତାର ଏଇଖିଣା ଶନିଗ୍ରହ । ସେଥିପାଇଁ କୁଗ୍ରହ ସେ ଭୋଗୁଛି । କେଇଦିନ ବାହାରେ ବୁଲି ଆସିଲେ ତାର ଅସ୍ୱାଭାବିକ ମନଟା ସ୍ୱାଭାବିକ ହେବ । ସେଠି କେତୋଦିନ ରହିଲେ ହୁଏତ ତାର ଚିନ୍ତା ତାକୁ ଘାରି ପାରିବ ନାହିଁ ।"

କିନ୍ତୁ କଥାଟା ଭୋଗରାମକୁ କୁହା ହେଲା ନାହିଁ । ଏଇ ମଧ୍ୟରେ ତା'ର ବେପାରରେ କ୍ଷତି ହୋଇଛି । ଘରେ ଥିଲାବେଳେ ଖୁବ ଚିନ୍ତିତ ଥାଏ । ସାଧାରଣ

କଥାରେ ଚଳୁଥିଲେ । ଖାଦ୍ୟ ଓ ତରକାରୀ ଭଲ ନ ଲାଗିଲେ ଖାଉଥାଳୀ ଫୋପାଡ଼ି ଦିଏ । ପିଲାପିଲି ଅଳ୍ପ ପାଟି କଲେ ରୁଦ୍ରମୂର୍ତ୍ତି ହୋଇଯାଏ ।

ଏ ପାଖରେ ତାକୁ ମାମୁଁ ଘରକୁ ପଠାଇବାର ଯୋଜନା ଦେଖି ବୋଉ ଆଉ ତରୁଲତା ପ୍ରତି ବାସନ୍ତୀର ଖାଷେଣ ରାଗ ହେଲା । ସେ ସେମାନଙ୍କୁ ସ୍ପଷ୍ଟଭାବରେ ଶୁଣାଇ ଦେଲା ଯେ, ସେ ଯିବନାହିଁ । ନ ଯିବା କଥା ଶୁଣି ବୋଉର ବାସନ୍ତୀ ଉପରେ ରାଗ ହେଲା । ପେଟର ପିଲା ହୋଇ ଏମିତି ବଡ଼ ବଡ଼ କଥା ଶୁଣେଇ ପାରିଲା ? ଗୋଟାଏ ସାମାନ୍ୟ ପରଦେଶୀ ପିଲାପାଇଁ ସେ ବୋଉକୁ ଅବଜ୍ଞା କରିପାରିଲା !

— "ବାସନ୍ତୀ ! ଯିବୁ ନା ନାହିଁ; ସଫା ସଫା କହ ।" କାହିଁକି ଯିବି ? ମୁଁ କ'ଣ ତୁମର ଗୋଲାମ ଯେ ଯୁଆଡ଼େ ପଠେଇବ ସିଆଡ଼େ ଯିବି ?"

—"ମାଇଁ ତୋତେ ଅନେକ ଦିନରୁ ଚାହିଁ ରହିଛି । ସେଥିପାଇଁ ···"

"—ବୁଝିଛି ତୁମେମାନେ ମତେ ଏକାଟିଆ କରି ଦେବାକୁ ଚାହୁଁଛ ।"

—"ମୁହଁ ସମ୍ଭାଳି କଥା କହିବୁ । ପେଟର ଝିଅ ହୋଇ ଏମିତି କଥା କହିବାକୁ ଲାଜ ଲାଗୁନାହିଁ ?"

—"କହୁଛି ତ ଯିବି ନାହିଁ । ଯିବି ନାହିଁ, ଯିବି ନାହିଁ । ମୋର ଗୋଟିଏ କଥା । ତୁମମାନଙ୍କ ପାଇଁ ମୁଁ ଯଦି ଏମିତି କଣ୍ଟା ତାହାହେଲେ ସୋନାଇରେ ବୁଡ଼ି ମରିବାପାଇଁ କହୁନାହଁ କାହିଁକି ?"

—"ତୁ କଥା ନ ବୁଝି ଖରାପରୁ ଖରାପକୁ ଯାଉଛୁ ।" ଦୁଇଦିନ ଧରି ବୋଉ ଓ ତରୁଲତା ସହିତ ବାସନ୍ତୀର କଥାବାର୍ତ୍ତା ବନ୍ଦ । ତୃତୀୟ ଦିନ ସୁଜଳାର ଝିଅ ପ୍ରତି ମାୟା ହେଲା । ଶୋଇବାବେଳେ ଝିଅ ମୁଣ୍ଡରେ ହାତ ବୁଲାଇଲା । ବାସନ୍ତୀ ମା କୋଳରେ ମୁଣ୍ଡ ଗୁଞ୍ଜି କାନ୍ଦି ଉଠିଲା । ବୋଉ କହିଲା, "ଠିକ୍ କଥା କହିଲେ ଶତ୍ରୁ ବୋଲି ଭାବୁ ଝିଅ । ତୋ ପ୍ରତି କଣ ମୋର ସ୍ନେହ ନାହିଁ ?"

ସେ ଶାନ୍ତ ଶିଶୁ ପରି ବୋଉ କୋଳରେ ଆଉଜିଲା । ବୋଉ ସେହି ସୁଯୋଗରେ ସୋନାଇ ପୁରିଆର ଜୀବନଧାରା ଆଉ ଦର୍ଶନର ଇତିକଥା ବଖାଣିଲା ।

ସୋନାଇପୁରିଆ ଗାଁର ଜୀବନ ବିପଦ ସଙ୍କୁଳ । ସୋନାଇ ଉପରେ ନିର୍ଭର କରି ଗାଁର ଜୀବନ ଗଢ଼ି ଉଠିଛି । ସୋନାଇର ପଟୁମାଟି ଏଠାର ମାଟିକୁ ଶସ୍ୟ ଶ୍ୟାମଳା କରିଛି । ବର୍ଷରେ ସୋନାଇପରିଆ ଗାଁର ଧାନ ଚାଉଳ ଓ ପନପରିବା ଯଥେଷ୍ଟ ହୁଏ । ପୁଣି କେବେ ସୋନାଇ ରାଗେ । ବଢ଼ିପାଣି ଆସି ଚାଉଳ ବୁଡ଼ାଇ ଖମାରକୁ

ବୁଡାଏ । ଧାନ, ଖୋଳ ପାଣିରେ ବୁଡ଼ି ରହେ । ସୋନାଇପରିଆ କଷ୍ଟ ଭୋଗିଛନ୍ତି । ସଂକ୍ରାମକ ରୋଗ ବ୍ୟାପି ଯାଇଛି । ଦୁର୍ଭିକ୍ଷ ହୋଇଛି । ଏହାର ସାମଗ୍ରୀକ ଜୀବନଯାତ୍ରା ଏମିତି ଯେ, ସୋଇନାର ସ୍ରୋତ ଅନେକ ସମୟରେ ଜୀବନର ଗତି ନିର୍ଣ୍ଣୟ କରୁଛି । ପ୍ରକୃତିର ଭୀଷଣ ବୈଷମ୍ୟ ସୋନାଇର ସ୍ରୋତ ଉପରେ ଯିବା ଆସିବା ନ କରିଲେ ନ ଚଳେ । ତାଛଡ଼ା ବର୍ଷା ପାଣି ସ୍ଥିରପାଣି ହୋଇ ରହିଲେ ବିଲରେ ଚାଷ କରିବା ଖୁବ୍ କଷ୍ଟ । ଭାଗ୍ୟ ଖରାପ ଥିଲେ ଯେ କୌଣସି ଯାଗାରେ ଗୋଖରସାପ ମାରି ପାରେ । ପାଣି ତଳେ ବୁଡି ନଳିତା କାଟିଲାବେଳେ ଭେକ୍ଟି ମାଛ ଦେହରେ ଧକ୍କା ଲାଗି କଲିଜା ଅଟକିଯାଏ । ତା'ଛଡ଼ା ପବନ ଝଡ଼ ଏବଂ ଭଉଁରୀ ହେଉଛି ତ ଅଛି । ପବନରେ ଘର ଉଡ଼େଇ ନେବା, ଘୂର୍ଣ୍ଣୀ ବାୟୁରେ ମଣିଷ ମରିବାର ଘଟଣା ସୋନାଇ ପରିଆ ମଣିଷ ଲାଗି ନିୟମିତ ଘଟଣା । କାହା ଭାଗ୍ୟରେ କଣ କେହି ଜାଣନ୍ତି ନାହିଁ । ଭଗବାନଙ୍କ ଭରସା କରି ଅକାତରରେ ସୋନାଇପରିଆ ଜୀବନ କଟାନ୍ତି । ଆଞ୍ଚଳିକ ବିଶ୍ୱାସରେ ସାମାଜିକ ନୀତି ନିୟମ ଆଉ କୁସଂସ୍କାରରେ ସେମାନେ ଜୀବନର ଛନ୍ଦର ପରମ୍ପରା ବଜାୟ ରଖନ୍ତି । ପ୍ରକୃତିକୁ ତୁଷ୍ଟ କରିବା ଲାଗି ଲାଲୁଙ୍ଗ (୧) ଲୋକେ ସାପପୂଜା କରନ୍ତି । ଗଛ ଗଣ୍ଡି ରେ ସିନ୍ଦୂର ଦେଇ ପୂଜା କରନ୍ତି । କୌଣସି ଆଞ୍ଚଳିକ ଅଧିଷ୍ଠାତ୍ରୀ ଦେବୀଙ୍କ ଆଗରେ ଛେଳି, ହଂସ, ପାରା ବଳୀ ଦିଅନ୍ତି । ମରାପୁର, ବରବରି, ଦରଙ୍ଗି ସ୍କୁଲ ଆଉ ମାଜଗାଁର ସାମନାରେ କୀର୍ତ୍ତନ ହୁଏ । ତଥି ଆଉ ଅନ୍ୟ ଉତ୍ସବରେ ପ୍ରତି ନାମ ଘରେ ଶଙ୍କର ମାଧବ ଉକ୍ତି ମାରନ୍ତି । ମହାମାରୀ, ଅକାଳ ଅନାଟନ, ମରୁଡ଼ି ଓ ବଢ଼ି ଆଉ ଅକାଳ ବିପଦ ବିରୁଦ୍ଧରେ ସଂଗ୍ରାମ କରନ୍ତି—ପରାଜୟ ନ ମାନିଲେ ସୁଦ୍ଧା ସେମାନେ ସୋନାଇକୁ ଛାଡ଼ି କୁଆଡ଼େ ଯାଇ ପାରିବେ ନାହିଁ । ବିପଦର ଆଶଙ୍କାରେ ଜୀଇ ରହିବାର ଆନନ୍ଦ ସକଳ ଆନନ୍ଦଠାରୁ ବଡ଼ ବୋଲି ଭାବନ୍ତି । ବିପଦକୁ ସାହସିକତାରେ ତୁଚ୍ଛ କରିବା ହେଲା ସୋନାଇପରିଅଙ୍କର ସ୍ୱଭାବ । ତଥାପି ବାସ୍ତବ ଜୀବନରେ ନିୟମ ଲଂଘନ ହୁଏ । ପ୍ରଚଳିତ ଦର୍ଶନର ଲଂଘନ ହୁଏ । ମଝିରେ ମଝିରେ ସୋନାଇ କୂଳରେ ପରକୀୟା ପ୍ରେମର ପ୍ରମାଣ ମିଳେ । ମଦନର ଶରଘାତରେ ଯୁବତୀ ଆଉ ଯୁବକରି ମନ ନିୟମକୁ ମାନେନା । ବିହୁ ଗୀତର ବିଚଯାରେ, ବିହୁର ମହୁଆର ତାଳରେ, ବିହୁ ଢୋଲର ନାଦରେ ବନଜଙ୍ଗଲ କମ୍ପାଇବା ବନଗୀତର ନିଃସଙ୍କୋଚ, ଅଶ୍ଳୀଳତା ସାମାଜିକ ନିୟମକୁ ଭାଙ୍ଗି ଦିଏ । ବୋଉ ସୁଜଳାପରି ଅନେକ ଅଭିଜାତ ସ୍ତ୍ରୀ ଭାବନ୍ତି ଯେ, ପୁରୁଷର ସବୁ ଅନିଷ୍ଟ ହୁଏ ସ୍ତ୍ରୀ ଲାଗି ।

---

(୧) ଅସମ୍ ଉପଜାତୀୟର ଏକ ଜନଜାତି ।

ଶୋଇବା ସମୟରେ ଝିଅ ମୁଣ୍ଡରେ ହାତ ବୁଲାଇ ବୋଉ କହିଲା—"ଗନ୍ଧ କଲାଇ ଝୋଟ କାଟିବାକୁ ଯାଇ ସୋନାଇରେ ବୁଡ଼ି ମରିଥିଲା । କାରଣ ତାର ସ୍ତ୍ରୀ ପାପ କାମରେ ଲିପ୍ତଥିଲା । ସେଦିନ ସୋନାଇରେ ଝଡ଼ ବି ନ ଥିଲା । ଡଙ୍ଗା ଠିକ୍ ଚାଲୁଥିଲା ।"

ବାସନ୍ତୀ ଗନ୍ଧ କଲାଇର ସ୍ତ୍ରୀ କଥା ଜାଣେ । ବାହା ହେବା ଆଗରୁ ସେ ସ୍ୱରୂପ ଦୋକାନ ପାଖକୁ ଏକାଟିଆ ଯାଉଥିଲା । ସ୍ୱରୂପ ତାକୁ ଜରି କାମକରା ପାଟମେଖଳା ଦେଇଥିଲା । ବାସନାତେଲ ମୁଣ୍ଡରେ ଲଗାଏ—ସେ ତେଲ ମଧ୍ୟ ସ୍ୱରୂପ ଦେଇଥିଲା ।

ବୋଉ କଥାରେ ବାସନ୍ତୀର ବିଶ୍ୱାସ ହୋଇଗଲା । ତାର ଛାତି କମ୍ପି ଉଠିଲା । ବୋଉ ପୁଣି କହିଲା—"ଜାନକୀର ବଡ଼ଭାଇକୁ ଜଙ୍ଗଲରେ କାଠ କାଟିଲାବେଳେ ଖରାବେଳେ ନାଗସାପ ମାରିଲା । ମୁହୂର୍ତ୍ତକ ମଧ୍ୟରେ ତାର ପ୍ରାଣଗଲା । କିନ୍ତୁ ତାର ସ୍ତ୍ରୀ ଭଲ ମଣିଷ ଥିଲା । ସବୁ ଅନର୍ଥ ମୂଳରେ ଥିଲା ତାର ସାନ ଭଉଣୀ ଜାନକୀ । ସେ ହିଁ ଘରର ଅଲକ୍ଷ୍ମୀ । ତାରିପାଇଁ ଘର ନଷ୍ଟ ହେଲା । ତାର ଉପାର୍ଜ୍ଜନ ପନ୍ଥା ସମସ୍ତେ ଜାଣନ୍ତି । ତା'ର ଯେ ଥରେ ଗର୍ଭନଷ୍ଟ ହୋଇଥିଲା କିଏ ନ ଜାଣେ ?" ବୋଉ ଏ କଥା କହିଲାବେଳେ ବାସନ୍ତୀ ଚମକି ଉଠିଲା । ତାପାଇଁ ଭୋଗରାମର ଯଦି କିଛି ଅମଙ୍ଗଳ ହୁଏ, ଘରଟା ଏକବାର ନଷ୍ଟ ହୋଇଯିବ । ବାପାଙ୍କ ପରେ ସେ ଦଶବର୍ଷ ହେଲା ଏ ଘର ଚଳାଇ ଆସୁଛି । ସେମାନଙ୍କୁ ଦୁଇବେଳା ଖାଇବା ଯୋଗାଇବାକୁ ସେ ଦିନରାତି ଚନ୍ଦ୍ର ସୂର୍ଯ୍ୟ ପରି ଘୂରିବୁଲୁଛି ।

ବାସନ୍ତୀର କୋହ ଶୁଣି ବୋଉ ତାକୁ ସାନ୍ତ୍ୱନା ଦେଇ କହିଲା—"ସ୍ତ୍ରୀ ହେଲା ଘରର ଲକ୍ଷ୍ମୀ । ସ୍ତ୍ରୀର ଧର୍ମରେ ଘରକୂଳ ତରିଯାଏ । ବର୍ତ୍ତମାନ ବି ସମୟ ଅଛି ଝିଅ । ତୁ ବା କେତେ ଦିନର ଝିଅ ! ଧୈର୍ଯ୍ୟଧର । ବାଜେ କଥା ମନରୁ ବାହାରକର । ତୋତେ ବିଭାଦେଇ ମୁଁ ତରିଯିବି । ତୁ ଯାହା ଘରକୁ ଯିବୁ ସେମାନଙ୍କର ମଧ୍ୟ ଭଲ ହେବ । ସେ କୂଳ ବଂଶ ଆଉ ବଢ଼ିବ । ତୁ ମୋର ଶେଷ ଝିଅ । ବୁଢ଼ୀ ଦିନରେ ବୋଉର ଏତିକି କଥା ତୁ ରଖିବୁ ନା ଝିଅ ?"

କହିଲାବେଳେ ସୁଜଳାର ଗଳା ଥରୁଥିଲା । ବାସନ୍ତୀର ହାତକୁ ହଲେଇ ହଲେଇ ନିଜ ମନର ବେଦନା ଆଉ ଅନୁରୋଧକୁ ପ୍ରକାଶ କଲା । ଜାଲଜାଲୁଆ ଆଖିରେ ନିଆଁର ଝିଲିକ ପରି ଲୋତକ ମଧ୍ୟ ଦେଖାଦେଲା । ବାସନ୍ତୀ ବୋଉ କୋଳରେ ମୁଣ୍ଡ ଗୁଞ୍ଜି କାନ୍ଦିଲା—ଆଉ କିଛି ସମୟ ପାଇଁ ଅନିଚ୍ଛାରେ ପ୍ରଥମ ପୁରୁଷର ପ୍ରେମ ଆଉ ଆକର୍ଷଣକୁ ଠେଲିଦେଇ ସବୁ ଭୁଲିଯିବାକୁ ଥରକୁଥର ପ୍ରତିଜ୍ଞା କଲା—ସେ

ଧନଞ୍ଜୟ ପାଖରୁ ଦୂରେଇ ଯିବ । ସନ୍ଧ୍ୟାରେ ଆସି ଫାଟକରେ ସାଇକେଲ୍ ଘଣ୍ଟି ବଜେଇଲେ, ସେ କାନ ବନ୍ଦ କରିଦେବ । ସେ ତାଙ୍କ ଘରକୁ କେବେ ଆସିଲେ, ସେ ଘାଟକୁ ଚାଲିଯିବ । ଘାଟ ସେପାଖରେ ତାକୁ ଦେଖିଲେ, ସେ ପଳେଇ ଆସିବ । ଏମିତି କଲେ, ସେ ବଳେ ବଳେ ତା'ର ଆଶା ଛାଡ଼ିଦେବ । ତାକୁ ମୁକ୍ତି ମିଳିବ । ସେ ତ ପବିତ୍ର ରହିବ । ଯଦି ଭାଗ୍ୟରେ ଥାଏ, ତାହା ସହିତ ବିଭାଘର ହୁଏ, ତେବେ ଯାଇଁ ସେ ତାକୁ ଆପଣାର କରିନେବ ।

ପରଦିନ ବାସନ୍ତୀ ବୋଉ ସହିତ କିଛିଦିନ ଲାଗି ମାମୁଁ ଘରକୁ ଯିବ ବୋଲି କହିଲା । କଥା ଶୁଣି ବୋଉ ଓ ଚାରୁଲତାଙ୍କ ମୁଣ୍ଡରୁ ଯେପରି ବୋଝ ଓହ୍ଲେଇଗଲା । ଦୁଇଦିନ ପରେ ବାସନ୍ତୀ ବୋଉ ସଙ୍ଗରେ କନ୍ଧଗୁଷ ଚାଲିଗଲା । ଯିବାବେଳେ ଚାରୁଲତା ବାସନ୍ତୀକୁ କହିଲେ—"ମୁଁ ଭାଇଙ୍କୁ ସବୁ କହିବି—ଆଉ ପଚାରିବି ତୋ ପାଇଁ ଧନଞ୍ଜୟ କପଟ ଦେବ ?"

ଭାଉଜ ପ୍ରତି କୃତଜ୍ଞତାରେ ବାସନ୍ତୀର ଆଖିରୁ ଲୁହ ଝରିଗଲା । ବୋଉର ଦୃଷ୍ଟି ଏଡ଼େଇବାକୁ କାନିରେ ଲୁହ ପୋଛି ନିଜକୁ ସ୍ୱାଭାବିକ କଲା ।

## ଛଅ

ନିଜସ୍ୱ ଧାରଣା ନେଇ ପୁରୁଣା ଦିନର ନିଷ୍ଠାବତୀ ସ୍ତ୍ରୀ ସୁଜଳା । ସେଥିପାଇଁ ତାର ଇଚ୍ଛା ଅନିଚ୍ଛା ଉପରେ ବିଶେଷ ଗୁରୁତ୍ୱ ଦିଆଯାଏନା । ବାସନ୍ତୀର ମଧ୍ୟ ବୋଉ ପ୍ରତି ଭରସା ନଥିଲା । ଚାରୁଲତା ଉପରେ ତା'ର ସବୁ ଭରସା । ଚାରୁଲତା ତା' ପ୍ରତି ସହାନୁଭୂତିଶୀଳ । ଏହା ହିଁ ତା'ର ଆଶ୍ୱାସ । ସ୍ତ୍ରୀ ଗୋଡ଼ ଖସିଲେ ଯେ, ଘର ପାଇଁ ଖରାପ, ପୁରୁଷ ଲାଗି ବଡ଼ ବିପଦ । ସୋନାଇପୁରିଆ ଲୋକଙ୍କର ଏହି ବିଶ୍ୱାସ କଥା ଜାଣି ସେ ଭୋଗୁଛି । ତଥାପି ତାର ଆଶା ଯେ, ଭାଉଜ ଭାଇଙ୍କୁ ଧନଞ୍ଜୟ କଥା କହିବ ଆଉ ଭାଇ ମଧ୍ୟ ତାକୁ ପସନ୍ଦ କରିବେ । ସାମାଜିକ ନିୟମାନୁଯାୟୀ ବିଭାଘରଟା ହୋଇଯିବ । ଚାରିମାସ ଧରି ବାସନ୍ତୀର ଆଉ ଧନଞ୍ଜୟର ମାନସିକ ଯୋଗାଯୋଗ । ଏବେ କିନ୍ତୁ ମାସକ ଆଗରୁ ଭୋଗରାମ ଏମିତି ଏକ ସଙ୍କଟର ସମ୍ମୁଖୀନ ହୋଇଛି ଯେ, ସେଥିରୁ ଉଦ୍ଧାର ପାଇବା ତ କଷ୍ଟକର କଥା, ତାର ଭବିଷ୍ୟତ ମଧ୍ୟ ଅନ୍ଧକାର । ତା'ର ଭବିଷ୍ୟତ ମାନେ ଘରର ସାତ ସାତୁଟି ପ୍ରାଣୀଙ୍କର ଭବିଷ୍ୟତ । ସୋନାଇ-

ପୁରୁଆ ଜୀବନରେ ପରିବର୍ତ୍ତନ ଆସିଛି । ସାମାଜିକ ଜୀବନର ନୂତନ ମୂଲ୍ୟବୋଧ ଦେଖା ଦେଇଛି । କୃଷି ଜୀବନ ଅବ୍ୟାହତ ଥିଲେ ସୁଦ୍ଧା ମଣିଷ ନୂଆ ନୂଆ ସମସ୍ୟାର ସମ୍ମୁଖୀନ ହେବାକୁ ଲାଗିଛି । ଅଭାବ ଦେଖାଦେଇଛି । ତା ସହିତ ମଣିଷ ସ୍ୱାର୍ଥପର ହୋଇଛି । ପୂର୍ବର ମାନବଧର୍ମ ମ୍ଳାନ ହୋଇଛି । ସୋନାଇପୁରିଆର ମନକୁ ବନଗୀତର କୋମଳ କରୁଣ ମୂର୍ଚ୍ଛନା, 'ବରଗୀତ'ର ଆଧ୍ୟାତ୍ମିକ ତାତ୍ପର୍ଯ୍ୟ ଆଉ ପ୍ରକୃତିର ଅନୁପମ ରୂପ ସନ୍ତୁଷ୍ଟ କରିପାରୁନାହିଁ । ଜୀବନରେ ଜଟିଳତା ଆସିଛି । ଜୀବନ ଯୁକ୍ତ ସଙ୍ଗୀନ ହୋଇଛି । ନୈତିକ ତାତ୍ପର୍ଯ୍ୟ ଅବୋଧ ହୋଇଛି । ନୂତନ ପରିସ୍ଥିତିରେ କେତେଜଣ ଦକ୍ଷ ବା ଚତୁର ହୋଇଛନ୍ତି । ପୁରୁଣା ସମ୍ଭ୍ରାନ୍ତ ପରିବାର ଗରିବ ହୋଇଛନ୍ତି ଏବଂ ଧନୀ ହୋଇ ଉଠିଛନ୍ତି କେତେକ ନୂଆ ନୂଆ ବଂଶ ।

ସୋନାଇପୁରିଆ ଗାଁର ଜନସଂଖ୍ୟା ବଢ଼ିଛି । ଚାଷପାଇଁ ଜମି ମଧ୍ୟ କମିଗଲାଣି । ବାପଦାଦାଙ୍କର ୩୦-୪୦ ଏକର ଜମି ବଂଶାନୁକ୍ରମେ ଭାଗ ଭାଗ ହୋଇ ପରିବାର ପ୍ରତି ଦୁଇ ତିନି ଗୁଣ୍ଠକୁ ଆସିଲାଣି । ତା'ଛଡ଼ା ଇଂରେଜୀ ରାଜତ୍ୱ ଦିନରୁ ଶୋଷଣର କୌଶଳ ଶିଖିଥିବା ଟାଉଟର ଦଲାଲଙ୍କର ବଂଶ ରକ୍ତବୀଜଙ୍କ ପରି ବଢ଼ିବାରେ ଲାଗିଛି । ସୋନାଇପୁରିଆର କଞ୍ଚା ରାସ୍ତାରେ ବଡ଼ ବଡ଼ ପଥର ବିଛାଇ ରାସ୍ତା ତିଆରି କାମ ଚାଲିଛି, କେତେକେତେ ଯାଗାରେ ସରକାରୀ ଅଫିସ୍ ଖୋଲିଛି, ତିନି ଚାରିଟା ଠିକାଦାରଙ୍କର ଟିଣ ଛପର ଘର ଶୋଭାବର୍ଦ୍ଧନ କରୁଛି । ତଥାପି ସର୍ବସାଧାରଣଙ୍କ ଅବସ୍ଥା ଆଗଠାରୁ ଖରାପ ହୋଇଛି । ଗରିବ ଅଧିକ ଗରିବ ହୋଇଛନ୍ତି । ନୂତନ ପରିସ୍ଥିତିରେ ସୋନାଇପୁରିଆବାଲା ହୋଇଛନ୍ତି ନିଷ୍ଠୁର ଓ ଅସନ୍ତ, ପୁରାତନ ଓ ନୂତନର ଟଣାଟଣି ମଝିରେ ହୋଇଛନ୍ତି ଆଶାହୀନ, ଶିକ୍ଷା ପ୍ରସାରର ଅଭାବରେ, ମଣିଷ ମନରେ ନୂତନ ନୀତିବୋଧର ଉନ୍ମେଷ ହୋଇନାହିଁ । ଜୀବନରେ ଉଦାରତା ସେମାନେ ପାଶୋରି ଗଲେ, ଆଉ କେତେକ ବିଗତ ମୂଲ୍ୟବୋଧ ଓ ପ୍ରଥାକୁ ବର୍ତ୍ତିମାନ ସୁଦ୍ଧା ଜାବୁଡ଼ି ଧରିଛନ୍ତି ।

ଭୋଗରାମ ମଧ୍ୟ ଏହି ନୂତନ ପରିସ୍ଥିତିରେ ନିଜକୁ ଖାପ ଖୁଆଇବାକୁ ଚେଷ୍ଟା କରୁଛି । କିନ୍ତୁ ଦିନକୁ ଦିନ ସେ ଉପାୟହୀନ ହୋଇ ପଡ଼ୁଛି । ଭୋଗରାମର ବାପା ତା ପାଇଁ ବେଶି ଜମିବାଡ଼ି ରଖିଯାଇନଥିଲେ । ମାତ୍ର କେଇ ଏକର । ସେ ପାଇଁ ସେ ବାପକୁ କେବେ ହେଲେ ଦୋଷ ଦିଏନା । ସେତେବେଳେ ଜମି ମୂଲ୍ୟବାନ୍ ନଥିଲା । ସୋନାଇପାର ଅଞ୍ଚଳରେ ସବୁ ଜିନିଷ ଶସ୍ତା ଥିଲା । ଏଇପରି ଗୋଟାଏ ଅଭାବର ଦିନ ଆସିବ ବୋଲି ବାପମାନଙ୍କୁ ଜଣା ନ ଥିଲା । ଆଉ ସେ ଲୋଭ ନ ଥିଲେ

ଯେ ବେଶି ଜମି ପିଲାପିଲାଙ୍କ ପାଇଁ ରଖିଯିବା ଉଚିତ୍‌ । ସେମାନଙ୍କ ଦିନରେ ଗ୍ରାମୀଣର ଜୀବନ ଥିଲା ସ୍ଥାବର ଅଥଚ ସ୍ୱଚ୍ଛଳ । ସେ ଦିନର ମଣିଷର ଉଚ୍ଚ ଆକାଂକ୍ଷା ଆଉ ବୈଷୟିକ ଉନ୍ନତିର ମୋହ ବନ୍ଧନ ଶିଥିଳ ଥିବାଟା ସ୍ୱାଭାବିକ । ସେମାନଙ୍କର ଚିନ୍ତାଥିଲା ଘର ଜମିର ସଦ୍‌ଗତି ଲାଗି । ଧର୍ମର ଭୁଲ ବ୍ୟାଖ୍ୟା ମନୁଷ୍ୟକୁ କର୍ମବିମୁଖ କରିଥିଲା । ଏହି ମଣିଷଙ୍କର ସମ୍ବଳ ଥିଲା, କେବଳ ପୂର୍ବପୁରୁଷଙ୍କର ପରମ୍ପରା ।

ବାପାଙ୍କ ମୃତ୍ୟୁପରେ ଭୋଗରାମ ଭଲରୂପେ ଜାଣିଥିଲା ଯେ ପୈତୃକ ସମ୍ପତ୍ତିରେ ସେ ଭବିଷ୍ୟତ ଗଢ଼ିପାରିବ ନାହିଁ । ବାପା ବଞ୍ଚିଥିଲାବେଳେ ହିଁ ଭୋଗରାମ ଚାଷକାମ ଛାଡ଼ିଥିଲା ଓ ବେପାରରେ ଲାଗି ଯାଇଥିଲା ।

ଭୋଗରାମର ବେପାର ବି ଆଶ୍ଚର୍ଯ୍ୟ ଧରଣର । ମାଘମାସରୁ ବୈଶାଖଯାଏ ସେ ଗାଁରୁ ଧାନ, ମୁଗ, ସୋରିଷ କିଣେ ଓ ପ୍ରତି ସପ୍ତାହରେ ଗାଡ଼ିଏ ଦୁଇଗାଡ଼ି ମାଲନେଇ ସହରରେ ବେଶୀ ଦାମ୍‌ରେ ବିକ୍ରି କରେ । ବୈଶାଖରୁ ଶ୍ରାବଣଯାଏ ଫୁଲଝର, ଜାଜୋଖା ଓ ଦଲଂଘାଟ ବଜାରରେ ରେଡିମେଡ୍‌ ପୋଷାକ ବିକ୍ରୀ କରେ । ବାକି ଚାରିମାସ ଖୋଟ କାରବାର କରେ । ଦୁଇଦିନ ଚାରିଦିନ ବୁଲି ବୁଲି ଦଶ ବାର ମହଣ ଖୋଟ ସଂଗ୍ରହ କରେ ଓ ଶେଷରେ ମାଡ଼ୱାଡ଼ି ପାଖରେ ବିକ୍ରୀକରେ । ଏହି ବ୍ୟବସାୟ ଖୁବ୍‌ ସାହାସର କାମ । ଖୋଟ କାରବାର ଜୁଆଖେଳପରି । ଗାଡ଼ିଏ ଖୋଟରେ ଶହେ ଟଙ୍କା ଲାଭ ହୋଇପାରେ, ଆଉ ଯଦି ଭାଉ ପଡ଼ିଗଲା, ତେବେ ମୂଳ ଧନ ମଧ୍ୟ ମୂଳପୋଛ ହୋଇପାରେ । ଖୋଟ ବଜାରକୁ ବୁଝିବା ଆଉ ସୁନ୍ଦରୀ ଝିଅ ମନକୁ ବୁଝିବା ଏକା କଥା । ତଥାପି ଭୋଗରାମର ମୋଟାମୋଟି କ୍ଷତି ହୁଏନା । ସେ ବେପାର କରି କରି ଅଭ୍ୟାସ ହୋଇ ଯାଇଛି । ତାର ସମ୍ବଳ ହେଲା ଗୋଟିଏ ଗୋରୁ ଗାଡ଼ି, ହଳେ ବଳଦ । ଗୋଟିଏ ତରାଜୁ, ଓଜନ ବଟକରା ଏବଂ ଖୋଟ ଓଜନ ଲାଗି କଣ୍ଢା । ମୂଳଧନ ଦୁଇଶହ ତିନିଶହ ଟଙ୍କା । ସେଇଥିରେ ସାରାଘରକୁ ପୋଷିବାକୁ ହୁଏ । ଲାଭ ଟଙ୍କାରେ ନିଜେ ବିଭାହେଲା ଆଉ ଭଉଣୀ ରୂପନ୍ତୀକୁ କନ୍ଧିଗୁଡ଼ାରେ ବିଭା ଦେଲା । ଅଠସ୍ତୁଳଣ ମସିହାର ଖୋଟ ବଜାର ଖୁବ୍‌ ତେଜଥିଲା । ସେହି ବର୍ଷ ସେ ଖୁବ୍‌ ଲାଭ କରିଥିଲା । ଭଲ ଘରଟିଏ ତିଆରି କଲା । ଗାଡ଼ିଆଳଟାଏ ମଧ୍ୟ ରଖିଲା । ସାଇକେଲ ବି କିଣିଲା । ଆଣ୍ଠୁଲମ୍ବ ଧୋତି ପାଦଯାଏ ଆସିଲା । ସେ ହେଲା ଜଣେ ଭଦ୍ରଲୋକ । ପକେଟରେ ଖୋସିଲା ଫାଉଣ୍ଟେନ ପେନ । କପଡ଼ା ବନ୍ଧା ବଡ଼ ଖାତାରେ ହିସାବ ଲେଖିଲା । ଭାତ ସହିତ ଅମ୍ବୁର ଖାଇଲା । ବୁଧା ସହିତ ଗାଈ ଘିଅରେ ଭଜା ଲୁଚି ଖାଇଲା । ଭୋଗରାମ ମହାଜନ ହେଲା ।

ଅଠସ୍ତରି ମସିହାପରି ଲାଭ ନ ହେଲେ ବି କେଇଟି ବର୍ଷ ତାର ବେପାର ଭଲ ଚାଲିଲା । ମୂଳଧନ ଅଳ୍ପ ବହୁତ ବଢ଼ିଲା । ସେ ଧନୀ ନ ହେଲେ ମଧ୍ୟ ସେଠାକାର ମଗ୍‌ପୁର ଗାଁର ଗୋପାଳ ମଣ୍ଡଳ, କେରୁପାଇ ମୋହନ୍ତି, ଯୋଗେଶ ବାସୁନ ଆଉ ଜମ୍ବୁରାମ ପଣ୍ଡିତଙ୍କଠାରୁ ତା'ର ଅବସ୍ଥା ଭଲ ହେଲା । କିନ୍ତୁ ଦୁଇବର୍ଷ ହେଲା କଣ କେମିତି ଗଣ୍ଡଗୋଳ ହୋଇଗଲା, କୌଣସି କାମ ପୂରା ହେଲା ନାହିଁ । ବର୍ଷାଦିନରେ ମାତ୍ର କେତୋଟି ଗାଡ଼ି ଖୋଟ ବନ୍ଦୀ ହୋଇପାରେ । ଲାଭ ବେଶି ହୁଏନା । କାରଣ ସେତେବେଳେ ଖୋଟର ଦର ଉଠେନା କି ଯଢ଼େନା । ଧାନ ଆଉ ସୋରିଷର କାରବାର ସେମିତି ମାନ୍ଦା । ସେଥିପାଇଁ ବେପାର କରିବା ତାକୁ କଷ୍ଟ ଲାଗିଲା । ସୁବିଧା ଦେଖି ସେ ଛୋଟ ଛୋଟ ବେପାରରେ ହାତ ଦେଇ ଘର ଚଳେଇବାକୁ ଲାଗିଛି । ରେଡ଼ିମେଡ଼ ପୋଷାକ ବ୍ୟବସାୟ କରି ନ ଥିଲେ ଘର ଚଳି ନ ଥାନ୍ତା । ଶେଷରେ ଗାଡ଼ିଆଳକୁ ରଖିବା ସମ୍ଭବ ହେଲା ନାହିଁ । ବର୍ଷରେ ମାତ୍ର ଦୁଇମାସ ବଳଦଗାଡ଼ି ଚାଲେ । ସେ କେବଳ ଖୋଟ ବେପାରବେଳେ ମଜୁରିରେ ଲୋକଟିଏ ରଖି ଗାଡ଼ି ଚଳାଏ । ପାଞ୍ଚବର୍ଷ ହେଲା ଖେଳାରାମ ଲକ୍ଷ୍ୟକରି ଆସୁଛି ଯେ, ସୋନାଇପରିଆ ଲୋକେ ଆଗପରି ଧାନବନ୍ଦୀ କରି ପାରୁ ନାହାନ୍ତି । କ୍ଷେତରେ ଦାଳୁଅଧାନ, ଖରାଦିନରେ କୋବି, ବାଇଗଣ ଫସଲ ଓ ପୁଣି ସୋରିଷ କରି ସୁଦ୍ଧା ବର୍ଷ ଶେଷରେ ସୋନାଇ ପୁରିଆ ଲୋକେ ଧାନ ସୋରିଷ ବନ୍ଦୀ କରି ପାରୁନାହାନ୍ତି । ଶହେଥର ବୁଲି ବୁଲି ମାତ୍ର ଗାଡ଼ିଏ ଯୋଗାଡ଼ କରି ପାରୁଛି । କିନ୍ତୁ ଏହିପରି ଜିନିଷ ଯୋଗାଡ଼ କଲେ ବେପାର ଚଳେନା । ଧାନ ସୋରିଷ ବେପାର ସେ ଛାଡ଼ିଲା ।

ଦେଶରେ ଖାଇବାକୁ ଲୋକ ବଢ଼ିଲେ । ଫସଲରେ ପେଟ ପୂରାଇବା କଷ୍ଟ ହେବାକୁ ଲାଗିଲା । ମାଟିର ଉର୍ବର ଶକ୍ତି କ'ଣ କମିଗଲା ? ଏହି କାରଣରୁ ସୋନାଇ ପୁରିଆ ଖେଳାରାମକୁ ସବୁ ବାଟରେ ବ୍ୟବସାୟ କରିବା କଠିନ ହେଲା । କିନ୍ତୁ ଖୋଟ ଫସଲର ଆଗପରି ସେମିତି ହେଉଛି । ସମସ୍ତ ବେଳେ କିଣିବାକୁ ତ ମିଳୁଛି । ଅବଶ୍ୟ ଖୋଟକୁ ତ ଆଉ ଖାଇହେବ ନାହିଁ । ଖୋଟ ଫସଲ କରିଲେ ସୁଦ୍ଧା ଆହୁରି ଦୁଇଟା ଫସଲର କରିହେବ । କାରଣ ଖୋଟକାଟି ସାରିଲାପରେ ଶାରଦ ଧାନ ରୁଆ ହୋଇ ପାରିବ । ଏ ଅଞ୍ଚଳରେ ଅଳ୍ପ କେତେକ ଖୋଟଚାଷୀଙ୍କର ସ୍ୱଚ୍ଛଳ ଅବସ୍ଥା ଯାହାଙ୍କ ଜମିରେ ଖୋଟ ହୁଏନା ସେମାନଙ୍କ ଅବସ୍ଥା ଖରାପ । ଦିନେ ଏମିତି ଥିଲା ଯେ ସୋନାଇପୁରିଆ ଲୋକେ ଖୋଟ ଚାଷର ଫାଇଦା ଜାଣି ନ ଥିଲେ । ପଘା ପାଇଁ ଦୁଇ ଚାରିହାତ ଜମିରେ ଖୋଟ କରୁଥିଲେ । ପ୍ରଥମ ବଡ଼ଯୁଦ୍ଧପରେ ଖୋଟଚାଷ କଥା ଲୋକେ ବୁଝି ପାରିଲେ ।

ଖେଗରାମର ଅବସ୍ଥା ଧୀରେ ଧୀରେ ଖରାପ ଆଡ଼କୁ ଗତି କରୁଥିଲେ ସୁଦ୍ଧା ସେ ଗୋଟିଏ କଥା ଉପରେ ଭରସା ରଖିଥିଲା । ଡାଲୁଅଧାନ ଖରାପ ହେବାର କାରଣ ହେଲା ଖୋଟ ଚାଷ; କିନ୍ତୁ ଖୋଟଚାଷ ଭଲ ହେଲେ ସୋନାଇପୁରିଆଙ୍କର ବ୍ୟବସାୟ ଭଲ ଚାଲିବ । ତା ଛଡ଼ା ଖୋଟ ବିକି କଞ୍ଚା ଟଙ୍କା ପାଇଲେ ଲୋକଙ୍କର ଟଙ୍କା ଖର୍ଚ୍ଚ କରିବାର କ୍ଷମତା ମଧ୍ୟ ବଢ଼ିବ । ତା' ହେଲେ ତାର ରେଡ଼ିମେଡ଼୍ ପୋଷାକ ବ୍ୟବସାୟ ଠିକ୍ ଚାଲୁରହିବ ।

କିନ୍ତୁ ଏ ଦୁଇମାସ ହେଲା ସେ ବଡ଼ ହତାଶ ହୋଇ ପଡ଼ିଛି । ବେବେଜାସ୍ଥାରୁ ହାତୀପୁର ପର୍ଯ୍ୟନ୍ତ ରାସ୍ତାରେ ପଥର ବିଛା ସରିଲାଣି । ରାସ୍ତାଟି ଖୁବ୍ ଚହଡ଼ା କରା ହେଲାଣି । ଆଗରେ ଏହି ରାସ୍ତା ସୋନାଇ କୂଳର ଚାରୋଟି ଗାଁକୁ ଛୁଇଁବ । ଗତବର୍ଷ ପାଣି ଆଉ କାଦୁଅରେ ଭରି ଥିଲା । କିନ୍ତୁ ଏଣିକି ରାସ୍ତା ଭଲ ହୋଇଯିବ । ତା'ପରେ ସହରକୁ ଖୋଟଗାଡ଼ି ନେବାକୁ ଖୁବ୍ ସୁବିଧା ହେବ । ଆଗକୁ କ'ଣ ହେବ, ସେ ଭିନେ କଥା । ଏବେ କିନ୍ତୁ ତାର ବଡ଼ କଷ୍ଟ ହେଉଛି । ରାସ୍ତାର ପଥରଗୁଡ଼ା ଅସମତଳ ଭାବରେ ବିଛା । ସହରକୁ ଗଲାବେଳେ ହାତୀସୁଙ୍ଗଠାରୁ ବେବେଜାସ୍ଥାର ରାସ୍ତା ଦେଇ ସଦର ରାସ୍ତାକୁ ଉଠିଲେ ପଥରରେ ସାଇକେଲ ଚଲାଇବାକୁ ଖୁବ୍ କଷ୍ଟହୁଏ । ଦେଢ଼ ମାସରେ ଖେଗରାମ ଦୁଇଟା ଟାୟାର ବଦଳା କରିଛି । ଟାୟାର ଦାମଟି ଖୁବ୍ ବେଶି । ଗୋଟାଏ ଟାୟାର ଦଶଟଙ୍କା । ଟ୍ୟୁବ ଦୋକାନରେ ପୁଣି ଦଶଟଙ୍କା ପଚିଶ ପଇସା । ଦେଢ଼ ମାସରେ ଯଦି ଟାୟାର ପଛରେ କୋଡ଼ିଏ ପଚିଶ ଟଙ୍କା ଖରଚ ହୁଏ ତା' ହେଲେ ବେପାର ସେ କଣ କରିବ ?

ଖେଗରାମ ଏହି ଦୁଇ ବର୍ଷ ଭିତରେ ବାପର ଶ୍ରାଦ୍ଧ ବି କରିପାରିନାହିଁ । ଗାଁର ସମସ୍ତଙ୍କୁ ଭୋଜି ଦେବା ତା ପକ୍ଷରେ ସମ୍ଭବପର ହେଲାନାହିଁ । ତା'ପରେ ବାପକୁ ସେ ତିନିଥର ସ୍ୱପ୍ନରେ ଦେଖିଲା । ସେ ବୁଝିପାରିଲା ଯେ, ବାପର ଶ୍ରାଦ୍ଧରେ କେବଳ ପାଏ ଅରୁଆ ଚାଉଳ ପୋଥି ଆଗରେ ଦେଇ କାମ ଚଳେଇବାରୁ ବାପର ଆତ୍ମା ଅସନ୍ତୁଷ୍ଟ ହୋଇଛି । ସେହି କାରଣରୁ ମୋଲଭି ମୋହସିନଠାରୁ ପାଞ୍ଚଟଙ୍କା ଧାର କରି ଜ୍ୟେଷ୍ଠ ଅଠେଇଶ ତାରିଖରେ କୌଣସିମତେ ବାପର ଶ୍ରାଦ୍ଧ କରିଲା । ଆଜିକୁ ଦୁଇମାସ ହେଲା, ମୋହସିନର ଟଙ୍କା ପରିଶୋଧ କରି ପାରିନାହିଁ ।

ବାସନ୍ତୀ ମାମୁଁ ଘରକୁ ଯିବାର ପରଦିନ ସକାଳୁ ସକାଳୁ ମୋହସିନ ଟଙ୍କା ମାଗିବାକୁ ଆସିଥିଲା । ମୋହସିନ ଗରମ ହୋଇ କଥା କହିଲା । ଖେଗରାମ ତା ଜୀବନରେ ଏମିତି ଅପମାନ ପାଇ ନ ଥିଲା । ସେହି ମୋଲାଭି ଦିନେ ତା ଘରେ

ବୁଧ ବିକ୍ରୀ କରୁଥିଲା, ଆଉ ମଜୁରି ଖଟୁଥିଲା । ସେହି ମୋଲାଇ ମୋହରିର ବଡ଼ ବଡ଼ କଥା ଶୁଣିବା ଆଗରୁ କାନ ଦିଟା ଫୁଟି ନ ଗଲା କାହିଁକି ? ଖେଳରାମର ଦେହରେ ନିଆଁ ଜଳିଗଲା । ସେ ଧର୍ମଧରି ମୋହରିଙ୍କୁ କିଛି କହିଲାନାହିଁ । ସେ ପ୍ରତିଜ୍ଞା କରିଲା—ଦୁଇଦିନ ଭିତରେ ଟଙ୍କା ପରିଶୋଧ କରିବ ।

ସାଇକଲଟା ଖରାପ ଥିବାରୁ ଦୁଇ ସପ୍ତାହ ହେଲା ଫୁଲଗୁରି ହାଟକୁ ଯାଇ ନଥିଲା । ପରଦିନ ଶନିବାର । ସେହିଦିନ କପଡ଼ାର ବୋଝ ସାଇକଲରେ ରଖି ଫୁଲଗୁଡ଼ି ହାଟକୁ ଯାଇଥିଲା । ହାଟରେ ପହଞ୍ଚି ସେ କାଠ ହୋଇଗଲା । ଏହା ଭିତରେ ଅନେକ କପଡ଼ା ଦୋକାନ୍ ବସିଗଲାଣି । ବିଭିନ୍ନ ପ୍ରକାର ଲୁଗା ପୋଷାକରେ ସେ ଦୋକାନସବୁ ଭରି ରହିଛି । ବେପାରି ସବୁ ସହରର । ଫୁଲଗୁରି ହାଟରେ ଧାନ ଆଉ ଖୋଟ ମାରୁଥିବା ବେପାରୀମାନେ ଲୁଗା ବେପାର ବି ଧରିଲେଣି । ତାଙ୍କ ଦୋକାନରେ ବିଭିନ୍ନ ପ୍ରକାରର ଲୁଗାଥିବାରୁ ଗରାଖଙ୍କ ଗହଳି ମଧ୍ୟ ବଢ଼ିଛି । ତା'ଛଡ଼ା ସହରର ବେପାରୀମାନଙ୍କ ବେପାରରେ କି ଯେ ଫନ୍ଦି !! ସେମାନେ ଗରାଖମାନଙ୍କୁ ଆଦରକରି ବିଡ଼ି ସିଗାରେଟ ମଧ୍ୟ ଖୁଆଉଛନ୍ତି । ସେ ପାଖରେ ସାମାନ୍ୟ ଲୁଗା ନେଇ ବସିଥିବା ଖେଳରାମକୁ ସେମାନେ ଗୃହୁଁ ବି ନାହାନ୍ତି । ଖେଳରାମ ଆକାଶ ପାତାଳ ଭାବି ବସିଛି । ଦଶଟା ବାଜିଲା । ତା'ର ବିକ୍ରୀ ହେବାର ଆଶା ଦେଖାଗଲା ନାହିଁ । ଦୁଃଖରେ ସେ ସବୁ କପଡ଼ା ବାନ୍ଧିବାକୁ ଲାଗିଲା, ମନରେ ଅନେକ ପ୍ରଶ୍ନ । ଗାଁ ଲୋକଙ୍କ ଭିତରେ ଦିନକୁ ଦିନ ମିଲ୍ କପଡ଼ାର ଆଦର ବଢ଼ୁଥିଲା । ସ୍ତ୍ରୀଲୋକମାନେ ମଧ୍ୟ ପତଳା ମିଲ୍ ବୁଣା ଲୁଗା ନ ପିନ୍ଧିଲେ ସତେ ଯେପରି ଦେହକୁ ଶାନ୍ତ ନ ଥିଲା । ହଠାତ୍ ଏ ସଉକ କେଉଁଠୁ ଆସିଗଲା । ଲୋକଙ୍କ ବିଳାସ ବ୍ୟସନ ଦେଖି ଲାଗୁଛି, ସତେ ଯେପରି ସମସ୍ତଙ୍କ ଅବସ୍ଥା ସୁଧୁରି ଯାଇଛି । କିନ୍ତୁ ପ୍ରକୃତରେ ଲୋକଙ୍କ ଅବସ୍ଥାରେ କିଛି ବି ପରିବର୍ତ୍ତନ ହୋଇନି । ଏସବୁ କେବଳ ଦେଖାଣିଆ ଦୁନିଆ । କିନ୍ତୁ ଏ ତ ଗାନ୍ଧୀଙ୍କ ଦେଶ ! ଆନ୍ଦୋଳନ ସମୟରେ ନେତାମାନେ ଲୋକଙ୍କୁ କହୁଥିଲେ ଯେ, ଆମ ଦେଶର ଗୋଟିଏ ଘରେ ଗୋଟିଏ ଚରଖା ଚାଲିଲେ ଇଂଲଣ୍ଡରେ ଗୋଟିଏ ଲୁଗାକଳ ବନ୍ଦ ହୋଇଯିବ । ନିଜ କପଡ଼ା ନିଜେ ବୁଣିବା ଅର୍ଥ ସ୍ୱାବଲମ୍ବୀ ହେବା । କୁହାଯାଉଥିଲା, ଚରଖା ହିଁ ଆମ ପ୍ରଗତିର ମୂଳସୂତ୍ର । ଗାନ୍ଧିଜୀ ଜୀବନସାରା ଏହି କଥା କହୁଥିଲେ ଓ କରୁଥିଲେ ବି । ଏବେ ଗାନ୍ଧିଜୀ ଆଉ ନାହାନ୍ତି । କ'ଣ ସେଇଥିପାଇଁ ଚରଖାର ଶବ୍ଦ ବନ୍ଦ ହୋଇଗଲା ? ସେ-ଡବେଳେ ଭାଷଣ ଦେଉଥିବା ନେତାମାନେ କ'ଣ ଆଜି ନିଜର ମତ ପରିବର୍ତ୍ତନ କରିଦେଲେ ? ସୂତା କାଟି କାଟି ଲୋକେ ଥକିଗଲେ କି ? ଗାଁର ସବୁ ମାଇପେ କ'ଣ ନିକମା ହୋଇଗଲେ ?

ମନ ଦୁଃଖରେ ଭୋଗରାମ ହାଟରୁ ଫେରିବା ସମୟରେ ଭାବୁଥିଲା—ସ୍ୱରାଜ୍ୟ ମିଳିବା ପୂର୍ବ ଦିନଗୁଡ଼ିକ ପରି ଲୋକେ ଯଦି ହାତରେ ସୂତା କାଟି ଲୁଗାବୁଣି ପିନ୍ଧନ୍ତେ ତେବେ ଏହି ବ୍ୟବସାୟୀମାନେ ଲୋକଙ୍କୁ ଠକିବାରେ ଆଉ ଅବକାଶ ପାଆନ୍ତା ନାହିଁ । ଆଉ ତାର ନିଜର ଅବସ୍ଥା ବି ଆଜି ପରି ଏତେ ଶୋଚନୀୟ ହୁଅନ୍ତାନି । ଲୋକଙ୍କର ପିନ୍ଧିବା ଅଭ୍ୟାସ ଯଦି ବଦଳି ନଥାନ୍ତା ତେବେ ନିଜ ଘରର ଦୁଇଟି ତନ୍ତରୁ ବି ସେ ଅନେକ ପଇସା ଉପାର୍ଜନ କରିପାରନ୍ତା ।

ହାଟ ପାର ହୋଇ ସଦର ରାସ୍ତାକୁ ଉଠିଲାବେଳେ ହାଟର ମହାଜନ ତିଲକ ସହିତ ଦେଖାହେଲା । ତିଲକ ସେହିବର୍ଷ କୋଡ଼ିଏ ହଜାର ଟଙ୍କାରେ ହାଟକୁ ନିଲାମରେ ଧରିଥାଏ ।

"କହୋ ମହାଜନେ, ଏତେଶୀଘ୍ର ହାଟ ସାରିଲ ?" "କହନା ଭାଇ, କିଛି ନାହିଁ । ସିଲ୍‌ହଟିଆ ବେପାରି ମୋ ମୁହଁକୁ ବନ୍ଦ କଲେଣି । ତାଙ୍କ ସହିତ ତାଳ ଦେବା କଷ୍ଟ । ସେମାନେ ଦଳ ଦଳ ହୋଇ କେଉଁଠୁ ଆସିଲେ ?"

"ଓଃ, ତୁମେତ ଅନେକ କଥା ଜାଣନା ଦେଖୁଛି । ଆଜିକୁ ଆଠଦିନ ହେଲା ଏପାଖରେ ଦିନକୁ ତିନିଥର ସର୍ଭିସ ବସ୍ ଚାଲିଲାଣି । ଗୋଟିଏ ଯାଏ ଭଦ୍ରକକୁ, ଖଣ୍ଡିଏ ମୟୋଗ, ଆଉ ଖଣ୍ଡେ ରହୁା । ବସ୍ ଚାଲିବାରୁ ହିଁ ସେମାନେ ଆସି ପାରିଲେ । ଆଗ ଅପେକ୍ଷା ହାଟଟା ବେଶ୍ ବଡ଼ ହୋଇଛି ।"

ତିଲକର କଥା ଶୁଣି ଭୋଗରାମ କୌଣସି ମତାମତ ଦେଲାନାହିଁ । ଦୁଃଖରେ କେବଳ ଦୀର୍ଘଶ୍ୱାସଟିଏ ବାହାରି ପଡ଼ିଲା—ଆଜିଠାରୁ ଆଉ ଫୁଲଗୁଡ଼ି ହାଟକୁ ଆସିବାର ଦରକାର ନାହିଁ । ସେ ଜାଜୋଙ୍ଗ ଓ ଦଳଂଘାଟ ହାଟରେ ବେପାର କରିପାରିବ । ତାର ଭଗବାନଙ୍କୁ ଗୁହାରି ଯେ, ଏହି ଦୁଇଟି ହାଟରେ ସିଲ୍‌ହଟିଆ ବେପାରି ଯେପରି ପହଞ୍ଚି ନପାରନ୍ତି ।

ଦି ପହରେ ଭାତ ଖାଇବା ପରେ ସ୍ତ୍ରୀ ଯେମିତି ବାସନ୍ତୀକୁ ହାତରୁ ଦି ହାତ କରିବା କଥା କହିଛି, ଭୋଗରାମ ଖିଙ୍କାରି ଉଠି କହିଲା—"ତୁମର ସ୍ତ୍ରୀମାନଙ୍କର ଆଉ କିଛି ଚିନ୍ତା ନାହିଁ । ଖାଲି ବାହା—ବାହା— ବାହା । ତା ପାଇଁ ବର ଯଦି କେଉଁଠୁ ମିଳୁ ନାହାନ୍ତି, ତାହାହେଲେ ସେଇ ଗଛ ତଳେ ଭିକାରି ବାବାଜୀ କି ନ ଦେଉଛ କାହିଁକି ! ସ୍ତ୍ରୀଙ୍କର ଧୈର୍ଯ୍ୟ ବୋଲି କିଛି ନାହିଁ !"

"ମଲା ଏମିତି ରାଗୁଛ ନାହିଁ ଭଲା ?" ମୁଁ କ'ଣ ଦୁନିଆ ଛଡ଼ା କଥା କିଛି କହିଲି କି ? ଆଉ ତମ ପରି ବହୁତ ମର୍ଦ୍ଦ ତ କହନ୍ତି ପୁଣି ଯେ—ପ୍ରବାଦ "ଝିଅ ଜଙ୍ଗଲର ବାଘ ସଙ୍ଗେ ସମାନ ।"

"ଆଉ ସେହି ବାଘ ମୁହଁରେ ମୁଁ ଲଗାମ ଦେଇ ଜାଣେ । ବୁଝିଛ ତରୁ । ସେ ସବୁ ଚିନ୍ତା ଛାଡ଼ । ମାସେ ଦି ମାସ ଭିତରେ ବୁଝିପାରିବ ଯେ, ବାସନ୍ତୀର ଭାଇ ତାଙ୍କୁ ବାହା ଦେବ କଣ—ତାଙ୍କୁ ଖାଇବାକୁ ଦେଇପାରିବା ବି ସନ୍ଦେହ ।"

"ତମେ ଅାଜ ଏସବୁ କଣ କହୁଛ ? ମୁଁ କିଛି ବୁଝିପାରୁନାହିଁ ।" ଆଗପରି ଶାନ୍ତ ହୋଇ ଶ୍ରୀରାମ ଫୁଲଗୁଡ଼ି ହାଟରେ ତାର ଦୁର୍ଦ୍ଦଶା କଥା ଖୁବ୍ ଦୁଃଖରେ କହିଲା । ତରୁଲତାର ମନଟା ଦବିଗଲା । ବାସନ୍ତୀ ବିଷୟରେ ଗୋପନ କଥାଟି ଆଉ କହିବାକୁ ମନ ବଳେଇଲା ନାହିଁ । ଶୁଣିଲେ ସେ ହୁଏତ ଜଳି ଉଠିବ । ହିତରୁ ଅହିତ ହେବ ।

ସେଦିନ ରାତିରେ ଶ୍ରୀରାମର ନିଦ ହେଲା ନାହିଁ । ବହୁ ଆଶଙ୍କା ତା ମନର ଶାନ୍ତିକୁ ଟିକିଟିକି କରି ଖାଇବାକୁ ଲଗିଲା । ଦୁଇମାସ ଭିତରେ ହିଁ "ଗଡ଼ କମାଣ" ବଲ୍ଲାଗର ପଥର ଓ ଗେଙ୍ଗୁଟି ବିଛା ରାସ୍ତା ବେବର୍ତ୍ତାପୁରୁ ଜାଙ୍କୋସି ପର୍ଯ୍ୟନ୍ତ ଗଲାଣି । ତା'ଗାଁରେ ପହଞ୍ଚିବାକୁ ଆଉ ବା କେତେଦିନ ଲାଗିବ ? ଦେଶରେ ରାସ୍ତାଘାଟ ଭଲ ହେଲାରୁ ଲୋକଙ୍କର ମଙ୍ଗଳ ହେଉଛି—ଏକଥା ଲୋକେ ସ୍ୱୀକାର କରୁଛନ୍ତି, ଆଉ ଖବର କାଗଜ ସେହି କଥା ଥରକୁ ଥର ଲେଖୁଛି । କିନ୍ତୁ ଆଜି ସେ ବିଶ୍ୱାସ କଲା ଯେ, ଏହି ରାସ୍ତା ସବୁ କାଳସର୍ପ ହୋଇ ତାକୁ ମାରିଦେବ । ଲେମ୍ବଲେମିର ମଜଭୁତ କାଠ ପୋଲଟାକୁ ସେ ମୁହୂର୍ତ୍ତକରେ ଯଦି ଭାଙ୍ଗି ଜଳାଇ ଦିଅନ୍ତା ! ବେଟେଚୁକର ବାଉଁଶ ପୋଲ ଭାଙ୍ଗି କାଠପୋଲ ଉପରେ ଆଜି ଗାଡ଼ି ଚାଲୁଛି । ଏହାର ଅର୍ଥ ସବୁ ପୋଲ କାଠପୋଲ ହେବ । ତା' ହେଲେ ସୋନାଇପାର ଯାଏ ସିଧା ଗାଡ଼ି ଚାଲିବ । ମଟର କଥା ମନକୁ ଆସିବାମାତ୍ରେ ତା ଛାତି ଥରି ଉଠୁଥାଏ । ମୋଟର ଚାଲିବା ସକାଶେ ହିଁ ତାକୁ ଫୁଲଗୁଡ଼ି ହାଟରୁ ଚିର ବିଦାୟ ନେବାକୁ ପଡ଼ିଲା ।

ସେହିଦିନ ଠାରୁ ଶ୍ରୀରାମ ଦଲାଂଗଘାଟ ଆଉ ଜାଙ୍କୋସି ହାଟକୁ ଗଲା; ଆଉ ବେପାର କୌଣସିମତେ ଚଳେଇଲା କିନ୍ତୁ ମନଟା ଦିଟିଗଲା । ସିଦ୍ଧ ସିଦ୍ଧ ଦିନ କଟାଇବାକୁ ଲାଗିଲା । ଛୋଟ ଛୋଟ କଥାରେ ସେ ମଧ୍ୟ ରାଗି ଉଠେ । ତରୁଲତା ବହୁତ ଥର ଚେଷ୍ଟାକରି ମଧ୍ୟ ବାସନ୍ତୀ କଥା ଉଠେଇବାକୁ ସାହସ କଲାନି ।

ବୋଉ ଆଉ ବାସନ୍ତୀ ଦିନେ କହିଗୁଡ଼ାରୁ ଆସି ପହଞ୍ଚିଗଲେ । ଶ୍ରୀରାମ ମାମୁଁଘର କଥା କାହାକୁ କିଛି ପଚାରିଲା ନାହିଁ । ତା'ର ତ କେବଳ ଗୋଟିଏ ଚିନ୍ତା—ତା'ର ବେଶି ମୂଳଧନ ଦରକାର । ତା ନହେଲେ ବେପାର କରି କିଛି ଲାଭ

ନାହିଁ । କିନ୍ତୁ ମୂଳଧନ ଯୋଗାଡ଼ ହେବ ବା କେମିତି ? ଆଜିକୁ ତିନିମାସ ହୋଇଗଲା, ସେ ଲାଭ ଟଙ୍କାରେ ଘର ଚଳାଉଛି । ବେପାରରେ ଖଟେଇବା ଟଙ୍କା ଦିନକୁ ଦିନ କମିବାରେ ଲାଗିଛି ।

## ସାତ

ବରଷା ଆସିଲା । କ୍ଷଣେ କ୍ଷଣେ ଆକାଶ ନୂଆ ନୂଆ ରୂପ ଦେଖାଇଲା । ନଦ ନଦୀ ଯୌବନ ପାଇଲେ । ସୋନାଇ ପାଣିରେ ଉଚ୍ଛୁଳି ଉଠିଲା । ଶସ୍ୟର ଶ୍ୟାମଳିମାରେ କ୍ଷେତ ପୂରି ଉଠିଲା । ମରାଳ, ବଣହଂସ ଆଉ କାମ ଚଢ଼େଇର ଡାକରେ ନୀରବ ବିଲ ମୁଖରିତ ହୋଇଉଠିଲା । ବସା ବାନ୍ଧି ବିଭିନ୍ନ ବଣୁଆ ଚଢ଼େଇ ଉଡ଼ିବୁଲି ଆକାଶ ଆଉ ମାଟି ସହିତ ବନ୍ଧୁତା ସ୍ଥାପନ କଲେ । ପାଉଶିଲା, ଜଳମଇ ଆଉ ମିରପୁର ଗାଁର ଜଙ୍ଗଲ ସୁଶୋଭିତ କରୁଥିବା ମୟୂର, ବର୍ଷାର ଆଗମନରେ ନୃତ୍ୟ କରିବାକୁ ଆରମ୍ଭ କଲେ । ଡାହୁକ ଆଉ ମାଛରଙ୍କାଙ୍କ ଡାକରୁ ଜାଣିହେଲା ଯେ, ସୋନାଲି ଓ ରୁପାଲି ମାଛରେ ନଈ ଭରିଛି । ଶାରଦ ଧାନ କ୍ଷେତରେ କାମ ଚଢ଼େଇ ଯେପରି ଡଙ୍ଗା ପରି ଭାସି ଯାଉଥାଏ ।

ଗଛରେ କଢ଼ ଧରିଲା । ଧାନ କ୍ଷେତରେ ସବୁଜିମା ଛାଇଗଲା । ନାଳ, ପୋଖରୀ ପାଣିରେ ଉଚ୍ଛୁଳି ଉଠିଲା । ବେଙ୍ଗ ଝିଣ୍ଟିକାର ପ୍ରାଣଖୋଲା ଡାକରେ ଯେପରି ସୋନାଇର କ୍ଳାନ୍ତିହୀନ ସ୍ରୋତର ଗତି ଆହୁରି ବଢ଼ିଗଲା । ପ୍ରକୃତିର ନୂତନ ରୂପରେ ସୋନାଇପଡ଼ିଆ ଗାଁ ଯେପରି ମାତି ଉଠିଲା । ବର୍ଷାର ଉଦ୍‌ଭ୍ରାନ୍ତ ଅସଂଯତ ପ୍ରାଣମୟ ବୈଷମ୍ୟ ସହିତ ଖାପ ଖୁଆଇ ଚଳିବାକୁ ମଣିଷ ସାହସ ପାଇଲା । ଏହା ସହିତ ମାଛ ମାରିବା ଜଣା, ସୋନାଇ ବକ୍ଷରେ କୌଶଳରେ ଡଙ୍ଗା ଚଳାଇ ବଞ୍ଚି ରହିବା ଜଣା ମିଶିଗଲା । ସେହି ସମୟ ହେଲା ଝୋଟ କାଟିବା, ଝୋଟ କାଟିବାର ସମୟ, ଏହି ଝୋଟ ବିକ୍ରୀକରି ସାରା ବର୍ଷ ଲାଗି ପଇସା ଜମେଇବାର ସମୟ ।

ଝୋଟ କ୍ଷେତର ଗନ୍ଧରୁ କୃଷୀ ପ୍ରଥମରୁ ଟଙ୍କା କଥା କଳ୍ପନା କରେ । ଘରେ ଘରେ ବାଉଁଶ ବାଡ଼ରେ କାଉଁରିଆ ଜମେଇ କୃଷୀ ଶରତ ପୂର୍ଣ୍ଣିମାର ସ୍ୱପ୍ନ ଦେଖେ । ସୋନାଇପଡ଼ିଆର କର୍ମମୁଖର ଜୀବନ, ଛନ୍ଦରେ ଯେମିତି ଗୋଟିଏ ବନଗୀତ ମିଶିଗଲା ।

ଯେତେବେଳେ ଶ୍ରାବଣର ଝିକମିକ ବିଜୁଳିରେ ଅଶାନ୍ତ ଆକାଶର ବାରିଧାରା ନଦ ନଦୀରେ ପାଣି ଭରିଦେଲା, ସେତେବେଳେ ଉପନଦୀରେ ମଧ୍ୟ ପାଣି ଆସିଲା, ଆଉ ତା ସହିତ ଲୋକଙ୍କ ଉତ୍ସାହ ମଧ୍ୟ ବଢ଼ିଲା । କିନ୍ତୁ ଖେଗରାମର ମନ ଯେମିତି ଥିଲା ସେମିତି ରହିଲା । କାରଣ ନଈପାଣି ଖୋଟ ଦରକୁ ଯେତେବେଳେ ଡେଙ୍ଗେଇଲା ସେତେବେଳେ ବି ତା'ର ବେପାର ବଢ଼ିଲା ନାହିଁ । ତାକୁ ଡଙ୍ଗା ନେଇ ହିନକୁ ହୁଇତିନଥର ପାରି ହେବାକୁ ହୁଏ । ଘରେ ଘରେ ଖୋଟପାଇଁ ବୁଲି ହାଡ଼କୁ ମାଟି କରି ରକ୍ତକୁ ପାଣି କଲା । କିନ୍ତୁ ସପ୍ତାହ କି ଦଶଦିନ ଭିତରେ, ଲାଭ କରିବା ତ ଦୂରର କଥା, ସେ ଗୋଟାଏ ଧଉଡ଼ି ଲାଗି ଝୋଟବି ପାଇଲା ନାହିଁ । ଲୋକେ ସିଆଣା ହୋଇଗଲେଣି, ଦର ଦାମ ଖବର ସମସ୍ତ ରଖନ୍ତି । ଆଗେ ଓଜନରେ ଏପାଖ ସେପାଖ କରି ସେ ବେଶି ଲାଭ କରୁଥିଲା, ଆଜି ତାହା ମଧ୍ୟ ସମ୍ଭବ ନୁହେଁ । ଲୋକେ ଏ ସବୁ ଚାଲାକି ଜାଣି ଗଲେଣି, କିନ୍ତୁ ଗୋଟିଏ ବର୍ଷ ଭିତରେ ମଣିଷ ଏତେ ଚାଲାକ ହେଲେ କିପରି ? ତା ଛଡ଼ା ବେପାରି ସାକିରାମ ମଧ୍ୟ କହୁଥିଲା ଯେ ଝୋଟ କଟା ଆଗରୁ ସୋନାଇପରିଆ ଗାଁକୁ କେତୋଟି ମାରୁଆଡ଼ି ଆସିଥିଲେ । ସେମାନେ ଚାଷୀଙ୍କୁ କହିଦେଇ ଯାଇଥିଲେ କି ଝୋଟ ପଦୁ କଣ୍ଟାରେ ଓଜନ କରି ବିକ୍ରୀ କରିବାକୁ ହେବ । ଆଗରୁ ଚାଲୁଥିବା କଣ୍ଟାର ଓଜନ ମାପ ଠିକ୍ ନୁହେଁ । ପଥର ବନ୍ଧା ପକ୍‌କା ରାସ୍ତା, ସୋନାଇର ଦକ୍ଷିଣ ହିଗ ପର୍ଯ୍ୟନ୍ତ ଆସିଥିଲା । ସେଥିପାଇଁ ସହରର ସବୁ ବେପାରୀଙ୍କର ଯିବା ଆସିବାରେ ସୁବିଧା ହେଲା । ସେହି ରାସ୍ତା ଛୋଟ ବେପାରୀଙ୍କର କାଳ ହେଲା ।

ଲେମଲେମୀର ଆଉ ହାତୀପୁର ଓ ଜାଂଜଗିର ମଝି ପୋଲ ଚୈତ୍ର ବୈଶାଖରେ ତିଆରି ହେଲା । ଶ୍ରାବଣରେ ଇଞ୍ଜିନିୟର ପରୀକ୍ଷା କରି କେତେ ଓଜନର ଯାନବାହନ ଯାଇପାରିବ ତାହା ଠିକ୍ କରିଦେଲେ । ପୋଲ ଆଗରେ ସାଇନ୍‌ବୋର୍ଡ଼ ମଧ୍ୟ ଲଗାଗଲା । "ମାକ୍‌ସିମମ୍ ଟନେଜ୍" ଲେଖା ହେଲା । ବେହିଳଗ୍ରାମରୁ ଦଲଙ୍ଗ ଘାଟ ଯାଏ ତିଆରି ନୂଆ ରାସ୍ତାରେ ଟ୍ରକ ଆଉ ବସ୍‌ର ଯିବା ଆସିବାର ଅନୁମତି ସରକାର ଦେଇଦେଲେ, ତା'ର ଫଳ ସ୍ୱରୂପ ଖେଗରାମକୁ ଆହୁରି ବିପଦର ସମ୍ମୁଖୀନ ହେବାକୁ ପଡ଼ିଲା । ଦଲଙ୍ଗ ଘାଟ ସୋନାଇର ହିଁ ଗୋଟିଏ ଘାଟ । ଖେଗରାମର ଗାଁ ମିରପୁରରୁ ପଶ୍ଚିମକୁ ପ୍ରାୟ ଏକ ମାଇଲ ହେବ । ସୋନାଇରେ ଡଙ୍ଗାରେ ଆସିଲେ ଦୂରତ୍ୱ କମ୍ ହେବ । ଶୀତଦିନରେ ପ୍ରତିବର୍ଷ ଏହି ଘାଟରେ ଗୋଟାଏ ବାଉଁଶ ପୋଲ ତିଆରି କରାହୁଏ । ସେଥିପାଇଁ ସେହି ଘାଟର ନାଁ ହେଲା ଦଲଙ୍ଗ ଘାଟ । ଅର୍ଥାତ ପୋଲ ଘାଟ । ଏହି ନାଁ ଯେ କେତେ ଦିନର ତାହା ସୋନାଇ-

ପରିଆ ଲୋକେ କହିପାରିବେ ନାହିଁ । ଦଲଙ୍ଗ ଘାଟର ଦକ୍ଷିଣରେ 'ମଙ୍ଗଳପୁର ବାରିକୁ ଲାଗି ଗୋଚ୍ଚରଣ ଭୂମି । ସେହି ଘାଟ ପାଖରେ ଦଲଂଗ ଘାଟର ବଜାର ବସେ । ଏହି ବଜାର ଉତ୍ତର ଓ ଦକ୍ଷିଣ କୂଳର ଲୋକଙ୍କର ସଂଯୋଗ ସ୍ଥଳ । ଖେଜୁରିଗ୍ରାମର ସିଲିଭ ଲୁଗାର ବେପାର ଏହିଠାରେହିଁ ଭଲ ଚଳେ । ବର୍ଷାଦିନରେ ସୋନାଇପାଟିର ଦୂର ଗାଁର ଲୋକେ ଡଙ୍ଗାରେ ଏକାଠି ଖୋଟ ବେପାର କରନ୍ତି । ଖେଜୁରିଗ୍ରାମ ଏହିଠାରୁ କମ୍ ଦାମରେ ଖୋଟକିଣି ସହରରେ ବିକି କରି ଲାଭ କରେ । କିନ୍ତୁ ଏଥର ବର୍ଷା କାଳରେ ତା'ର କପାଳ ମନ୍ଦ । ଦଲଙ୍ଗ ଘାଟ ବଜାରକୁ ବହୁତ ଖୋଟ ଆସିଛି । କିନ୍ତୁ ଦର ଖୁବ୍ ଚଢ଼ି ଯାଇଛି । ଏତେ ଦାମ୍‌ରେ କିଣିଲେ ଲାଭ ବେଶି ମିଳିବ ନାହିଁ ।

ପଥର ଗେଙ୍ଗୁଟି ବିଛା ରାସ୍ତାରେ ସୋନାଇରେ ପହଞ୍ଚିଲା ପରେ ଏକ ରବିବାର ଦିନ ସେ ଏମିତି ସଙ୍କଟ ଆଉ ହତାଶର ସମ୍ମୁଖୀନ ହେଲା ଯେ ଆପଣାର ଅସ୍ତିତ୍ୱ ଅନୁଭବ କରିବାର ଶକ୍ତି ହରାଇ ବସିଲା । ସେ ହାଟ ଦିନ ଖାଲି ବଳଦ ଗାଡ଼ି ପଛରେ ପଥର ରାସ୍ତାରେ ସାଇକେଲ ଧରି ଧରି ଚାଲୁଥିଲା । ତାର ଉଦ୍ଦେଶ୍ୟ ଥିଲା ଦଲଙ୍ଗ ଘାଟ ବଜାରରୁ ଖୋଟ କିଣିବା । କିନ୍ତୁ ରାସ୍ତାର ବଡ଼ ବଡ଼ ଟ୍ରକ୍ ଧୂଳିରେ ତାର ବଳଦଗାଡ଼ି ଲୀନ ହୋଇଗଲା । ବଜାରରେ ପହଞ୍ଚି ସେ ଦେଖିଲା ସୋନାଇର ଖୋଟ କାରବାର କରିବାବାଲା ଧନୀ ମାରୁଆଡ଼ି ମହାଜନ ବଜାରକୁ ଆସିଛି । ବଡ଼ବଡ଼ ଗାଡ଼ିରୁ କଣ୍ଟାରେ ଅଭିରାମ ଖୋଟ ଓଜନ କରୁଛି । କିଛି ସମୟ ପରେ ପଙ୍କଜ ପରି ବୋଝେଇ ଟ୍ରକରେ ଖୋଟ ଆଣି ଜମା କରିଦେଲେ, ସେ କେଉଁଠି ସୁଦ୍ଧା ମହଣେ ଖୋଟ କିଣି ପାରିଲା ନାହିଁ । ମନଦୁଃଖରେ ଆଉ ନିଜର କ୍ଷୁଦ୍ର ଶକ୍ତିର ପରିଚୟ ପାଇ ସେଦିନ କଣ୍ଟା ଲୁଚାଇ ଦେଲା । ବର୍ତ୍ତମାନ ଗ୍ରେଟ ବେପାରୀ ଖୋଟ ବେପାର କରିପାରୁନାହାନ୍ତି । ଯେଉଁ ଯେଉଁ ମହାଜନଙ୍କୁ ଖୋଟ ବିକ୍ରୀ କରି ସେ ଲାଭ କରୁଥିଲା, ବର୍ତ୍ତମାନ ସେହି ମହାଜନମାନେ ନିଜେ ବେପାରରେ ଖୋଦ୍ ଚାଷୀଙ୍କଠାରୁ ଖୋଟ କିଣୁଛନ୍ତି । ଚିର ପରିଚିତ ଦଲଙ୍ଗ ଘାଟ ହାଟରେ ଜଣା ଶୁଣା ଖରିଦଦାର ଆଉ ବିକିଦାରଙ୍କ ଆଗରେ ସେ ଆପଣା ମୁହଁ ଦେଖାଇବାକୁ ଲଜ୍ଜା କଲା । ଦଶଟା ବାଜିବା ଆଗରୁ ସେ ବଜାରରୁ ଫେରି ଆସିଲା । ଘରକୁ ଆସି ସେ ଘର ପଛରେ ଠୁନୁକା ଘାଟରେ ବହୁତ ସମୟ ଏକା ବସିଲା । ଏକାକିଆ ସେ ସୋନାଇ ଆଗରେ କାନ୍ଦି ପକାଇଲା । ତା ଜୀବନରେ ଆଜି ସବୁଠାରୁ ବଡ଼ ପରାଜୟ । ଏହି ପରାଜୟ ତାକୁ ଦିନେ ନା ଦିନେ ଶେଷ କରି-

ଦେବ । ଦାରିଦ୍ର୍ୟ ତା ଜୀବନର ସବୁ ଆଶା-ଭରସା ଆଉ ସୁଖ-ସମ୍ପଦ ଛଡ଼େଇ ନେବ । ଆଉ ଦାରିଦ୍ର୍ୟ ଯେ ଅବସ୍ଥା ତାକୁ ସେ ଅନ୍ତରରେ ଘୃଣା କରେ ।

ଦି'ଦିନ ସେ ଘରେ ରହିଲା । ଘରେ ତା ସଙ୍ଗରେ କେହି କଥାବାର୍ତ୍ତା କଲେ ନାହିଁ ଏବଂ ତା କପାଳର ଗୀରଦେଖି କେହି ତା' ସହିତ କଥା କହିବାକୁ ସାହସ କଲେନାହିଁ । ଏହି ନୂତନ ସଙ୍କଟରେ, ଉଦ୍ଧାର ପାଇବା ପାଇଁ, ନୂଆ ରାସ୍ତା ସେ ପାଇଲା ନାହିଁ । ସୋନାଇପଲିଆର ପ୍ରକୃତି ଆଉ ମାଧୁର୍ଯ୍ୟ ହିଁ ତାକୁ ଯେପରି ଉତ୍ସାହ ଦେଉଥାଏ । ସେ ଭାବୁଥିଲା, ସମସ୍ତ ପ୍ରତିଶୋଧ ନେଉଛି । ସ୍ନେହର ସୋନାଇ ଆଙ୍କଠାରୁ ଯେମିତି ତାର ଶତ୍ରୁ ହୋଇଛି ।

ତଥାପି ସେ ତା'ର ପରାଜୟର ଗ୍ଲାନିକୁ ସହ୍ୟ କରିବାକୁ ପ୍ରସ୍ତୁତ ହେଲାନି । କଣ୍ଢା ନେଇ ସେ ସୋନାଇପାରର ସବୁ ଗାଁ ବୁଲିଲା, କିନ୍ତୁ ଗୁର ପାଞ୍ଚଦିନ ବୁଲିଲାପରେ ବି ସେ ଗାଡ଼ିଏ ଝୋଟ ଯୋଗାଡ଼ କରି ପାରିଲାନି । ଏହା ଭିତରେ ବିକ୍ରେତାର ମନ ବଦଳି ଯାଇଛି । ପ୍ରତ୍ୟେକ ଲୋକ ଦଲଙ୍ଗ ଘାଟ ବଜାରରେ ବେଶି ପଇସାର ବେପାର କରି ମାଲିକ ହେବାର ସ୍ୱପ୍ନ ଦେଖୁଛନ୍ତି । ଏହି ବଜାରକୁ ନେଲେହିଁ ସହରର ଦାମ୍ ମିଳେ—ତା' ହେଲେ ଏପାଖ ସେପାଖ ହୋଇ ସ୍ଥାନୀୟ ବେପାରୀଙ୍କୁ ଝୋଟ ବିକ୍ରୀ କରିବାରେ ଲାଭ କଣ ? ତା'ଛଡ଼ା ଦଲଙ୍ଗ ଘାଟରୁ ମାରୱାଡ଼ି ମହାଜନ ସହରରୁ ଆସୁଛନ୍ତି । ସେମାନେ କହନ୍ତି ଯେ—ଝୋଟ ବଜାରର ଭାଉ ଉଠିବା ପଡ଼ିବାର ହର୍ତ୍ତା କର୍ତ୍ତା ବିଧାତା ହେଲେ ସେମାନେ । ସେମାନଙ୍କର କିଣାଝୋଟ ସିଧା କଲିକତା ମିଲ୍‌କୁ ପଠାହୁଏ ।

ଭାଦ୍ର ଶେଷ ନ ହେଉଣୁ ଭୋଗରାମ ଭାଙ୍ଗି ପଡ଼ିଲା । ବେପାରର ଅସଲ ସମୟରେ ହିଁ ତା'ର ଚରମ ବିପର୍ଯ୍ୟୟ ଘଟିଲା । ଚାରିମାସ ମଧ୍ୟରେ ତାକୁ ଫୁଲଗୁଡ଼ା ହାଟରେ କପଡ଼ା ବିକ୍ରୀ ବନ୍ଦ କରିବାକୁ ପଡ଼ିଲା । ସୋନାଇପଲିଆ ଗାଁରୁ ଝୋଟ କିଣିବା ରାସ୍ତା ବନ୍ଦ । ଦଲଙ୍ଗ ଘାଟ ବଜାରରେ ଝୋଟ ବିକାଳୀଙ୍କୁ ଝୋଟ ଦାମ ପଚାରିବାକୁ ସେ ଡରିଲା । ଶେଷରେ ଭାବିଲା ଯେ ତା ପାଖରେ ଅନ୍ୟ ଉପାୟ କିଛି ନାହିଁ । ଜାଜୋର ଆଉ ଦଲଙ୍ଗ ଘାଟ ହାଟରେ ଲୁଗା ବିକି ତାକୁ ଅନ୍ନ ସଂସ୍ଥାନ କରିବାକୁ ହେବ । କାରଣ ଏ ଯାଏ ସୋନାଇ ପାର ଯାଏ ସର୍ଭିସ୍ ବସ୍ ଚାଲିନି ଏବଂ ସେଇ କାରଣରୁ ସହରରୁ ଡାକରି ଧରିର ବେପାରୀମାନେ ହାଟକୁ ଆସି ନାହାନ୍ତି ।

# ଆଠ

ଭଲମନ୍ଦ ଆଉ ଶ୍ରେଷ୍ଠ ବଡ଼ ଘଟଣା ପଛରେ ପକାଇ ସମସ୍ତ ଗଡ଼ି ଚାଲିଲା । ଏଇ କେଇମାସ ଧରି ବାସନ୍ତୀର ବ୍ୟବହାରରେ ତରୁଲତା ଓ ସୁଜାତା ଖୁସି । ଆଜିକାଲି ବାସନ୍ତୀ ଘର ଭିତରେ ରହେ । ଠାକୁଆ ଘାଟକୁ ଗଲେ ବି ବେଶି ସମୟ ରୁହେନା । ବୋଉକୁ । ପ୍ରତିଦିନ ପୋଥି ପଢ଼ି ଶୁଣାଏ । ମନର ସବୁ ଆଶା ଆକାଂକ୍ଷାର ଲମ୍ବା ସୂତା ଯେପରି ତନ୍ତ୍ରରେ ଅଟକି ଯାଇଛି । ସେଥିପାଇଁ ବେଶି ମନୋଯୋଗରେ ତନ୍ତ ବୁଣେ । ପୀରସ୍ତର ପରି ଗାଉଁଲି-ଝିଅକୁ ଅସୀମ ଧୈର୍ଯ୍ୟଦିଏ । ବର୍ତ୍ତମାନ ତାର ଯୁବତୀ ମନ ଧନଞ୍ଜୟ ଲାଗି ଚଞ୍ଚଳ ହୁଏନା । ତା' ସହିତ ବିଭାଘର ନ ହେବା ମାନେ ତା କଥା ଭାବିବାର କୌଣସି ଅଧିକାର ତାର ନାହିଁ ।

ସୋନାଇ ପତ୍ତିଆଙ୍କର ଧାରଣାରେ ଏହାପାପ । ହୋମ ଅଗ୍ନିକୁ ସାକ୍ଷୀକରି ମନ୍ତ୍ର ଉଚ୍ଚାରଣ ପରେ ସୋନାଇପତ୍ତିଆ ନବ ଯୁବତୀ । ମନରେ କାମନା ବାସନାକୁ ଆଶ୍ରୟ ଦେଇପାରେ, ଦେହର ଚଞ୍ଚଳତାକୁ ସେତେବେଳେହିଁ ଧନ୍ୟ ନିକଟରେ ସମର୍ପଣ କରି ପାରେ । ଏହା ହିଁ ସୋନାଇପତ୍ତିଆର ନୈତିକ ପରମ୍ପରା । ବାସନ୍ତୀ ତା'ର ଯୁବତୀ ମନକୁ ସଂଯତ କରି ଭବିଷ୍ୟତର ରଙ୍ଗୀନ ସ୍ୱପ୍ନ ଦେଖୁଛି । ଆଜିକାଲି ଠାକୁଆ ଘାଟର ସେପାଖ ଏପାଖରେ ଧନଞ୍ଜୟଙ୍କର ଦେଖା ମିଳୁନି । ଶୁଣାଯାଏ ଯେ, ମିରପୁର ଦେଇ ସେ ସହରକୁ ଯାଇଛି ।

ବୋଉ ନେଇ ସେ ଖୁବ୍ ଅଶାନ୍ତ ପାଉଛି । ଆଖି କଟାପରେ ଚଷମା ପିନ୍ଧି କିଛି ଦିନ ସେ ଦେଖି ପାରୁଥିଲା । କିନ୍ତୁ ପୁଣି ଦେଖିବାକୁ କଷ୍ଟ ହେଉଛି । ଚଷମା କୌଣସି କାମ ଦେଉନାହିଁ । ହାତରେ ଉଣ୍ଡାଳି ଉଣ୍ଡାଳି ବୋଉର ଚାଲିବାଟାରେ ତାର ଆଦୌ ସହ୍ୟ ହେଉନାହିଁ । କିନ୍ତୁ ସେ ସମୟରେ ଚିକିତ୍ସା କରିବାର କୌଣସି ଉପାୟ ନ ଥିଲା । ଘରର ଅବସ୍ଥା ଦିନକୁ ଦିନ ଖରାପ ହେବାକୁ ଲାଗିଛି । ତଥାପି ଦିନେ ସେ ଭାଇକୁ କହିଲା । କହୁଗୁରୁ ଶୁଣି ଆସିଛି ଦୁଇଫାଳି କାଚଥିବା ଚଷମା ବାହାରିଛି । ଏହି ଚଷମାର ଉପର କାଚରେ ଦୂର ଜିନିଷ ଦେଖାଯାଏ, ଆଉ ତଳ କାଚରେ ପାଖର ସବୁ ଦେଖାଯାଏ । ଏହି ଚଷମା ଦାମ ଦଶଟଙ୍କା ।

ସେହିଦିନ ଭାଇ ଦଲଙ୍ଗ ଘାଟ ବଜାରରୁ ପରାଜୟର ବୋଝନେଇ ଘରକୁ ଫେରିଥିଲା । ବଜାରରେ ସେ କଟା କପଡ଼ା ବିକ୍ରୀ କରି ପାରିନି । ଫୁଲଗୁରି ପରି ମଧ

ଏ ବଜାରର ଅବସ୍ଥା । ତିନିଦିନ ଆଗରୁ ମାନେ ଅଗଷ୍ଟ ପନ୍ଦର ତାରିଖରୁ 'ନ' ଗାଁରୁ' ଦଲଙ୍ଗ ଘାଟଯାଏ ଦୁଇଟି ସର୍ଭିସ ବସ୍ ଚାଲିଲଣି । ଦଲଙ୍ଗ ଘାଟର ରବିବାର ହାଟରେ ତାକଇପଟିର ବେପାରୀ ଭର୍ତ୍ତି । ମଙ୍ଗଳବାର ଜାଜୋରି ହାଟ ଅବସ୍ଥା ମଧ୍ୟ ସେଇଆ ହେବ । ଏହି ମାସ ଭିତରେ ବେପାର ଗୁଡ଼ିବ ବୋଲି ସେ ଭାବି ନେଇଛି । ତା ଫଳରେ ତାକୁ ମୂଳଧନରେ ଘର ଚଳେଇବାକୁ ହେବ । ସେ ଟଙ୍କା ଶେଷ ହେଲେ ତା'ର ଆଦରର ସାଇକଲଟା ମଧ୍ୟ ବିକ୍ରୀ କରିବାକୁ ହେବ । ତା' ପରେ ହୁଏତ ଫୁଖନବଲର ତିନିଗୁଣ୍ଠ ଜମି ତାକୁ ମୋଲଇ ମୋହରିକୁ ବିକ୍ରୀ କରିବାକୁ ପଡ଼ିବ । ପଚିଶଟା ଧାର ଟଙ୍କା ମୋଲଇ ମାଗିଥିଲା ବୋଲି ସେ ଅପମାନ ପାଇଥିଲା । କିନ୍ତୁ ମୋଲଇ କଥା ଠିକ୍ ହେଲା । ଏମିତି ଦିନ ଆସିଲା ଯେ ଧନଞ୍ଜୟ ମୋଲଇକୁ ନିଜର ପୈତୃକ ସମ୍ପତ୍ତି ବିକ୍ରୀ କରିବାକୁ ହେବ !!

ମନର ଏହି ଅବସ୍ଥାରେ ବାସନ୍ତୀ ବୋଉର ଚଷମା କଥା କହିଲାରୁ ତା ଦେହରେ ଯେପରି ନିଆଁ ଜଳିଗଲା । ସେ ଟାଣିଥିବା ବିଡ଼ିକୁ ବିତୃଷ୍ଣାରେ ପକେଇଦେଇ କଡ଼ା ଗଳାରେ ବାସନ୍ତୀକୁ କହିଲା—"ତୁମେ ସବୁ ମାଇପେ ଏକାଠି ମିଳି ମୋ ମୁଣ୍ଡକୁ ଖାଇଯିବ । ମାରୁଆଡ଼ିର ଗାଡ଼ିଆଳ ନ ହେଲାଯାଏ ତୁମେ ସବୁ ମୋତେ ଛାଡ଼ିବ ନାହିଁ । ଏ ମୋର ପୂରା ବିଶ୍ୱାସ । ତୋ ବୋଉର ଚଷମା ଦରକାର; ତୋର ଚଷମା ଦରକାର ନାହିଁ ? ଝିଅଙ୍କର ସବୁଜ ବର୍ତ୍ତମାନ ଚଷମା ଦେଇ ରାସ୍ତାରେ ବୁଲିବା ସମୟ ହେଲାଣି ।"

ସେ ଭାବିଥିଲା ଯେ ଭାଇ ତାକୁ ଖୁବ୍ ସ୍ନେହ କରେ । ଆଜିଯାଏ ଏମିତି କଥା ସେ କେବେ କହିନି । କିନ୍ତୁ ବର୍ତ୍ତମାନ ଭୋଗଗ୍ରାମର ଏମିତି କଡ଼ା କଥା ଶୁଣି ସେ ସ୍ତମ୍ଭିତ ହୋଇ ପଡ଼ିଲା । ସେଠୁ ସେ ଚାଲିଗଲା । ଶୋଇବା ଘର ଭିତରକୁ ପଶିଗଲା । ରାତିରେ ଭାଉଜ ଓ ବୋଉ ଯେତେ ନେହୁରା କଲେବି ସେ ଖାଇଲାନାହିଁ । ସାରାରାତି କାନ୍ଦିଲା । ଲୁହରେ ତକିଆ ଭିଜିଗଲା । ସୋନାଇପଣିଆ ମୁଣ୍ଡର ସହିଷ୍ଣୁତା ହାରିଗଲା । ଭାଇକୁ ଶତ୍ରୁ ଭାବିଲା । ଘର ଜେଲ୍ ପରି ଲାଗିଲା । ବୋଉ ଆଉ ଭାଉଜଙ୍କ କଥା ମଧ୍ୟ ତାକୁ କପଟତାପୂର୍ଣ୍ଣ ବୋଲି ମନେ ହେଲା । ତା'ର ସଜଳ ଆଖିରେ ଧନଞ୍ଜୟ ଦେବତା ପରି ଦେଖା ଦେଲା । ସୋନାଇ ପଣିଆର ପାରମ୍ପରିକ ବନ୍ଧ ଭାଙ୍ଗିଗଲା । ସେ ଯେପରି ଅମାବାସ୍ୟା ରାତିରେ ଉଲ୍କାପାତ ଦେଖିଲା । ଜୀବନରେ ପ୍ରଥମ ପୁରୁଷର ଚିନ୍ତା ଆଉ ପ୍ରେମର ସଞ୍ଜୀବନୀ ସ୍ପର୍ଶ ତାର ମନର ସବୁ ହୀନତା ଦୂର କରିଦେଲା । ପରଦିନ ସେ ପୁଣି ଆଗର ବାସନ୍ତୀ ହୋଇଗଲା । ତାର ପୂର୍ଣ୍ଣ ଯୌବନ ସହିତ ମନ ମଧ୍ୟ ମିତ୍ରତା କଲା । ମଧୁର ଅତୃପ୍ତି ଆଉ ଆଶାର ଭରାନଦୀରେ ସେ ମନର ପୂର୍ଣ୍ଣତା

ଖାଇଲା । ସେଥିପାଇଁ ଠାକୁଆଘାଟ ପାଖରେ ଆମ୍ବ, ଯାମୁ, କଦମ୍ବ ଓ କଦଳୀ ଗଛର ଛାଇରେ ବସିବାକୁ ଭଲ ପାଇଲା । ସୋନାଇର ଶରତକାଳର ସ୍ଫଟିକ ଜଳରେ ନୂତନ ସଂସାରର ପ୍ରତିବିମ୍ବ ଦେଖିଲା । ସୋନାଇରେ ଛପ୍ ଛପ୍ କାତମାରି ଯାଉଥିବା ନୌକାର ନାଉରିଆର ଗୀତରେ ସେ ଶୁଣିଲା ଦୂର ସୁଦୂରର ବାଣୀ । ସୋନାଇ କୂଳରେ ବାସନ୍ତୀ ଅନେକ ଡେରଯାଏଁ ବସି ବି କ୍ଲାନ୍ତ ହେଲା ନାହିଁ ।

ମେଲାକୁ ଆଗପରି ସଜାଇଲା ବାସନ୍ତୀ । ଶୋଇବା ଘର ଛାତରୁ ପାଣି ଗଳିଲାଣି । ଘୁଣ ମଧ୍ୟ ଅନେକ ଜାଗାରେ କଣା ହୋଇଗଲାଣି । ଗ୍ରେଷେଇଘର କାନ୍ଥ ମଧ୍ୟ ପଡ଼ିଗଲାଣି । ଘରେ ଶିଆଳ ପଶିବାର ବାଟ ଖୋଲି ଯାଇଛି । ଅମାର ହଣ୍ଡିରପଟ କାନ୍ଥ ନଇଁ ଗଲାଣି । ଘରର ପ୍ରତି କୋଣ ଛଡ଼ା ଘରର ମଣିଷଙ୍କ ଦେହେରି ଓ ପୋଷାକରୁ ଅଭାବର ଚିହ୍ନ ମଧ୍ୟ ମିଳିଲାଣି । ଏହି ଅବସ୍ଥାରେ ମେଲା ଘରକୁ ସଜେଇଲେ କାଉ ଦେହରେ ମୟୂର ଚନ୍ଦ୍ରିକା ଲଗେଇଲା ପରି ହେବ । ତଥାପି ବାସନ୍ତୀ କିଛି ଅମେଳ ଅନୁଭବ କଲାନାହିଁ । କିଏ ଜାଣେ କେଉଁ ଦିନ ଯିଏ ଆସିଯାଏ ? ସେ ବାହାର ଘରର ଅବସ୍ଥା ଦେଖି ନିଶ୍ଚୟ ତା ମନର ଅବସ୍ଥା ମଧ୍ୟ ବୁଝି ପାରିବ । ଶୁଖିଲା ଗଛରେ ଯଦି କଅଁଳିଲେ ବସନ୍ତର ଯେପରି ଗୌରବ ଘୋଷଣା କରେ, ସେହିପରି ବାସନ୍ତୀର ମରମ ତୃଷ୍ଣାହିଁ ପ୍ରତ୍ୟାହତ ଦୈନ୍ୟକୁ ମଧୁର କରିଛି । ପ୍ରେମର ଅପାର୍ଥିବ ସ୍ୱରୂପ ରକ୍ତମାଂସର ରୂପନେଇ ଆପଣାର ରଙ୍ଗୀନ୍ ମାଧୁରୀ ବିତରଣ କରିବାରେ ଲାଗିଛି । ବାଦଲରେ ନିତ୍ୟ ନୂତନ ରଙ୍ଗ ଖେଳି ଖେଳି ଶରତ ଋତୁ ବିଦାୟ ନେଲା । ହେମନ୍ତର ଆଗମନରେ ସୋନାଇପଶିଆ ଜୀବନରେ ଆସିଲା ବିଶ୍ରାମ । ଗଛରେ ଫଳ କଷି ଧରିଲା । ଧାନଗଛ ଗଜା ମାରିଲା । ଖରାରେ ପୋଖରୀ, ନାଳ ଓ ନଈପାଣି ଶୁଖିବାକୁ ଆରମ୍ଭ କଲା । କେଉଟ ଜାଲ ଟାଣି ସୋନାଇରୁ ବଡ଼ ରୋହି ଓ ଚିତଳ ମାଛ ଧରିଲା । ଘରେ ଘରେ ଖୋଳ ଓ ମୃଦଙ୍ଗର ତାଳ ହେମନ୍ତର ଶାନ୍ତ ବାତାବରଣକୁ ମଧୁର କରିଦେଲା । ସୋନାଇ କୂଳରେ ବଂଶୀ, ମହୁରୀ ଆଉ ଗଗନା ବାଜାର ନାଦରେ ମନ ନାଚି ଉଠିଲା । ଫସଲ କାଟିବା ଆଗରେ ସୋନାଇ-ପଶିଆ କାଙ୍ଗାଳ କାର୍ତ୍ତିକର ଦୁଃଖ ଭୁଲିଗଲା ।

ସତରେ ଦିନେ ଧନଞ୍ଜୟ ତାଙ୍କ ଘରକୁ ଆସିଲା । ଭେଗରାମ ଆଜକାଲି କାମ ନ ଥିଲେ ଘରେ ହିଁ ରୁହେ । କିଛି ସମୟ ସେ ଭେଗରାମ ସହିତ କଥାବାର୍ତ୍ତା ହେଲା । ବାସନ୍ତୀ ଦୁଇବାର ତା ଆଗରେ ଯିବା ଆସିବା କରିଥିଲା । ଲଳିତ ତାର ସହରକୁ ଯିବାରଥିଲା । ଭେଗରାମ ଏବେ ଠିକ୍ କରିଛି ଯେ ତା ପାଖରେ ଯେତେ ଜମି ?

ସେ ନିଜେ ଚାଷ ଆରମ୍ଭ କରିବ । କିନ୍ତୁ ଚାଷ ପାଇଁ ବଳଦ ନାହିଁ । ସେଥିପାଇଁ କୃଷି ଋଣ ନେବାକୁ ସ୍ଥିର କରିଛି । ଖଣ୍ଡେ ଦରଖାସ୍ତ ମଧ୍ୟ ଦେଇଛି । ସହରରେ ଧନଞ୍ଜୟର ଚିହ୍ନା ପରିଚୟ ବହୁତ । ସେ ମଧ୍ୟ ଅଫିସରମାନଙ୍କୁ ବୁଝେଇ କଥା କହିପାରିବ । ସେଥିପାଇଁ ଧନଞ୍ଜୟର ସାହାଯ୍ୟରେ ସେ ଋଣ ଟଙ୍କା ପାଇବାକୁ ଆଶା କରିଛି । ସେଥିପାଇଁ ଭୋଗରାମର ଅନୁରୋଧ ରକ୍ଷା କରିବାକୁ ବହୁତ ଦିନପରେ ଧନଞ୍ଜୟ ତାଙ୍କ ଘରକୁ ଆସିଛି । ଏହା ଭିତରେ ବାସନ୍ତୀର ବ୍ୟବହାରରେ ସେ ଅସନ୍ତୁଷ୍ଟ ହୋଇଛି । ଛଅମାସ ପୂର୍ବେ ସେ ଯେତେବେଳେ ତାଙ୍କ ଘରକୁ ଆସିଥିଲା ସେ ତା ଆଗକୁ ଆସି ନ ଥିଲା । ତା ଛଡ଼ା ଠାକୁଆ ଘାଟରେ ଦେଖା ହେଲାରୁ ସେ ସଙ୍ଗେ ସଙ୍ଗେ ପଳେଇ ଆସିଥିଲା ।

ଧନଞ୍ଜୟକୁ ବାହାରେ ବସେଇ ଭୋଗରାମ ଭିତରେ ଖାଇ ବସିଲା । ଧନଞ୍ଜୟ ଖାଇ ଆସିଥିଲା । ସେଥିପାଇଁ ତାକିଆଏ ଚାହା ଦେବାକୁ ଭୋଗରାମ ଆଦେଶ ଦେଲା; ଚାହାନେଇ ବାସନ୍ତୀ ତା ଆଗରେ ଠିଆହେଲା । ସେ ମୁହଁ ବୁଲେଇ ନେଲା । କିଛି କହିଲା ନାହିଁ । ବାସନ୍ତୀ ଚାହା ପିଇବାକୁ କହିଲେ ସୁଦ୍ଧା ସେ କିଛି କହିଲା ନାହିଁ । ବାସନ୍ତୀକୁ ଚାହିଁଲା । ତାର ସଜଳ ନୟନ ଦେଖି ସେ ବିଚଳିତ ହୋଇ ପଡ଼ିଲା । କାନ୍ଦ କାନ୍ଦ କଣ୍ଠରେ ସେ ଡ଼ାକିଲା—

"ବାସନ୍ତୀ !

"ଧନ..." ବାସନ୍ତୀ କାନିରେ ଆଖି ପୋଛିଲା ।

"ତୁମ ଆଖି କହୁଛି ଯେ ତୁମେ ମୋତେ ଆପଣାର ଭାବ । ମୁ ଅତି ସାଧାରଣ ଲୋକ । ମୁଁ ତ ଇଆଡ଼େ ସିଆଡ଼େ ବୁଲିବା ଲୋକ । ମୋର ବାପ ନାହିଁ । ବୋଉ ନାହିଁ । କେହିନାହିଁ । ମୁ ଗୋଟାଏ ବିଦେଶୀ ।"

"ତୁମେ କେବେଠାରୁ ଏତେ କଠୋର ହେଲ ? ମୋତେ କଷ୍ଟ ଦେଇ ତୁମକୁ ଶାନ୍ତି ମିଳୁଛି ନା ? ଚାରିମାସ ହୋଇଗଲା ଥରେ ହେଲେ ଆସିଲ ନାହିଁ ?"

"ମୋତେ ସମୟ ମିଳିଲା ନାହିଁ ବାସନ୍ତୀ ! ପାଉଁଶିଲାରେ ହଇଜା ଲାଗିଛି । କୁକୁର ଶିଆଳ ପରି ମଣିଷ ମରିବାର ଦେଖି ମୁଁ ସବୁକିଛି ସାରହୀନ ବୋଲି ଭାବିଲି ; ତାଙ୍କ ପାଇଁ ଦିନ ରାତି ଖଟିଲେ ବି ଗୋଟାଏ ଚିନ୍ତା ମୋତେ ସବୁବେଳେ ବ୍ୟସ୍ତ କରୁଥିଲା । ଆଉ ତୁମେ ବି ମୋତେ..." "ଏବେ ସବୁ ବୁଝିଲି । ମୋତେ କ୍ଷମା କର ଧନ ।" "ବାସନ୍ତୀ ମୋ ଆଖିକୁ ଚାହିଁ, ତୁମେ ଗୋଟିଏ କଥା କହି ପାରିବ ?"

ମୁଁ ଅନ୍ତର କଥା କହୁଛି । ତୁମ ପାଇଁ ମୁଁ ସବୁ ଛାଡ଼ି ପାରିବ ।"

ତା' କଣ୍ଠର ଆବେଗ ଓ କଥାର ଆନ୍ତରିକତାରେ ଧନଞ୍ଜୟ ପ୍ରଭାବିତ ହେଲା ଏବଂ ତାକୁ କହିଲା "ମୁଁ ଏତେବେଳେ ତୁମ ଭାଇଙ୍କୁ କଷ୍ଟ ଦେବାକୁ ଚାହେଁନା । ତାଙ୍କର ବେପାରରେ କ୍ଷତି ହୋଇଛି । ଚାଷ କରି ଯଦି ଅବସ୍ଥା ବଦଳେ ତେବେ ପରେ ମୁଁ ତାଙ୍କ ସହିତ କଥାବାର୍ତ୍ତା ହେବି । କଣ କହୁଛ ?"

ଧନଞ୍ଜୟ ମୁହଁରୁ ଏକଥା ଶୁଣି ସେ ବିସ୍ମୟରେ ନିର୍ବାକ ହୋଇ କେବଳ ତାର ମୁହଁକୁ ଚାହିଁ ରହିଲା । ଏତିକିବେଳେ ଭିତରୁ ଭୋଗରାମର ଗଳା ଶୁଭିଲା ।

"ଡାକ୍ତରଙ୍କୁ ପାନ ଦେଇଛ ?" ସେ ଖାଇସାରିଥାଏ । ଭାଇଙ୍କ ଗଳାଶୁଣି ବାସନ୍ତୀ ଧନଞ୍ଜୟ ପାଖରୁ ଚାଲିଗଲା ଏବଂ ଭିତରକୁ ଯାଇ ଗୁଆ କାଟିବାକୁ ଲାଗିଲା ।

ଭୋଗରାମ ଓ ଧନଞ୍ଜୟଙ୍କୁ ସହର ଯିବାର ଦେଖି ବାସନ୍ତୀ ଭାବିଲା, ଶଳା ଭିଣୋଇ ହିସାବରେ ଦୁଇଜଣଙ୍କର ଯୋଡ଼ି ଠିକ୍ ହେବ । ସେ ଭଗବାନଙ୍କୁ ପ୍ରାର୍ଥନା କଲା ଯେ, ଆଜି ଭାଇକୁ ବେଶି ଟଙ୍କା ଋଣ ମିଳିଯାଉ, ଶୀଘ୍ର ସେ ଭଲ ଚାଷକରୁ । ଉଚ୍ଚ ଅମାରର ସେ ମାଲିକ ହେଉ । ମନେ ମନେ କୀର୍ତ୍ତିନଘର ଉଦ୍ଦେଶ୍ୟରେ ସେ ପ୍ରାର୍ଥନା ମଧ୍ୟ କଲା ।

## ନଅ

ସନ୍ଧ୍ୟାରେ ଭୋଗରାମ ଘରକୁ ଫେରିଲା । ଘରେ ପହଞ୍ଚିଲା ମାତ୍ରକେ ପିଲାଏ ତାକୁ ଘେରିଗଲେ । ସବୁଠାରୁ ଶ୍ରେଷ୍ଠ ଟା ଲୁଗାଧରି ଟାଣିଲା । ମାନସ ସାଇକେଲ ପେଡାଲରେ ଗୋଡ଼ ରଖିବାକୁ ଚେଷ୍ଟା କଲା । ମଝିଆ ଝିଅ କହିଲା "ବାପା ମୁଁ ଚଢ଼ିବି ।" ଏହା କହି ଜିଦ୍ କଲା । ପ୍ରତିଦିନ ସେମାନେ ଏମିତି କରନ୍ତି । ଆଜି ଭୋଗରାମ ମାନସକୁ ଏମିତି ଜୋରରେ ଚଟକଣାଟାଏ ମାରିଲା ଯେ ତାର କାନ୍ଦ ବନ୍ଦ ହୋଇଗଲା । ମାଡ଼ ଦେଖି ବାକି ସବୁପିଲା ଇଆଡ଼େ ସିଆଡ଼େ ପଳେଇଲେ । ଭୋଗରାମ ପାଟିକରି କହିଲା "ଲୁଆଡ଼ୁ ଏଗୁଡ଼ା ଆସିଛନ୍ତି ମଣିଷକୁ ଘେରି ଯାଉଛନ୍ତି । ଏ ଗୁଡ଼ାଙ୍କୁ ମରଣ ଯୋଗ ବି ନାହିଁ ।"

ବାହାର ଘରେ ଠିଆ ହୋଇ ବାସନ୍ତୀ ସବୁ ଦେଖୁଥିଲା । ତା'ର ମନ ଦବି ଗଲା । ନିଶ୍ଚୟ ଭୋଗରାମକୁ କୃଷି ଋଣ ମିଳିନାହିଁ । ଘରେ ପହଞ୍ଚିଲା ମାତ୍ରକେ ଲକ୍ଷଣ ଜଣାପଡ଼ିଲାଣି । ସତରେ କଥା ସେଇଆ । ଋଣ ଦେଲାବାଲା ଅଫିସରକୁ ଧନଞ୍ଜୟ ଅନେକ ପ୍ରକାର ବୁଝାଇଲା । ଭୋଗରାମ ମଧ୍ୟ ତାର ଦାରିଦ୍ର୍ୟ କଥା ଯେତେପାରେ

ବୁଝାଇଲା । କିନ୍ତୁ ଅଫିସରର କଠୋର ହୃଦୟ ତରଳିଲା ନାହିଁ । ସେ କହିଲେ ବେପାରୀଙ୍କୁ କୌଣସି ମତେ କୃଷିଋଣ ଦିଆଯିବ ନାହିଁ । ପ୍ରକୃତ କୃଷୀଙ୍କର ବହୁତ ଦରଖାସ୍ତ ତା ଟେବୁଲ ଉପରେ ଏ ଯାଏଁ ପଡ଼ିଛି । ସେମାନଙ୍କୁ ଦେବାକୁ ଟଙ୍କା ଅଣ୍ଟୁନି । ତା'ଛଡ଼ା ଏମିତି ଋଣ ଦେବାରେ ଅନେକ ପ୍ରକାର ସରକାରୀ ନିୟମ ସବୁ ଅଛି । ସବୁ ନିୟମ ଅନୁଯାୟୀ ଋଣ ଦେବାକୁ ହେବ ଏବଂ ସେଥିପାଇଁ କାମରେ ଛଅମାସ ସମୟ ତ ଲାଗିବ । ଅଫିସରର କଥାଶୁଣି ଧନଞ୍ଜୟ ରାଗିଗଲା ।—କୃଷି !! ଜୀବନର ବିକଳାଙ୍ଗ ରୂପ ତାକୁ ହତାଶ କରିଦେଲା । ସରକାରୀ ଅଫିସରମାନଙ୍କର ସହାନୁଭୂତିହୀନ ବ୍ୟବହାର ତାକୁ ଅସ୍ଥିର କଲା ।

ଋଣ ପାଇବାର ଅଳ୍ପ ଆଶା ଦେଖି ଭୋଗରାମ ଅତି ନିରାଶ ହୋଇପଡ଼ିଲା । ତା'ପାଇଁ ଉନ୍ନତିର ସବୁପଥ ଆଜି ବନ୍ଦ ।

କିନ୍ତୁ ଶେଷରେ ତାର କପାଳ ଖୋଲିଲା । ଦିନେ ହଠାତ୍ ଜଣେ ପ୍ରତାପୀ ମଣିଷ ତା ଘରକୁ ଆସିଲେ ଏବଂ ତାଙ୍କର ଦ୍ୱାରା ତାର ଜୀବନର ଗତି ବଦଳିଗଲା !

ପାଞ୍ଚମାସ ପରେ ଏକ ନୂତନ ଉତ୍ତେଜନା ସୋନାଇପଲିଆ ଗାଁରେ ଖେଳିଗଲା । ସୋନାଇପଲିଆବାଲା ଧେଡ଼ିର ଲକ୍ଷ୍ମୀ "ମାଧବବାବୁ" ଖୁବ୍ ଜୋରରେ ପାଳିଲେ । ବାବୁର ମହୁରୀ, ଢୋଲ ଓ ନାଗରାର ମନୋହର ଛନ୍ଦ ଆଉ ମାଘର ସୁନ୍ଦର ପବନ ଯୁବକ ଆଉ ଯୁବତୀଙ୍କ ମନରେ ଡେଣା ଲଗେଇ ଦେଲା । ସରୁଅଣ୍ଟା ଥିବା ନର୍ତ୍ତକୀର ଯୌବନ ଛନ୍ଦ, ପ୍ରତି ପଦ ଚାଳନାରେ ଫୁଟି ଉଠିଲା । କେଉଁ ସେବତୀ ମାଳତୀର ହୃଦୟ କାହାର ସ୍ମୃତିରେ ନାଚି ଉଠିଲା । ଅଭାବରୁ ସାମୟିକ ମୁକ୍ତି ପାଇଁ ବୁଢ଼ା ଟୋକା ସମସ୍ତେ ଭକ୍ତି ରସରେ ଗଦ ଗଦ ହୋଇ ଉଠିଲେ । "ଭୋଗାଲି" ବାବୁ ସହରୁଣୀ "କଙ୍ଗାଲୀ" ବାବୁଙ୍କୁ ଆପଣା ଉଦାରତାରେ କ୍ଷମା କରିଦେଲା (କିନ୍ତୁ ଏକ ରାତ୍ରୀୟ ପର୍ବ) ।

ସୋନାଇ ଉପରେ ଯାଗା ଯାଗାରେ ବାଉଁଶର ପୋଲ ତିଆରି ହେଲା । ସେ କୂଳ ଏ କୂଳ ସବୁ ଏକ ହୋଇଗଲା । "ଦେବଡ଼ା" 'ପାହିଶିଲ'-ଆଉ 'ବିହୁମନ' ପଡ଼ିଆରେ ମହିଷି ଲଢ଼େଇ କରାଗଲା । ପାଚିଲା ଶାରଦ ଓ ଦାଲୁଅ ଧାନ କ୍ଷେତ ଲୋକସମାଗମରେ ମୁଖରିତ ହୋଇଉଠିଲା । ଏତିକିବେଳେ ଆସିଲା ଭୋଟ ଯୁଦ୍ଧ । ଏଥର ଭୋଟଦେଇ କାହାକୁ ସିଲଂ—ପଠାଯିବ । ଭୋଟ ବିକଳବାଲ ଓକିଲକୁ ଦିଆଯିବ ନା ସେହି ଅଞ୍ଚଳରେ ପିଲାଦିନ ଜଣାଶୁଣା ଜଣେ ଲୋକକୁ ଦିଆଯିବ ? ଅମୁକକୁ ଦେଲେ ସେ ଇଂରାଜୀ କହି ପାରିବନି । ସମୁକକୁ ଦେଲେ ସେ ଇଂରାଜୀ

କହି ପାରିଲେବି ଆମକୁ ଆଉ ପଚାରିବ ନାହିଁ । ତାକୁ ସବୁଥର ଭୋଟ ଦେଇ ଆମର କଣ ବା ଲାଭ ହୋଇଛି ? ବରଂ ମେଣ୍ଢାଆ ପିଠିରେ ଲୋମ କେବେ ଉଠେନା । ଅନ୍ୟଲୋକ ଆମକୁ କେବେହେଲେ ଦେଖିବ ନାହିଁ । ଠିକ୍ କଥା ଗ୍ରାମବିଚନ୍ଦ୍ର କହିବା-ବାଲା ଜଣେ ମତ ଦେଲା—"ଯେ ଲଙ୍କାକୁ ଯାଏ ସେ ରାକ୍ଷସ ପାଲଟି ଯାଏ ।"

ମାଘ ମାସର ପହିଲା ଝଙ୍କ ପରେ ଆସିଲା ଭୋଟ । ସୁନ୍ଦର ସୁନ୍ଦର ମୋଟରଗାଡ଼ି ଗ୍ରାମର ଶୋଭା ବର୍ଦ୍ଧନ କଲା । ସୋନାଇର ଏପାଖରେ ମଧ୍ୟ ସହରରେ ଆରାମରେ ରହୁଥିବା ଲୋକମାନଙ୍କ ପଦଯୁଗଳର ସ୍ପର୍ଶ ମିଳିଲା । ସେମାନେ ସୁନ୍ଦର ଲୋକ । ସଭା ସମିତିରେ ଭଲଭଲ କଥା କହିଲେ । ସୋନାଇ କୂଳରେ ଆଜକାଲି ବସନ୍ତ ଗୁଞ୍ଜର ଉଠିଛି । ସୋନାଇପଟିଆମାନେ ଏହି ନୂତନ ବଚପଟାକୁ ଉପଭୋଗ କରୁଛନ୍ତି । କିଏ ଭୋଳ ହୋଇଯାଇଛି । କାହାଙ୍କୁ କହିବାକୁ ସୁଯୋଗ ମିଳିଛି । ଆଉ ବହୁତ ରଙ୍ଗୀନ୍ ସ୍ୱପ୍ନ ମଧ୍ୟ ଦେଖୁଛନ୍ତି ।

ଏମିତି ଦିନେ ମାଘ ମାସର ବାରଦିନ ଗତ ହେଲାରୁ ସେହି ଲୋକ ଆସି ଭୋଗରାମର ଦୁଆରେ ଛିଡ଼ା ହେଲେ । ଖବ୍ ଆଦର ଯତ୍ନରେ ତାଙ୍କୁ ଡାକି ଭିତରେ ବସାଇଲା । ସେ ବାଜେ ଲୋକ ନୁହନ୍ତି । ସେ ସେହି ସହରର ପ୍ରଖ୍ୟାତ ଓକିଲ ସୁବୋଧ ସେନାପତି । ଦେଶରେ ତାଙ୍କୁ ଏବଂ ତାଙ୍କ ନାଁକୁ ନ ଜାଣିବା ଲୋକ କେହି ନାହାନ୍ତି । ସେ ରଜା ସହିତ ସମାନ । ତାଙ୍କର କୋପଦୃଷ୍ଟିରେ ବଡ଼ ବଡ଼ ଲୋକେ ନାହି ମଧ୍ୟ ସୁଦନ ଡାକ ଦିଅନ୍ତି । ଆଉ ତାଙ୍କ କୃପା ଦୃଷ୍ଟିରେ ମଳମୁଣ୍ଡିଆ ଲୋକ ମଧ୍ୟ ମୁଖିଆ ହୋଇଯାଏ ।

ସୁବୋଧ ସେନାପତି ଚୌକିରେ ବସିଲେ । ଖୋଳରୁ ଚଷମା ବାହାର କରି ପିନ୍ଧି ପଚାରିଲେ, "ତୁମ ନାଁ ଭୋଗରାମ ?" ଭୋଗରାମ ନମ୍ର ହୋଇ କହିଲା "ହଁ ସାର୍" । ଚଷମା ଖୋଲି ପୁଣି ପିନ୍ଧି କହିଲେ—"ଅନେକ ଦିନ ହେଲା ତୁମ ନାଁ ମୁଁ ଅନେକ ଲୋକଙ୍କ ଠାରୁ ଶୁଣିଛି । କିନ୍ତୁ ଦେଖାହେବା ସୁଯୋଗଟା ଆଜି ମିଳିଲା ।"

ଭୋଗରାମ ଭାରି ଖୁସି ହେଲା । ଦାରିଦ୍ର୍ୟ ତାକୁ ଏମିତି ଝାଞ୍ଜି ଦେଇଥିଲା ଯେ, ବଡ଼ ଲୋକଙ୍କ ମୁହଁରୁ ଏମିତି କଥାଶୁଣି ସେ ବଡ଼ ଆଶାର ସୂଚନା ଦେଖିପାରିଲା । ପରିବାର ଚିନ୍ତା ଆଉ ହତାଶା ତା'କୁ ଏତେ କମ୍ ଜୋର କରି ପକେଇଥିଲା ଯେ ସେ ନିଜର ନିଜତ୍ୱକୁ ଭୁଲି ଯାଇଥିଲା । ସଫଳ ଜୀବନ ଯାପନ କରୁଥିବା ଲୋକଙ୍କୁ ଦେଖିଲେ ଆଜକାଲି ସେ ଅଟ୍ଟା କରିବା ଆରମ୍ଭ କରି ଦେଇଥିଲା । ଧନୀଙ୍କୁ ସମସ୍ତଙ୍କର

ମାଲିକ ବୋଲି ଭାବୁଛି । ଆଜି ତା'ର ପରି ଗରିବଙ୍କୁ ଘୃଣା ମଧ୍ୟ କରୁଛି । ତା' ସହିତ ନିଜ ବ୍ୟକ୍ତିତ୍ୱକୁ ପୁରାପୁରି ଖାଇ ବସିଛି ।

"ଭୋଗରାମ ! ମୁ ତୁମ ସଙ୍ଗରେ ଗୋଟିଏ ବିଷୟରେ କଥା ହେବାକୁ ଚାହେଁ । ମୁ କେବଳ ସେଥିପାଇଁ ଆସିଛି ।"

ଭୋଗରାମ ମନେମନେ ଉଠିଲା । ଅତି ବିନୟ ହୋଇ କହିଲା "ମୁଁ କେଣ ଏତେ ବଡ଼ ହୋଇଗଲି ସାର୍ ।"

"ତୁମେ ବଡ଼ କି ଶ୍ରେଷ୍ଠ ସେ ଅଲଗା କଥା । ତୁମେ ସବୁ ବୁଝିପାର । କିନ୍ତୁ ମୁଁ ତୁମକୁ ଆହୁରି ଉଚ୍ଚ ସ୍ଥାନ ଦେବି । ବୟାଳିଶି ଆନ୍ଦୋଳନ ସମୟର ଅଞ୍ଚଳର କଥା ମନେ ପକାଇଲାବେଳେ ପ୍ରଥମେ ତୁମରି ନାଁଟା ମନେ ପଡ଼ିଲା ।"

ବୟାଳିଶ ମସିହାରେ ଭୋଗରାମର ବାପା ବଞ୍ଚିଥିଲେ ସେ ସେତେବେଳେ ଖୁବ୍ ଫୁର୍ତ୍ତି ହୋଇ ଥିଲା ଓ ଆନ୍ଦୋଳନରେ ଭଲଣ୍ଟିୟର ହୋଇଥିଲା । ଶୋଭା-ଯାତ୍ରାରେ ସେ ଆଗରେ ଥିଲା । ଗାଁ ଗାଁରେ ବୁଲି ସେ ମିଲ୍ ଲୁଗା ଓ ବିଦେଶୀ କପଡ଼ା ପୋଡ଼ୁଥିଲା । ବିଦେଶୀ ଲୁଗା ବର୍ଜନ କରିବାକୁ ସେ ସୋନାଇପଡ଼ିଆ ଲୋକଙ୍କୁ ବୁଝାଉଥିଲା । କିନ୍ତୁ କାଳର ଗତି ଏମିତି ହେଲା ଯେ ସେ ପୁଣି ମିଲ୍ କପଡ଼ାର ବ୍ୟବସାୟୀ ହେଲା । ସବ୍ଡେପୁଟି ଅଫିସର ଫାଟକ ଆଗରେ ଶୋଇ ଅନେକଙ୍କ ସହିତ ସେ ମଧ୍ୟ ପିକେଟିଂ କରିଥିଲା । ସେହି ଅଫିସରେ ଜାତୀୟ ପତାକା ଉଡ଼ାଇବାକୁ ଯାଇ ସେ ପୁଲିସର ମୁହାଁମୁହିଁ ହୋଇଥିଲା । ସେ ବାୟୋନେଟ୍ର ଖେଞ୍ଚା ମଧ୍ୟ ଖାଇଛି । ଆହତ ଅବସ୍ଥାରେ ସେ ଗ୍ରେଫ୍ତାର ହୋଇଥିଲା । ଜେଲ୍ରେ ତା'ର ଚିକିତ୍ସା ହୋଇଥିଲା । ଛଅମାସ କାଳ ସେ ଜେଲ୍ ଭାତ ଖାଇଛି । ସୁବୋଧ ସଇଜାସ୍ୱାଙ୍କ କଥା ଶୁଣି ସେପରି ଆଉ କେଉଁ ମଣିଷର କଥାପରି ସବୁ ମନେ ପଡ଼ିଗଲା ।

ସଇଜାସ୍ୱା କହିଲେ— "ତୁମକୁ ମୋତେ ଏଥର ସାହାଯ୍ୟ କରିବାକୁ ହେବ । ମୁଁ ଭଲଭାବରେ ଜାଣେ ଯେ ଏହି ଅଞ୍ଚଳର ଲୋକ ତୁମ କଥା ଶୁଣିବେ । ମୁଁ ଏଥର ଏହି ଅଞ୍ଚଳରୁ ଠିଆ ହେବି ।" ସଇଜାସ୍ୱା ଖୁବ୍ ଚାଲାଖ ମଣିଷ । ସେ ଠିକ୍ ଭାବିଛନ୍ତି । ଭୋଗରାମ ବେପାରୀ ଏବଂ ବେପାର ପାଇଁ ସବୁ ମଣିଷ ତାକୁ ଜାଣନ୍ତି ଏବଂ ସେ ମଧ୍ୟ ଜାଣେ କିଏ କେମିତିକା ମଣିଷ । ସେଥିପାଇଁ ଏମିତି ଜଣେ ମଣିଷ ତା ହାତରେ ରହିବା ଦରକାର । ତା' ଛଡ଼ା ବୟାଳିଶି ମସିହାରେ ତା'ର ରେକର୍ଡ ଭଲଥିଲା । ତା ମୁହଁ କଥା ଲୋକଙ୍କୁ ବେଶୀ ଭଲ ଲାଗିବ । ଭୋଟ ପଟରେ ଏମିତି ମଣିଷ ଧନକୁବେର ନନ୍ଦଲାଲ ପରି କାମରେ ଆସିବ ।

ସଇକାପ୍ସାଙ୍କ କଥାଶୁଣି ଭୋଗରାମ ସାମାନ୍ୟ ଆପତ୍ତି କରିଥିଲା । ସେ କହିଲା ଯେ— କୌଣସି ପ୍ରକାରେ ସେ ପେଟ ଘରଟାକୁ ଯୋଡ଼ି ପାରୁନାହିଁ । ଏହି ଚିନ୍ତା ତାକୁ ଖାଇବାକୁ ଲାଗିଛି । ଏପରି ଅବସ୍ଥାରେ ସ୍ୱଳମାଳ କାମରେ ବୁଲିବାକୁ ତା'ର ମନ ନାହିଁ କି ଅଭିଳାଷ ନାହିଁ । ଦୁଶ୍ଚିନ୍ତା ଦୁଶ୍ଚିନ୍ତାରେ ସେ ଥକି ଗଲଣି ।

କୃଟନୈତିକ ଢଙ୍ଗରେ ସେ ଭୋଗରାମ କଥାକୁ ଉଡ଼େଇ ଦେଲେ । କିନ୍ତୁ କ୍ଷମତାକୁ ଆସିଲେ ସେ ଯେ ତା'ର ଖୁବ୍ ଉପକାର କରିପାରିବେ, ଏକଥା ଇଙ୍ଗିତରେ ଜଣେଇଦେଲେ । ଚତୁର ଭୋଗରାମ ଇଙ୍ଗିତ ଭଲଭାବରେ ବୁଝିପାରିଲା ।

ତା' ପରଦିନ ପୁଣି ସଇକାପ୍ସା ଆସିଲେ । ଏହିବାର ଦୁଇଜଣଙ୍କର ଖୋଲାଖୋଲି ଆଲୋଚନା ହେଲା । ସଇକାପ୍ସା କହିଲେ—"ଆଜିକାଲି "ଡ଼ିଇଞ୍ଚିଂ ଋଣ" ବୋଲି ଏକ ଋଣ ଦିଆ ହେଉଛି । ଭୋଗରାମର ଘରେ ଛଅଜଣ ସ୍ତ୍ରୀ ଲୋକ ଅଛନ୍ତି । ସେଥିପାଇଁ ଦେଢ଼ହଜାର ଟଙ୍କା ଋଣ ମିଳି ପାରିବ । ଏହି ଋଣ ଶୀଘ୍ର ପରିଶୋଧ କରିବାକୁ ମଧ୍ୟ ପଡ଼ିବ ନାହିଁ । କିଛି ବର୍ଷ ନ ଦେଲେ ମଧ୍ୟ ଚଳିବ ।" ସେ ଶୀଘ୍ର ଏଇ ଧନ ମଞ୍ଜୁର କରିବେ । ତା ହେଲେ ଭୋଗରାମକୁ ଆଉ ରୋଜଗାର ଚିନ୍ତା କରିବାକୁ ପଡ଼ିବ ନାହିଁ ।

ସଇକାପ୍ସାଙ୍କ କଥା ଶୁଣି ଭୋଗରାମ ଯେପରି ହାତରେ ସ୍ୱର୍ଗ ପାଇଲା ।

ପରଦିନ ସଇକାପ୍ସା ପୁଣି ଆସି ଖବର ଦେଲେ ଯେ, ଦୁଇ ହଜାର ଟଙ୍କା "ଡ଼ିଇଞ୍ଚିଂ ଲୋନ୍" ମଞ୍ଜୁର ହୋଇଯାଇଛି । ମାସକ ଭିତରେ ପୁଜାରୀ ଓ ଚରୁ-ନାମରେ ଟଙ୍କା ମିଳିଯିବ ।

ଏକଥା କହି ସେ ଡ୍ରାଇଭରକୁ ଡାକିଲେ । ଡ୍ରାଇଭର ଜିପ୍ ଭିତରେ ନୂଆ ଚକ୍ ଚକ୍ ସାଇକେଲ୍‌ଟା ଆଣି ତଳେ ଥୋଇଲା । ସୁବୋଧ ସଇକାପ୍ସା କହିଲେ— "ଭୋଗରାମ ! ଏହି ସାଇକେଲ୍ ମୁଁ ତୁମକୁ ଦେଲି । ତା'ହେଲେ ବୁଲାବୁଲି କରିବାକୁ ତୁମକୁ ସୁବିଧା ହେବ । ତୁମେ ଯାହାଙ୍କୁ ସଙ୍ଗରେ ନେବ ସେମାନଙ୍କର ସାଇକେଲ ଦରକାର ହେଲେ ମୋତେ କହିବ···ଡ୍ରାଇଭର ! ଲିଫ୍‌ଲେଟ୍ ଆଣ ।" ଡ୍ରାଇଭର ବଡ଼ ବଡ଼ ଅକ୍ଷରରେ ଛପା ଓ ଶ୍ଳେଟ ଅକ୍ଷରରେ ଥିବା ହାତବଣ୍ଟା କାଗଜ ଆଣି ସଇକାପ୍ସାଙ୍କ ଆଗରେ ରଖିଲା । ସଇକାପ୍ସା ଏଥର ଭୋଗରାମଙ୍କୁ ବୁଝାଇ କହିଲେ—"କ୍ୟାନଭାସ୍ କଲାବେଳେ ତୁମକୁ ଆଉ ଗୋଟିଏ କଥା କହିବାକୁ ପଡ଼ିବ ।

କହିବ ଯେ—ସୋନାଇ କୂଳରୁ ପକ୍କା ରାସ୍ତା ମୋର ଚେଷ୍ଟାରେ ହୋଇଛି । ସର୍ଭିସ ବସ୍ ଲାଇନ୍‌ଟା ମୁଁ ଇ ମଞ୍ଜୁର କରେଇଥିଲି ।"

ଏଇ କଥା ଶୁଣିବା ମାତ୍ରକେ ଭୋଗରାମଙ୍କ ଦେହ ରୋମାଞ୍ଚ କରି ଉଠିଲା । ଆଖି ବଡ଼ ବଡ଼ ହୋଇ ଉଠିଲା । ଆକ୍ରୋଶରେ କାନ ଦୁଇଟା ନାଲି ହୋଇ ଉଠିଲା । ସେହି ରାସ୍ତାହିଁ ତା'ର ସର୍ବନାଶ କରିଛି, ସେ ସେହି କଥାର ଆଦ୍ୟପ୍ରାନ୍ତ ସଇକାସ୍ୱାଙ୍କୁ କହିଲା । ଧୈର୍ଯ୍ୟ ଧରି ବକ୍ତୃତା ଶୁଣେଇବା ଭଳି ସଇକାସ୍ୱା କହିଲେ, "ହଜାର ହଜାର ଟଙ୍କା ଖର୍ଚ୍ଚରେ ଯେ ରାସ୍ତାଟି ହୋଇଛି, ସେଇଟି ତୁମର କାଳ ହେଲା । ତେବେ ସତ କଥା କହିବାରେ ଅସୁବିଧା କ'ଣ ?"

"ଆଉ ଅଧିକ କିଛି କହନ୍ତୁନି ସାର୍ ! ଏଇ ରାସ୍ତା ହିଁ ମତେ ଦେବାଳିଆ କରି ଦେଇଛି; ଆଉ ଏଇ ରାସ୍ତା ହିଁ ସୋନାଇପଡ଼ିଆ ଲୋକଙ୍କର ସୁଖ ଶାନ୍ତି ଲୁଟିନେବ ।"

"ତୁମେ ଖୁବ୍ ସାଧାସିଧା ଭୋଗରାମ । ପ୍ରକୃତ ଅବସ୍ଥା ଓ ସମସ୍ୟାକୁ ତୁମେ ଅବହେଳା କଲେ ହେବ କିପରି ? ପରିବର୍ତ୍ତିତ ସମସ୍ୟାକୁ ବୁଝି ଲୋକେ ନିଜ ଲାଗି ପନ୍ଥା ସ୍ଥିର କରିନେବା ଦରକାର ।"

ସଇକାସ୍ୱା ଆହୁରି ଅନେକ କିଛି କହିଲେ । ପ୍ରବୀଣ ଓକିଲଙ୍କ ଯୁକ୍ତି ଭୋଗରାମ ଗ୍ରହଣ କରିନେଲେ । ସଇକାସ୍ୱାଙ୍କ ଆଗରେ ସେ ହାର ମାନିଗଲା । ପରଦିନଠାରୁ ହିଁ ସେ ନିଜର ନୂତନ ଭୂମିକା ଗ୍ରହଣ କରିନେଲା । ସୋନାଇପଡ଼ିଆ ଲୋକଙ୍କ ଜୀବନ ନେଇ ସେ ପୁଣି ଆଶାର ଆଲୋକ ଦେଖିବାକୁ ଲାଗିଲା ।

## ଦଶ

ସୋନାଇ ତୀରରେ ନିରକ୍ଷରଙ୍କ ସଂଖ୍ୟା ଅଧିକ । ଏପରି ଲୋକଙ୍କୁ ଅନେକ କଥା କହି ଭୁଲେଇ ନେବା ସହଜ । ଅନେକ ସଭାସମିତି ହେଲା । ଅଲଗା ଅଲଗା ଦଳର ଲୋକେ ସୋନାଇପଡ଼ିଆ ଲୋକଙ୍କୁ ଅନେକ ପ୍ରତିଶ୍ରୁତି ଦେଲେ । ଭୋଟ ପାଇବାକୁ କିଏ ଉପଯୁକ୍ତ, ଦେଶର ଉନ୍ନତି ଲାଗି କିଏ ଅଧିକ କାମ କରିବ—ଏସବୁ ପଛରେ ରହିଗଲା । ସାଧାସିଧା ଗାଁ ଲୋକ ଭଲ ଭଲ କଥାରେ ଭୁଲିଗଲେ । ସୋନାଇପଡ଼ିଆ

ରାଜନୀତି କିଛି ବୁଝନ୍ତିନି । ଗାନ୍ଧି ରାଜାଙ୍କ ଅମଳରେ ଅବଶ୍ୟ ବୁଝୁଥିଲେ । ଏବେ ତ ସେହି ଲୋକଙ୍କ ଅବସ୍ଥା ଦିନକୁ ଦିନ ଖରାପ ହୋଇଯାଉଛି । କିନ୍ତୁ ଏଥିଲାଗି ଲୋକେ ନିଜର ଅଦୂରଦର୍ଶିତାକୁ ହିଁ ଦୋଷ ଦେଉଛନ୍ତି । ଶିଲଂ ନିର୍ବାଚନମଣ୍ଡଳୀରୁ ତିନିଜଣ ଠିଆ ହୋଇଥିଲେ । ଅନ୍ୟ ଦୁଇଜଣ ହେଲେ —ସଞ୍ଜୀବ ବରୁଆ ଓ ଲୋକନାଥ ତାମୁଲି ।

ସଞ୍ଜୀବ ବରୁଆ ଦଳରେ ଅନେକ ଲୋକ । ସେ ବୟାଳିଶି ମସିହା ଆନ୍ଦୋଳନବେଳେ ସେ ଅଞ୍ଚଳରେ ବହୁତ କାମ କରିଥିଲେ । ତାଙ୍କ ଖବର ଦେଇ ତାଙ୍କୁ ଧରାଇ ଦେବା ଲାଗି ଇଂରେଜ ସରକାର ଦଶହଜାର ଟଙ୍କା ପୁରସ୍କାର ଘୋଷଣା କରିଥିଲେ । ସୋନାଇ କୂଳର ଗାଁରେ ଆତ୍ମଗୋପନ କରି ରହିଥିଲାବେଳେ, ଗାଁର ମୁଖିଆ ଲୋକଙ୍କ ସହିତ ତାଙ୍କର ବେଶ୍ ଘନିଷ୍ଠତା ହୋଇଯାଇଥିଲା । ଏଇ ଅଞ୍ଚଳ ଲୋକଙ୍କ ହୃଦୟରେ ଏବେ ବି ତାଙ୍କ ଲାଗି ସହାନୁଭୂତି ରହିଛି । ସେ ମଧ୍ୟ ପ୍ରାୟ ଗାଁ ଗାଁ ବୁଲନ୍ତି । ବଢ଼ି ଆଉ ମହାମାରୀ କାଳରେ ସେ ହିଁ ଲୋକଙ୍କର ସାହା ଭରସା ହୋଇ ଆସିଛନ୍ତି ।

ଭୋଟ ହେବାର ଦୁଇଦିନ ଆଗରୁ ଜଣାଗଲା ଯେ ମୁଖ୍ୟ ଲଢ଼େଇ ସଇକୀୟା ଓ ସଞ୍ଜୀବ ବରୁଆଙ୍କ ଭିତରେ ହେବ । ସଞ୍ଜୀବ ବରୁଆଙ୍କ ଦଳର ଲୋକ କହୁଥିଲେ-- "ଭାଇମାନେ, ଆପଣମାନଙ୍କ ଭୋଟ ବଳରେ ହିଁ ଏଇଥର ସରକାର ବଦଳିଯିବ । ଆପଣମାନଙ୍କ ଦୁଃଖ ଦୂର ହେବ । ସୁବୋଧ ସଇକୀୟାଙ୍କୁ ଭୋଟ ଦେଇ ଆପଣମାନେ ଭୁଲ କରନ୍ତୁନି । ଆପଣମାନେ ଜାଣନ୍ତି, ଖାଲି ମିଟିଂ କରି ସଇକୀୟା ଜେଲ୍ ଯାଇଥିଲେ; ଆଉ ଜେଲ୍‌ରେ ତାଙ୍କୁ ଘିଅ, ଲହୁଣି ଖାଇବାକୁ ମିଳିଥିଲା । ଆଉ ଆମ ସଞ୍ଜୀବ ବରୁଆ ? ଯାହାଙ୍କୁ ବ୍ରିଟିଶ୍ ସରକାର ମଧ୍ୟ ଧରିପାରିଲେ ନାହିଁ..."

ସୁବୋଧ ସଇକୀୟା ଦଳର ଲୋକେ ଲୋକଙ୍କୁ ବୁଝାଇଲେ —"ବନ୍ଧୁଗଣ, ସଇକୀୟା ମହାଶୟ ଏଥର ଜିତିଲେ ନିଶ୍ଚୟ ମନ୍ତ୍ରୀ ହେବେ । ଆମ ସୋନାଇପରିଆଙ୍କ ଦୁଃଖ ଦୂର ହେବ । ବନ୍ଧ ତିଆରି ହେବ, ପୋଲ ତିଆରି ହେବ, ଆଉ ସ୍କୁଲ ଘର ବି । ସୋନାଇପରିଆ ଲୋକଙ୍କୁ ଭଲ ଭଲ ଚାକିରି ମିଳିବ । କିନ୍ତୁ ସଞ୍ଜୀବ ବରୁଆ ଗୋଟାଏ ମେଣ୍ଟି ପାର୍ଟିର ମେମ୍ବର ହୋଇ କ'ଣ କରି ପାରିବେ ? କେବଳ ଶିଲଂରେ ନିଜର ଭତ୍ତା ଗ୍ରହଣ କରି ବସି ରହିବେ...।

ସୋନାଇପରିଆ ଲୋକେ ଗତ ପାଞ୍ଚବର୍ଷ ଗରିବ ତ ଥିଲେ ହିଁ ଥିଲେ କିନ୍ତୁ ସେମାନଙ୍କ ମଧ୍ୟରେ ଅସୀମ ଏକତା ଥିଲା । ବ୍ରାହ୍ମଣ ଲୋକେ ଆସାମର ଆଦିବାସୀ

ଲାଲୁଂମ୍ୟାନଙ୍କୁ ନୀଚ ବୋଲି ବିଚାରୁଥିଲେ । ଶଲ୍‌ପିଆ ଓ ପାଉଶିଲ ମୈମନ୍‌ସିଂର ଲୋକେ ଅଲଗା ଅଲଗା ଧର୍ମର । ଏକଥା ବି ସେମାନଙ୍କ ମୁଣ୍ଡରେ ଢୁକିଥିଲା । କଲିତା ଜାତି ଭିତରେ ମଧ୍ୟ ଭେଦ ଭାବ ଅଛି—ଜଳ ପାଣି କଲିତା ତ ଜଳ ନଚ କଲିତା, କୁମାର କଲିତା ବା ସୋନାର କଲିତା । ଅନେକ ଲୋକ ଏ କଥା ପ୍ରଥମ ଥର ଲାଗି ଶୁଣିଲେ ।

ଭୋଗରାମ ସଜୀବ ଭାବରେ ଶ୍ରେଷ୍ଠ ଯୁବକରୁ ଜେଣେ ପଡ଼ିଲା । ମୁହଁରେ ବହୁତ ମିଠା ମିଠା କଥା କହି ବୁଲିଲା । ତାର ବର୍ତ୍ତମାନ ଅନେକ କ୍ଷମତା । ଏଇ କେଇଦିନ ପାଇଁ ସୁବୋଧ ସଇକୀୟା ତାକୁ ଗୋଟିଏ ଜିପ୍ ଗାଡ଼ି ମଧ୍ୟ ଦେଇଛନ୍ତି । ତା' ତଳେ ଅନେକ ପ୍ରଚାରକ କାମ କରୁଥାନ୍ତି । ସୁବୋଧ ସଇକୀୟାଙ୍କୁ କହି ସେ ସେମାନଙ୍କୁ ଖଣ୍ଡେ ଖଣ୍ଡେ ସାଇକେଲ ମଧ୍ୟ ଯୋଗାଇ ଦେଇଛି । ହାତ ଖରଚ ଦେଇଛି । ଲୋକଙ୍କୁ କପର ବୁଝାଇବାକୁ ହେବ ଶିଖାଇ ମଧ୍ୟ ଦେଇଛି । ହଉଭ ଧାରକୁ ମୋଟର ଯିବନାହିଁ । ସେଥିପାଇଁ ତା'ର ବହୁତ ସମୟ କଟୁଛି । ଘରେ ଆସି ଗଣ୍ଡେ ଖାଇବାକୁ ବି ସମୟ ନାହିଁ । ତଥାପି ଏଇସବୁ ଜାଗାରେ ବୁଲିବୁଲି ପ୍ରଚାର କରିବାର ନିଶା ତାକୁ ଲାଗିଛି ।

ସୋନାଇପୁରିଆ ଗାଁରେ କାଳୀସି ଲାଗିଛି । ଅକାଳ ବସନ୍ତ ରାସ୍ତାର ଧୂଳି ମାଟିକୁ ବି ପ୍ରାଣମୟ କରି ଦେଇଛି । ବେକାର, ଅଳସୁଆ ଓ ଫେସନକରି ଘୂରି ବୁଲିବା କେତେକ ଟୋକା ଏହା ମଧ୍ୟରେ ଗଣତନ୍ତ୍ରର ଅଧିକାର କଥା ମଧ୍ୟ ବୁଝିପାରିଲେଣି । ସହରର କଲାବେପାରୀ ମଧ୍ୟ ଜାତୀୟ ସ୍ୱାର୍ଥ ସମ୍ବନ୍ଧରେ ଭାଷଣ ଦେଲେଣି । ସୁବୋଧ ସଇକୀୟାର ନୈତିକ ମାନଦଣ୍ଡ ସମ୍ବନ୍ଧରେ ମଧ୍ୟ କହିଲେ । ସ୍ୱାର୍ଥପର ଅବଶ୍ୟାପି ମଧ୍ୟ ଏଠାକୁ ଆସି ଦାନ୍ତାର ପରିଚୟ ଦେଲେ । 'ସାଇଲକ୍' ପରି ଧନୀ ବ୍ୟବସାୟୀ ମଧ୍ୟ ଧନଗଣ୍ଠି ଖୋଲିଲେ । ବଡ଼ ବଡ଼ ଲୋକ ମଧ୍ୟ ସାଧାରଣ ଲୋକଙ୍କ ପରି ଧୂଳି ମାଟିରେ ଚାଲି ମଳା ମୁଣ୍ଡିଆ ଲୋକଙ୍କୁ ଖୋସାମତ କରିବାକୁ ଲାଗିଲେ ।

ଭୋଗରାମର ଦଳ ଜଲମେଗାଁ, ହାଇଡ଼ଙ୍ଗିଆ ଆଉ ଗୁବକଧରା ତ ଗାଁର ମଣିଷଙ୍କର ମନକୁ ଭୁଲେଇ ଦେଲେ । କିନ୍ତୁ ପାଉଶିଲ, କୁଞ୍ଜି ଆଉ ବୋର୍-କୋଶରେ ବିଷମ ଅବସ୍ଥା । ଏହି ଅଞ୍ଚଳରେ ଧନଞ୍ଜୟ ବଡ଼ ପ୍ରତାପୀ । ସେଠାକାର ଲୋକ ଧନଞ୍ଜୟ ଛଡ଼ା ଆଉ କାହା କଥା ମାନନ୍ତି ନାହିଁ । ସୋନାଇର ଉତ୍ତରପାଖର ଲୋକଙ୍କ ଲାଗି ସେ ଦେବତା । ସେ ବେମାରିରେ ସେମାନଙ୍କୁ ଚିକିତ୍ସା କରେ । ଅସହାୟ ଅବସ୍ଥାରେ ସହାୟ ହୁଏ । ସମସ୍ତଙ୍କୁ ସେ ସମାନ ଆଖିରେ ଦେଖେ । ସୋନାଇପୁରିଆ ଲୋକଙ୍କର ଏହାଠାରୁ ଆଉ ଅଧିକା କଣ ଦରକାର ? ଏହି ଲୋକଙ୍କୁ ମନଖୋଲି

ଧନଞ୍ଜୟ କହୁଛି—"ମନେ ରଖିବ ଭାଇ ! ଯାହା ଚକଚକିଆ ତାହା ସୁନା ନୁହେଁ । ଆମକୁ ଏମିତି ଜଣେ ଲୋକ ବାଛିବାକୁ ହେବ ଯେ ନିଜର ଦେଶକୁ ଦେଶ ବୋଲି ଭାବେ ଏବଂ ଦେଶର ଦୁଃଖକୁ ନିଜର ଦୁଃଖ ବୋଲି ଭାବେ । ଯେ କେଇଜଣ ଠିଆ ହୋଇଛନ୍ତି ତାଙ୍କ ଭିତରେ ପ୍ରକୃତ ମଣିଷ ହେଲା ସଞ୍ଜୀବ ବରୁଆ । ତା'ର ଉଦ୍ଦେଶ୍ୟ ଭଲ । ଉପାୟ ମଧ୍ୟ ଭଲ । ସଇକିଆଙ୍କର ଉଦ୍ଦେଶ୍ୟ ହୁଏତ ଭଲ ହୋଇପାରେ, କିନ୍ତୁ ଉପାୟ ଭଲ ନୁହେଁ । ତା'ଙ୍କପରି ମଣିଷ ଦେଶର ଉପକାର କରିନପାରେ ।" ଜନତା ନିଜର ସମର୍ଥନ ଦେଲେ । ସାମାନ୍ୟ ଗୋଟିଏ ବିଦେଶୀ ଟୋକାର କଥାରେ ଲୋକେ ଏକ ହୋଇଗଲେ । ପ୍ରବଳ ପ୍ରତାପୀ ସଇକିଆ ପ୍ରମାଦ ଗଣିଲେ । ଭୋଗରାମ ମନରେ ଝଡ଼ ବହିଗଲା । ସେ ଭାବିଲା ମଣିଷକୁ ବୁଝିବା କେତେ କଷ୍ଟ । ଶେଷରେ ଧନଞ୍ଜୟ ତାର ଶତ୍ରୁତା କଲା । ନିଜର ଭାଇପରି ତାକୁ ସ୍ନେହ କରୁଥିଲା । ଘର ଭିତରେ ପିଢ଼ାରେ ବସାଇ ଜଳଖିଆ ଖୁଆଇଛି । ବର୍ତ୍ତମାନ ସେ ଭୋଗରାମ ଆଗରେ କାଳାନ୍ତକ ମୂର୍ତ୍ତି ଧରିଲା ? ଭୋଟ ଜରିଆରେ ଭୋଗରାମର କଳ୍ପିତ ଭବିଷ୍ୟତ ଧୂଳିସାତ ହେବ ? ସତକଥା । ବିଦେଶୀକୁ ବିଶ୍ୱାସ ନାହିଁ । କିଛି ନକହିବା ମଣିଷ ବଡ଼ ଜଟିଳ ।

ସୁବୋଧ ସଇକିଆ ମଧ୍ୟ ପାଛଗିଲା ଯାଇଥିଲେ । ତାଙ୍କ ସକାଶେ ଭୋଗରାମ ସଙ୍ଗଟାଏ ମଧ୍ୟ ଯୋଗାଡ଼ କରିପାରିଲା ନାହିଁ । ଲୋକେ କହନ୍ତି କୁଆଡ଼େ ଗାଁ ଟୋକାଏ ସଇକିଆ ଆଉ ଭୋଗରାମକୁ ଅପମାନ ଦେଇଥିଲେ । ଧନଞ୍ଜୟ ପ୍ରତି ସଇକିଆଙ୍କର ଖୁବ୍ ରାଗ ହେଲା । କିନ୍ତୁ ବୋଡ଼ାସାପ ପରି ଫଣା ଟେକି ପାରିଲା ନାହିଁ । ସମୟଟାତ ହେଲା ଲୋକଙ୍କ ଚରଣଧୂଳି ମୁଣ୍ଡରେ ମାରିବା । ସେ ମନରେ ଘୃଣା ଆଉ ମୁହଁରେ ସ୍ନେହ ଦେଇ ଧନଂଜୟକୁ ପଟେଇ ନିଜ ଆଡ଼କୁ ନେବାର ଚେଷ୍ଟାରେ ବିଫଳ ହେଲା । ଧନଂଜୟ ତାକୁ କହିଥିଲା, "ସମସ୍ତଙ୍କୁ କିଣିପାରିବନି ସଇକିଆ ! ଆପଣଙ୍କୁ କ୍ଷମତାର ମୋହ ବଶ କରିଛି । ଆପଣ ଆମର ଏ ଅଞ୍ଚଳକୁ ପାପ ଆଣିଛନ୍ତି ।"

କଥାଟି ସତ !! ଦୁଇଦିନ ତଳେ ସେ ମୋରିପୁର ଆଡ଼କୁ ଯାଇଥିଲା । ଦଳେ ଟୋକା ତାକୁ ଘେରି ଯାଇଥିଲେ । ଟୋକାଦଳ ତାକୁ ଗାଳି ଗୁଲଜ କରିବାକୁ ବି ଛାଡ଼ି ନଥିଲେ । ଜଣେତ କାମିଜ ଧରି ଟାଣିଥିଲା । କିନ୍ତୁ ଏହି ଟୋକାଦଳଙ୍କର ବାପା ମାଙ୍କ ନିକଟରେ ଧନଂଜୟ ଠିକ୍ ପୁଅପରି । ସୁବୋଧ ସଇକିଆଠାରୁ ଟଙ୍କା ଖାଇ ଏଇ ଟୋକାଦଳ ଗୁଣ୍ଡା ହୋଇଛନ୍ତି । ମାରୁଆଡ଼ି ଦେଇଥିବା ଚକଚକିଆ ସାଇକେଲରେ ଚଢ଼ି ବଡ଼ବଡ଼ିଆଙ୍କୁ ବେଖାତିର କଲେଣି । ମଦ ପିଇଲେଣି । ଆଉ

ପଇସା ମଧ୍ୟ ହଜମ୍ କରିବାଟା ଶିଖିଗଲେଣି । ସୁବୋଧ ସଇଙ୍କାସ୍ଥାର ବିବେକକୁ ଧର୍ମ ଛାଡ଼ିଲାଣି । ସୋନାଇପାରରେ ପାପ ଖେଳ ବୁଲିଲା ।

ନିର୍ବାଚନର ଆଗଦିନ ପାଉଁଶିଳରେ ଗୋଟାଏ ହୁଲୁସ୍ଥୁଲୁ କାଣ୍ଡ ଘଟିଗଲା । ମାଇନର ସ୍କୁଲ୍ ଆଗରେ ଗୋଟିଏ ବରଗଛ ଅଛି । ତାର ଛାଇରେ, ଦିପହରେ ଗୋଧୂଳିବେଳେ ଗାଁ ବାଲା ଏକାଠି ହୋଇ ଦୁଃଖ ସୁଖ ହୁଅନ୍ତି । ଆଜି ବରଗଛ ଗଣ୍ଡିରେ ଭିନ୍ନ ପ୍ରକାରର ନିର୍ବାଚନ ଇସ୍ତାହାର ମରା ହୋଇଛି ।

"... ... ଜୟ ଜନତାର ଜୟ ।"
"... ... ଙ୍କୁ ଭୋଟ ଦେଇ ନିର୍ଶ୍ଚିନ୍ତ ହୁଅନ୍ତୁ ।"
"... ... କୁ ଭୋଟଦେଲେ, ବଦନାମ ମିଳିବ ।"
"... ... ବାକ୍ସ ହେଲା କଳ୍ପତରୁ ।
ଜନତା ବାଛିବ ଶ୍ରେଷ୍ଠବଡ଼ ... ... ।" ଇତ୍ୟାଦି ।

ସେଇଠାରେ ଭୋଗରାମ ମଧ୍ୟ ସକାଳେ ନିର୍ବାଚନ ପ୍ରଚାର ପତ୍ର ଲଗେଇ ଦେଲା । ପାଖରେ କେତୋଟି ବଳୁଆ ଟୋକା ଠିଆ ହୋଇଥିଲେ । ସେଥିରୁ ଭୋଗରାମର ଦଳର ଲୋକେ ତାଙ୍କ ପାଖକୁ ଢୁଙ୍କି ଗଲେ । ଦୁଇ ଦଳଙ୍କ ଭିତରେ ହାତାହାତି ଚାଲିଲା । ଧକ୍କା, ଚପୁଡ଼ା ପରେ ଇଟା ଢେଲା ବି ଚାଲିଲା । ସେତିକିବେଳେ ଧନଞ୍ଜୟ କେଉଁଠୁ ଆସି ପହଞ୍ଚିଗଲା । କିଛି ସମୟପରେ ଛାମାସ୍ତ ଦଳ ଶାନ୍ତ ହେଲେ କିନ୍ତୁ ଭୋଗରାମ ଦଳର ଲୋକଙ୍କର ଗାଳି ଗୁଲଜ ସେମିତି ଚାଲୁ ରହିଲା । ଧନଞ୍ଜୟ ଦେଖିଲା ଯେ, ଭୋଗରାମର କାମିଜ ଚିରି ଟିକିଟିକି ହୋଇଛି । ଦାନ୍ତରୁ ରକ୍ତ ବୋହୁଛି । ସେ ପାଉଁଶିଳର ଟୋକାମାନଙ୍କୁ ଗାଳି ଦେଲା । ସଙ୍ଗେ ସଙ୍ଗେ ସେମାନେ ଶାନ୍ତ ହୋଇଗଲେ । କେବଳ ଜଣେ ଆଉ ଜଣକୁ କହିଲା, "ଏମାନେ ସୋନାଇ ପାର ହୋଇ ଏଠାକୁ ପାଦ ପକେଇ ପାରିବେନି । ଘାଟିଆକୁ କୁହାହୋଇଛି ଯେ ଏମାନଙ୍କୁ କେହି ପାରିକରିବେ ନାହିଁ । ଏମାନେ ଏଇଠି ସେମିତି ସଢ଼ନ୍ତୁ ।"

ଧନଞ୍ଜୟ କଥା ନଶୁଣିଲାପରି ଚୁପ୍ ରହିଲା, ସେ ଚିନ୍ତିତ ହୋଇପଡ଼ିଲା । ଏଇ ଟୋକାମାନଙ୍କୁ ନେଇ ବିପଦ ବଢ଼ୁଛି । ଏମାନେ ଯଦି ଏମିତି ମରାମରି କରନ୍ତି ତାହାହେଲେ ସଂଜୀବ ବରୁଆର ଅପକାର କରାହେବ । କିଛି ସମୟପରେ ଚିତ୍-ହୋଇ ପଡ଼ିଥିବା ସାଇକଲ ପାଖକୁ ଗଲା । ସେ ସାଇକଲ ଗୁଡ଼ା ଭୋଗରାମ ଦଳର । ସେ ଗୋଟି ଗୋଟି କରି ସାଇକଲ ସବୁ ଉଠେଇଲାବେଳେ ଜାଣି ପାରିଲା ଯେ ପାଉଁଶିଳ ପିଲାଏ ସାଇକେଲରୁ ପବନ ବାହାର କରି ଦେଇଛନ୍ତି । କେଉଁଥିରେ

ପବନ ନାହିଁ । ସେ ଆସ୍ତେ ଖେଗରାମ ପାଖକୁ ଆସି କହିଲା—"ସାର, ମୋତେ କ୍ଷମାକରନ୍ତୁ ।

ମୁଁ ଥିବା ଯାଗାରେ ଏହିସବୁ ହୋଇଗଲା । ସେ ପାଇଁ...

ଖେଗରାମ ରାଗରେ ଜଳିଉଠିଲା । ସେ ମଧ୍ୟ ସହିଲାବାଲା ଲୋକ ନୁହେଁ । ସେ କହିଲା—"ଏତେବେଳେ ଭଲଲୋକ ଦେଖାଇବାକୁ ଆସିଲ । ଏମାନଙ୍କୁ ଭଡ଼ାରେ ଲଗାଇ ବର୍ତ୍ତମାନ ସ୍ୱଧୀର ହୋଇଗଲୁ । ତୋତେ ମୁଁ ଦେଖିନେବ । ମୁଁ ଯଦି ଖେଗରାମ ହୋଇଥାଏ ତା' ହେଲେ ଏହାର ପ୍ରତିଶୋଧ ମୁ ନେବ ।"

ଧନଞ୍ଜୟ ରାଗିଲା ନାହିଁ । ଅନ୍ୟ ସଙ୍ଗରେ କଥା କହିଲା ଭଳି କହିଲା—"ଦଲଙ୍ଗ ଘାଟର ଘାଟିଆକୁ କହିଦିଅ ଏମାନଙ୍କୁ ପାରକରି ଦେଉ ।" ଏହାପରେ ବି ଖେଗରାମ ଧନଞ୍ଜୟ ପ୍ରତି କୃତଜ୍ଞତା ପ୍ରକାଶ କଲାନାହିଁ । କାରଣ ତା'ର ପୂର୍ଣ୍ଣ ବିଶ୍ୱାସ ଥିଲା ଯେ ଘାଟିଆକୁ ଟଙ୍କା ଦେଇ ଡଙ୍ଗା ଚଳାଇବାକୁ ସେ ବାଧ୍ୟ କରିପାରେ ।"

ସନ୍ଧ୍ୟାବେଳେ ଆଉ ଥରେ ଖେଗରାମ ସହିତ ଧନଞ୍ଜୟର ଦଲଙ୍ଗ ଘାଟରେ ଦେଖା ହେଲା । ସେ ପ୍ରଥମେ କଥା କହିଲା, ଖେଗରାମର ମନ ଅଳ୍ପ ନଇଁ ଆସିଲା । ସେ କହିଲା—"ସଞ୍ଜୀବ ବରୁଆ ପାଇଁ ଖଟି ତୋର ଲାଭ କଣ ?" ଧନଞ୍ଜୟ ସ୍ୱାଭାବିକ ଭାବରେ କହିଲା—"ମଣିଷ ସବୁ କାମରେ ଲାଭକ୍ଷତି ବିଚାର କରେନା । ବିଶେଷ ଗୋଟିଏ ନୀତିମାନ ଚଳିବା ଲୋକଙ୍କୁ ମୁଁ ଶ୍ରଦ୍ଧା କରେ । ସେହି କାରଣରୁ ଭାବେ ସଞ୍ଜୀବ ବରୁଆ ପରି ମଣିଷ ପ୍ରତିନିଧି ହେଲେ ଗଣତନ୍ତ୍ର ସଫଳ ହୋଇପାରିବ ।"

ଗଣତନ୍ତ୍ର ଶବ୍ଦଟା ଖେଗରାମ କାନରେ ଅଗ୍ନ୍ୟାସ୍ତ୍ରର ପରି ଲାଗିଲା । ସେ ଧନଞ୍ଜୟ ସହିତ ଆଉ କଥା କହିଲା ନାହିଁ । ସେହିଦିନ ସନ୍ଧ୍ୟାରେ କେଇଟା ଗାଁରେ ମଦ ପିଇବାକୁ ଖୁବ୍ ଟଙ୍କା ଦେଇ ଆସିଲା । ବଡ଼ ବଡ଼ିଆ ଦୁଇଜଣଙ୍କୁ ଟଙ୍କା ଦେଇ ନିଜ ଆଡ଼କୁ ଟାଣି ନେଲା । ସୁବୋଧ ସଇକିଆର ନିର୍ଦ୍ଦେଶ ମତେ ଦୁଇଟି ଗାଁର ପ୍ରତି ଘରକୁ କୋଡ଼ିଏ ଟଙ୍କା ଦିଆଗଲା । ଦେଓରା ଓ କୁଁଆର ଯେଉଁ ଦୁଇଟି ଏଜେଣ୍ଟ ସଞ୍ଜୀବ ବରୁଆର ଥିଲେ ସେମାନେ ପ୍ରତ୍ୟେକ ପଚାଶ ଟଙ୍କା ପାଇ ବଦଳିଗଲେ । ରାତିଟା ଭିତରେ ନିର୍ବାଚନର ହାଓ୍ୱା ବଦଳିଗଲା ।

ନିର୍ବାଚନ ହୋଇଗଲା । ସୁବୋଧ ସଇକିଆ ଏଗାର ଶହ ଅଣଚାଶ ଭୋଟରେ ଜିତିଲା । ସୋନାଲି ପଙ୍ଗଆର ଶୃଙ୍ଖଳରେ ଇତି ପଡ଼ିଲା । ଆଗର ଅବସ୍ଥା ଫେରି ଆସିଲେ ସୁଦ୍ଧା ସୋନାଲିପଙ୍ଗଆ ଲୋକେ ଜଟିଳ ହୋଇଗଲେ । ସ୍ୱାର୍ଥପର ହୋଇଗଲେ । କାମ କରିବା ଅପେକ୍ଷା ବକ୍ତୃତା ଦେଲାଭଳି ବଡ଼ ବଡ଼ କଥା କହିବାକୁ

ଭଲ ପାଇଲେ । ଲୋକଙ୍କର ଅଜ୍ଞତାକୁ ମୂଳଧନ କରି ଖେଗରାମ ଶ୍ରେଣୀର ଉନ୍ନତ ହେଲା । ବର୍ଷକ ଭିତରେ ଭଙ୍ଗା ସାଇକେଲରେ ବୁଲିବା ଖେଗରାମ, ଜଣେ ବଡ଼ ଲୋକ ବୋଲି ଗଣ୍ୟ ହେଲା । ସୁବୋଧ ସଇଁକାୟା ଦେଇଥିବା ନିର୍ବାଚନ ଟଙ୍କାରୁ ଆଠଶହ ତା' ପକେଟକୁ ଗଲା । ଦୁଇଟା ଥିଏଟର ହଲକୁ ଦେବାକୁ ସେ ସଇକାୟା-ଠାରୁ ଦୁଇହଜାର ଟଙ୍କା ନେଇଥିଲା । ସେ ଟଙ୍କା ମଧ୍ୟ ଆତ୍ମସ୍ଥାତ କଲା ।

ଫାଲ୍‌ଗୁନ ଆଗରୁ ଖେଗରାମ ବାର ହଜାରର କଣ୍ଟ୍ରାକ୍ଟ ପାଇଲା । କାମ ଆରମ୍ଭ ହେବା ଆଗରୁ ଛଅ ହଜାର ଟଙ୍କା 'ରନିଂ ବିଲ୍' ମଧ୍ୟ ମଞ୍ଜୁର ହେଲା । ପଲକ ନ ପଡ଼ୁଣୁ ଖେଗରାମ ବେଶ୍ ଜମି ଉଠିଲା । ସୋନାଇପଣିଆର ମଣିଷ ହୋଇ ଶୁଣା ସେ ପାଶୋରି ଗଲା ଯେ--ସେ ନିଜକୁ ବିସର୍ଜନ ଦେଇଛି । ସେ ନିଜକୁ ହଜେଇଛି । ସାଧାରଣ ନିର୍ବାଚନର ଫଳ ବାସନ୍ତୀକୁ ମଧ୍ୟ ଛୁଇଁଗଲା । ସେ ବୁଝିପାରିଲା । ଖେଟ ସମସ୍ତର ବେଇଟା ଦିନରେ ଧନଞ୍ଜୟ ଆଉ ଖେଗରାମର ଅନ୍ଧ ନକୁଳ ସମ୍ବନ୍ଧ ହୋଇଛି ।

ନୂତନ ଋତୁରେ ସୋନାଇର କୂଳେ କୂଳେ ପ୍ରକୃତିର ମହିମା ଖେଳିଲା । ସୋନାଇ ପୁଣି ଯୌବନ ପାଇଲା । କ୍ଷେତ, ବିଲ ଗାଁ-କର୍ମ ଛନ୍ଦରେ ମୁଖରିତ ହେଲା । ସୋନାଇ କୂଳରେ କୋଇଲି ଓ ମୟୂରଙ୍କ ନାଦ ଶୁଭିଲା । ସୋନାଇ ସ୍ପର୍ଶର ଗଳରା ପିନ୍ଧିଲା । କୃଷ୍ଣଚୂଡ଼ା ଗଛର ପତ୍ର ବେଶୀ ଶ୍ୟାମଳ ହେଲା । କୃଷ୍ଣଚୂଡ଼ା ସୋନାଇ କୂଳକୁ ଅମରାବତୀକାନନ କରିଦେଲା । ଧରଣୀ ଉତ୍ତଳା ହେଲା । ସୃଷ୍ଟିର ରହସ୍ୟାବୃତ ପ୍ରକୃତି ମୁଖର ହେଲା । କେତେ ନୂତନ ବନ୍ଧୁଙ୍କର ହୃଦୟ ଦେହରେ ମାତୃତ୍ଵର ଚିହ୍ନ ପ୍ରକାଶ ପାଇଲା । ଏହି ସୋହାଗରେ କେତେ ଯୁବକ ଯୁବତୀଙ୍କର ଦେହ ଓ ମନର ମିଳନ ହେଲା । ମୟୂରର ଡାକରେ ହୁଏତ କେତେ ଯୁବତୀଙ୍କର ମନକୁ ଚଞ୍ଚଳ କଲା, କୃଷକ ।

କୃଷକ ବର୍ଷାକୁ ସ୍ଵାଗତ କଲେ । ହଳ ମୁନରେ ସୀତାଙ୍କ ସମ୍ବେଦ ମିଳିଲା । ବୁଣା ଜମିରେ ଶସ୍ୟ ଗଜା ମାଇଲା, ଆଉ ପବନ ବହିବା ସଙ୍ଗେ ସଙ୍ଗେ ଧାନ ଓ ନଳିତାର ସବୁଜ କ୍ଷେତ ନାଚି ଉଠିଲା । ସୋନାଇପୁଅଝିଅ ଭବିଷ୍ୟତରେ ରଙ୍ଗୀନ୍ ସ୍ଵପ୍ନ ଦେଖିଲେ ।

ବହୁଦିନ ବାସନ୍ତୀ ଘାଟରେ ଶୁଣିଲା—
ଅଇନାର ମନ କେମିତି ଲୋ ସାଥୀ
ଅଇନାର ମନ କେମିତି ଲୋ ସାଥୀ
ହାତରେ ପାରିବ ଧରି ଭରା କଳସୀର ପାଣି
ରଖି ପାରୁନି ମୁଁ ମନଟି......।

ତା'ର ମନ ଉଭିଲା ହେଲା । ଏବେ ଧନଞ୍ଜୟ ତାଙ୍କ ଘରକୁ ଆଉ ଆସିବନ । ଲୋକେ କହନ୍ତି ସେ ଖେଗଗ୍ରାମକୁ ଅପମାନ କରିଥିଲା । ରାତିରେ ସେ ଅନ୍ତର ଚିନ୍ତାରେ ଘାଣ୍ଟି ହେଲା । ମେଳରେ ବଡଭାଇ କାହାକୁ କହୁଥାର ସେ ଶୁଣିଲା— "ପାଉଣିଲରେ ଯଦି ସୁବୋଧ ସାର୍‌ଙ୍କ କହି ସରକାରୀ ହସ୍‌ପିଟାଲ ଖୋଲାଯାଏ ତେବେ ଧନଞ୍ଜୟ ଆଉ ବଡପଣ—କେମିତି ଦେଖେଇ ହେବ ? ହସ୍‌ପିଟାଲକୁ ସରକାରୀ ଡାକ୍ତର ଆସିଲେ ତା'ର ହୋମିଓପାଥି ବ୍ୟବସାୟ ଗୋଟିଏ ଫୁଙ୍କରେ ଉଡ଼ିଯିବ । ଯେମିତି ଖାଲିହାତରେ ଆସିଥିଲା ସେମିତି ଖାଲି ହାତରେ ହିଁ ଯିବ ।"

## ଏଗାର

କେଇ ମାସ ଭିତରେ ଖେଗଗ୍ରାମର କଣ୍ଟ୍ରାକ୍‌ଟରୀ କାମ ସରିଲା । ବହୁତ ଟଙ୍କା ଜମା କରିପାରିଲା । ତା' ଅସ୍ଥିରତା କମିଲା । ରହିବାକୁ ଭଲ ଘର ତିଆରି କରିବାକୁ ହେଲେ ବର୍ଷାଦିନ ଠିକ୍ ନୁହେଁ । କେବଳ ଧର୍ମଗୁଳରୁ ଦୁଇଗାଡ଼ି ଗାଳୁଆ ଖୁଣ୍ଟ ଆଣି ରଖିଲା । ଡାଇବାଘର ଓ ବାହାର ଘରକୁ ସୁନ୍ଦର ବଙ୍ଗଳା ଘର ତିଆରି କରିବାର ଯୋଜନା କଲା । ଖରା ହେଲେ ସେ ଏହି କାମ ହାତକୁ ନେବାକୁ ଭାବିଲା । ତା 'ପାଇଁ ଆଉ କିଛି ବିଶେଷ ସମସ୍ୟା ନ ଥିଲା । ଇଞ୍ଜିନିୟରକୁ ଗୋଟିଏ ଭଲପିଲା ଦେଖି ବାହା ଦେଲେହିଁ ରକ୍ଷା ।

ଯାହା ଆଶଙ୍କା କରି ବାସନ୍ତୀ ଏତେ ଦିନ ଚିନ୍ତାରେ ଦିନ କଟାଉ ଥିଲା ତାହାହିଁ ଘଟିବାକୁ ବସିଲା । ଦିନେ ଖୁବ୍ ରାଗି ଖେଗଗ୍ରାମ ଘରକୁ ଫେରିଲା । ସ୍ତ୍ରୀ କଣ ହେଲା ବୋଲି ପଚାରିବାରୁ ସେ ଆହୁରି ରାଗି କହିଲା—

ଡରୁ ! ତୁମମାନଙ୍କୁ ମୁଁ ଆଉ ବିଶ୍ୱାସ କରି ପାରିବିନି । ଇଆଡ଼େ ତ ସବୁବେଳେ କହି ହେଉଛି ଯେ ଯୁବତୀ ଝିଅ ରଖିବା ଆଉ ଦୁଧ ଦେଇ ସାପ ପୋଷିବା ସମାନ !

"ସେମିତି କଣ କହୁଛମ—କାହିଁକି ଖୋଲି କହୁନା ?"...

ମୁଁ କେବରୁ କଣ ଶୁଣୁଛି ?

"କଣ ଶୁଣୁଛ ?"

"ବାହ୍ମନ ଘର ଝିଅକୁ ଫୁସୁଲେଇବାକୁ ମିଳିଲା । ଶେଷରେ ଗୋଟାଏ ବିଦେଶୀ ଟୋକା ! ଆଉ ତୁମେମାନେ ଆଖି ବନ୍ଦ କରି ଦେଖୁଛ । ବୁଝିଲ, ଏ ସବୁ ତୁମ୍ଭମାନଙ୍କ କାମ ।"

"ମୁଁ ତ କିଛି ବୁଝି ପାରୁନାହିଁ ?"

"ଓଃ ବୁଝି ନ ବୁଝିବାର ଅଭିନୟ କରୁଚୁ । ମାଇପିଙ୍କ ସ୍ୱଭାବହିଁ ଏହି ପରି । ସେ କୁକୁର ଧନଞ୍ଜୟ ମୋ ଭଉଣୀ ସଙ୍ଗରେ ଘାଟରେ କଥାବାର୍ତ୍ତା ହୁଏ । ଚମ୍ପକ ମେଧି ସେପାଖରୁ ସବୁ ଦେଖିଛୁ । ହରିସିଂହ ମଣ୍ଡଳ ଜମି ମାପିବାକୁ ଗଲାବେଳେ ତାଙ୍କ କଥାବାର୍ତ୍ତା ମଧ୍ୟ ଶୁଣିଛୁ । ଆଉ ତୁମେ ସବୁ ଆଖି ବନ୍ଦ କରି କାନରେ ବିଣ୍ଡା ଦେଇଥିଲ ନିଶ୍ଚୟ ! ଯେମିତି କେହି କିଛି ଜାଣନ୍ତି ନାହିଁ ।"

"ପର କହିବା କଥାକୁ କାହିଁକି ବିଶ୍ୱାସ କରୁଛ ?" "ସତମିଛ ବିଚାର କରିବା ପାଇଁ ମୋ ମୁଣ୍ଡରେ କଣ ଗୋବର ଅଛି ? ସେଥିପାଇଁ ତା ବାହାଘର ପାଇଁ ଏତେ ନେହୁରା କରୁଥିଲ ? ଝିଅ ପ୍ରେମ କରିବ ଆଉ ବୁଢ଼ୀ ଦିନରେ ତୁମେ ଛାତିରେ ପଥର ଲଦି ଚୁପ୍ ହୋଇ ରହିବ । କାଳ—କାଳ ବିପରୀତ । ହରିଣ ସ୍ନେହୁଁଛି, ବାଘର ଗ୍ରାସ ?"

ଉତ୍ତର ଦେବାକୁ ଛବୁଲିତାର ସାହସ ପାଇଲା ନାହିଁ । ରାତିରେ ମଧ୍ୟ ସେ ସେମିତି ଭୀଷଣ ମୂର୍ତ୍ତି ଧରି ରହିଲା । ପିଲାପିଲି ମଧ୍ୟ ଚପ୍ ରହିଲେ । ବାସନ୍ତୀକୁ ରାତସାକ ନିଦ ହେଲାନାହିଁ ।

ସକାଳେ ବୋଉକୁ ସବୁକଥା କହିଲା । କିନ୍ତୁ ବୋଉ ତା କଥାକୁ ସମର୍ଥନ କଲା ନାହିଁ । ତା'ର ମନେ ପଡ଼ିଗଲା ପ୍ରାୟ ସ୍ତ୍ରକଣ ବର୍ଷ ତଳର କଥା । ଅକସ୍ମାତ୍ ଦିନେ ଖେଗରାମର ବାପକୁ ଦେଖି ତା ପ୍ରଥମ ମାୟା ମନରେ ଜାଗିଥିଲା । ବନର କୋମଳ ହରିଣୀକୁ ଯେପରି ପ୍ରଭାତର ପ୍ରଥମ ରଙ୍ଗିନ ସୂର୍ଯ୍ୟ କିରଣ ଦେଖାଯାଏ—ଅଳ୍ପଦିନ ପରେ ସେ ରେଖାମୟ ବନ୍ଧନରେ ସେ ନିଜକୁ ଧରା ଦେଇଥିଲା । ତା'ର ଛାତିରେ ମୁହଁ ଗୁଞ୍ଜି ଆନନ୍ଦାଶ୍ରୁ ବୁହାଇ ପ୍ରାଣର କଥାଁକୁ ଲୁଚାଇଥିଲା । ଦିନେ ସେ ମଧ୍ୟ ପ୍ରଥମ ପୁରୁଷ ସହିତ ମନେ ମନେ ଖେଳି ଆସିଥିଲା । ସେ ପୁଣି ସୁଖର ସଂସାର ପାତିଲା । ସେ ସମୟରେ ସୋନାଇ ମଧ୍ୟ ପ୍ରେମର ମୂଲ୍ୟ ବୁଝୁଥିଲା । ମନୁଷ୍ୟ ତାକୁ ଅକୃତ୍ରିମ ମୂଲ୍ୟ ଦେଇଥିଲା, କିନ୍ତୁ ଆଜିକାଲି ଦିନରେ ଯେ କଣ ହେଲା !" ପୁଅ ମା' ଆଗରେ ଭଉଣୀ ବଦମାସୀ କରୁଛି ବୋଲି କହିପାରେ ?

ବର୍ତ୍ତମାନ ପ୍ରେମର ଆଉ ଗମ୍ଭୀରତା ନାହିଁ । ମଣିଷ ପ୍ରେମକୁ ଛଳନା ବୋଲି ଭାବନେଲା ।

ସେ ଭାବଚନ୍ଦ୍ର ପୁଅକୁ କହିଲା—"କାନ୍ତୁ ଧନଞ୍ଜୟ କଣ ଖରାପ ପିଲା ? ତା ପରି ଭଲ ପିଲା, ମୋ ଆଖିରେ ଆଉ ପଡ଼ିନ । ଏ ଦୁହିଁଙ୍କ ଯୋଡ଼ି ଭାରି ଭଲ ହେବ । ଏଥିରେ ଝିଅର କଣ ଦୋଷ । ଏଇ ବୟସରେ ମନ ଏମିତି ଚହଲିଯାଏ ।"

"ବୋଉ ! ତୁ ବି ଯଦି ଏମିତି କଥା କହୁ, ତା'ହେଲେ ଦେଶର ଅବସ୍ଥା କଣ ହେବ ? ମୁଁ ଧନଞ୍ଜୟକୁ ହାଡ଼େ ହାଡ଼େ ଚିହ୍ନେ । ସେ ସାତ ଘାଟର ପାଣି ପିଇଲା-ବାଲା । ସେ ଝିଅର ସର୍ବନାଶ କରିବାକୁ ଚାହେଁ । ତା'ଛଡ଼ା ବସ୍ଥାନ ଘର ଝିଅକୁ ସେ ଯେପରି ଲୋକ ତାକୁ ବା ଦେବି କିପରି ? ସେ ତ ଗୋଟାଏ ଯାଯାବର । ଘର କେଉଁଠି ? ଜାତି କଣ ? —କିଛି ଠିକ୍ ନାହିଁ । ନିଜକୁ ବ୍ରାହ୍ମଣ ବୋଲି କହିଦେଲେ ହେଲା ? ପାଉଁଶିଳରେ ଚହଲି ଦିନରୁ ମନେ ହେଉଛି ଯେପରି ସେ ହରିଜନ । ଜାଣିଶୁଣି ଝିଅଟାକୁ ଜ୍ୱଳନ୍ତ ନିଆଁରେ ମୁଁ ପକାଇଦେଇ ନପାରେ ।"

ବୋଉ ନୀରବ ରହିଲା । ସେ ମା । ତଥାପି ତା କଥାର ମୂଲ୍ୟ ନାହିଁ । ଚିରକାଳ ଯାଏ ନାରୀର ସ୍ୱାତନ୍ତ୍ର୍ୟ ନାହିଁ । ପ୍ରଥମ ବୟସରେ ବାପ ମା'ଙ୍କ ତଳେ, ପରେ ସ୍ୱାମୀର ତତ୍ତ୍ୱାବଧାନ ଆଉ ବୁଢ଼ୀଦିନରେ ପୁଅର ଶାସନରେ ରହିବାକୁ ହେବ । ଭୋଗରାମର ଇଚ୍ଛା ବିରୁଦ୍ଧରେ ଯିବାକୁ ତାର ସାହସ ନାହିଁ । ତା'ଛଡ଼ା ଯଦି ସେ ଭଲ ପିଲାଟାଏ ପାଏ ତାହେଲେ ଭାବିବାର ଆଉ କିଛି ନାହିଁ । ଧନଞ୍ଜୟ ଯଦି ବାସନ୍ତୀକୁ ଫୁସୁଲେଇବାକୁ ଯାଇଥିଲା, ତା'ହେଲେ ତାଙ୍କ ଭିତରେ ପ୍ରକୃତ ପ୍ରେମ ନ ଥିଲା ।

ପରଦିନ ଭୋଗରାମ ଘରେ ଜଣେଇଦେଲା ଯେ ସେ ଗୋଟିଏ ପ୍ରସ୍ତାବ ପାଇଛି । ସେ ପଟୁଆରୀ କାମ କରେ । ମା ବାପ, ଦୁଇ ଭଉଣୀଙ୍କୁ ନେଇ ଏକ ସୁନ୍ଦର ପରିବାର—ଖାନଦାନ ଘର । ଟ୍ରଙ୍କ କଲତା,—ଘରର ଅବସ୍ଥା ମଧ୍ୟ ଭଲ । କୁଟାଧାନର ଦୁଇଟା ଅମାର । ଜମି ମଧ୍ୟ ଅନେକ । ବାପ କାନୁନଗୋ'ରୁ ପେନ୍‌ସନ୍ ନେଇଛି ।

ସେ କିଏ ନ କହିଲେ ସୁଦ୍ଧା ସୁଜାତା ଆଉ ତରୁ ବୁଝିପାରିଲେ । କାନୁନଗୋର ପୁଅ ମଣ୍ଡଳ କଥା କହିଲେ ହିଁ ସମସ୍ତେ ମଥୁରକୁ ବୁଝନ୍ତି । ମଥୁରର ଘର ମୋରପୁରରୁ ଚାରିମାଇଲ ହେବ ସୋନାଇର ଏଇ ପାଖରେ ଦରଙ୍ଗସ୍ଥାଲ ଗାଁରେ । ପକ୍କା ରାସ୍ତା ଠିକ୍ ଗାଁ ମଝିରେ ଯାଇଛି । ଠିକ୍ ପାଖେ ପାଖେ ସୋନାଇ ବହୁଛି । ଗାଁକୁ ମୋରପୁରରୁ ଡଙ୍ଗାରେ ମଧ୍ୟ ଯାଇହେବ ।

ଆଗବେଳ ହୋଇଥିଲେ ଭଗୀରଥ କାନୁନଗୋର ପୁଅ ମଥୁରା, ଖେଗରାମ ପରି ଲୋକର ଭଉଣୀକୁ କେବେହେଲେ ବିବାହ କରୁଅନ୍ତା ନାହିଁ । ଭଗୀରଥ ସମ୍ଭ୍ରାନ୍ତ ଥିବା ମଣିଷ । କିନ୍ତୁ ବର୍ତ୍ତମାନ ଖେଗରାମ ବି ଧନୀ ଓ ମାନୀ ହୋଇଛି । ତା ଘରେ ସମ୍ବନ୍ଧ କଲେ ଖେଗରାମର ପରିବାରର ମାନ ଉପରକୁ ଉଠିଯିବ । ଖେଗରାମ ଆଜିକାଲି ଅହଂକାରୀ ହୋଇପଡ଼ିଛି । ସେ ଆଜିକାଲି ସମ୍ମାନ ଓ ଅସମ୍ମାନ କଥାକୁ ଯୋର୍ ଦେବାକୁ ଲାଗିଲା । କାନୁନଗୋ ଘର ସହିତ ସମ୍ବନ୍ଧ ହେବାର ସମ୍ଭାବନାରେ ନିଜକୁ ଧନ୍ୟ ବୁଝିଲା । ଭଗୀରଥ କାନୁନଗୋ ପ୍ରଥମରୁ ପ୍ରଭାବଶାଳୀ ଓ ଖାନଦାନ ଥିଲେ । ତାଙ୍କ ବାପ ଅମଳରେ ଘରେ ଦୁଇ ଦୁଇଟା ହାତୀ ଥିଲେ । ତାଙ୍କ ଘରକୁ ଆଜିଯାଏ ଲୋକେ “ହାତୀ ଧନୀ”ର ଘର ବୋଲି କହନ୍ତି । ଖେଗରାମ ବେପାର କରି ବୁଲିଲାବେଳେ ତାଙ୍କ ଘର ଭିତରକୁ ପଶିବାକୁ ଭୟ କରୁଥିଲା । ବର୍ତ୍ତମାନ କପାଳ ଯୋରରେ ଏମିତି ଦିନ ଆସିଲା ଯେ—ପୁଅକୁ ଖେଗରାମ ଭଉଣୀ ସହିତ ବିଭା ଦେବାକୁ ସେ ପ୍ରସ୍ତାବ ଦେଲେ । ଏହାଠାରୁ ଆଉ ବଡ଼ ସମ୍ମାନ କଣ ହୋଇପାରେ ?

କେଉଁଦିନ ପହିଲରେ ମୁହଁ ଦିଆଇବାକୁ ବରଘର ମଣିଷ ଆସି ପହଞ୍ଚିଲେ । ଶାଶୁ, ଶ୍ୱଶୁର, ନଣନ୍ଦ ଜଣେ ଆସିଲେ । ଯୋଇଁ ଆସି ନ ଥିଲା । ଆଗରୁ ଖେଗରାମ କୌଣସି-ମତେ ସେମାନଙ୍କୁ ବାସନ୍ତୀକୁ ଦେଖାଇ ଦେଇଥିଲା । ବାସନ୍ତୀ ଏ ସବୁ ଜାଣି ନଥିଲା ।

ସେମାନେ ପହଞ୍ଚିଲା ମାତ୍ରେ ବାସନ୍ତୀର ଛାତିର ଧଡ଼ପଡ଼ ବଢ଼ିଗଲା । ସେ ଶାଢ଼ୀ ପିନ୍ଧି ପାରିଲା ନାହିଁ । ମଣିଷଙ୍କ ଆଗକୁ ନ ଯିବାକୁ ସେ ସ୍ପଷ୍ଟ ଭାବରେ ଜଣାଇଦେଲା । ବୋଉ କହିଲା—“ଲାଜ କରିବାରେ କଣ ଅଛି ଝିଅ ?” ମିଛରେ ମୋତେ କଷ୍ଟ ଦେଉଛୁ କାହିଁକି ?” ସେ ଉତ୍ତର ଦେଲା—“ତା ବୋଲି ଝିଅର ନିଜର ମତ ନାହିଁ ? ମା ନ ଶୁଣିବା ପରି ରହିଲା ।

ଭାଉଜ ତରୁ ମଧ୍ୟ କହିଲା—“ବାସନ୍ତୀ ! ଝିଅ ହେଲେ ଘରର ନିୟମ ମାନି ଚଳିବାକୁ ହେବ । ବୋଉ କଥା ଯଦି ନ ଶୁଣିବ ତା’ ହେଲେ ପାଳିପୋଷି ବଡ଼ କରିବାରେ କି ଲାଭ ହେଲା ? ଯୁବତୀ ଝିଅ ପରଘରକୁ ଯିବାକୁ ଆପତ୍ତି କରିବା ସ୍ୱାଭାବିକ । କିନ୍ତୁ ତା ମାନେ ନୁହେଁ ଯେ ସେ ଘରେ ବସି ବୁଢ଼ୀ ହେବ । ମୁଁ ବି ଦିନେ ବାପା ମା’ ଘର ଛାଡ଼ି ପରଘରକୁ ଆସିଲି ।” ଏଥର ବାସନ୍ତୀ ଖୁବ୍ ନିରାଶ ହୋଇଗଲା । କହିଲା—“ଭାଉଜ, ତୁମେ ବି ମୋ ମନକଥା ବୁଝିପାରୁନ ?” ତରୁ କହିଲା—“ଏ ସବୁ ବୟସର ଦୋଷ ବାସନ୍ତୀ । ବେଳେବେଳେ କୁମାରୀ ଝିଅର ଗୋଟିଏ ଗୋଟିଏ ପୁରୁଷ ପସନ୍ଦ ହୁଏ । ତୁମ ମନ ମଧ୍ୟ କିଛିଦିନ ପାଇଁ ସେମିତି ଖସି ଯାଇଥିଲା । ଏତିକି ବୁଝ ।”

ବାସନ୍ତୀ ବଡ଼ ସମସ୍ୟାର ସମ୍ମୁଖୀନ ହେଲା । ସେ ବୋଉ, ଭାଉଜ ଆଉ ଭାଇର ଆଦର ପରିତ୍ୟାଗ କରି ସୋନାଇପରିଆ ଲୋକଙ୍କର ଅପରିଚିତ, ବାସସ୍ଥାନ ଧନଞ୍ଜୟ ପାଇଁ ଅନିର୍ଦ୍ଦିଷ୍ଟ କାଳ ପ୍ରତୀକ୍ଷା କରିବ ? ପ୍ରତୀକ୍ଷା କଲେ ତାର ଅନିଷ୍ଟ ହେବନାହିଁ ତ ? ସେ କଣ ସତରେ ଛଳନା କରୁଛି । ଖାଲି ଦେହର ସ୍ୱାଦୁ ଚାହୁଁଥିଲା ?

ଟିକଏ ପରେ ଯେତେବେଳେ ଭାଇ ତା ପାଖକୁ ଆସି କହିଲା—ବାସନ୍ତୀ ! ତୁ ମଧ ମୋର ସମ୍ମାନ ତଳେ ପକାଇବାକୁ ଚାହୁଁ ? ଦେଖ ଝିଅ । ମୋ ମୁହଁକୁ ଥରେ ଦେଖ ।" ସେତେବେଳେ ବାସନ୍ତୀ ଅନୁଭବ କଲା ଯେ ଘରେ ସମସ୍ତେ ତାକୁ ଭଲ ପାନ୍ତି । ତାଙ୍କର ଆଦରରେ ସେ ତରିଯାଇଗଲା । ଭାବିଲା—ଭୋଗରାମ ନ ରହିଥିଲେ, ଏତେଦିନ ଘରର ଅବସ୍ଥା କଣ ହୋଇଥାନ୍ତା । ରୋଜଗାର ଖରାପ ଥିଲାବେଳେ ସେ କେତେ କଷ୍ଟ କରି ଘର ନ ଚଳେଇଛି । ଅନ୍ୟ କେହି ଲୋକ ହୋଇଥିଲେ, କାହା ବିଲରେ ଧାନ କାଟିବାକୁ ପଠେଇଥାନ୍ତା ।

ଆଖିପାଣି ପୋଛି ସେ ବରପକ୍ଷଙ୍କ ଆଗକୁ ଆସିବାକୁ ରାଜି ହେଲା । ତରୁ ତାକୁ ସୁନ୍ଦର କରି ସଜେଇଦେଲା । ହାତରେ ପାନ ଥାଳିଆ ଧରି ସେ ତରୁ ଓ ବୋଉ ସହିତ ବାହାରକୁ ଗଲା ।

ଝିଅକୁ ଦେଖି ସମସ୍ତେ ପସନ୍ଦ କଲେ । ଦୁଇଘଣ୍ଟା କଥା ପରେ ମଥୁରାର ବାପ ମା ଭାରି ଖୁସି ହେଲେ । କିନ୍ତୁ ଯେମିତି ମୁଦି ପିନ୍ଧାଇବାକୁ ଗଲେ ବାସନ୍ତୀ ହଟିଗଲା । ବରର ମା ତା'କୁ ଭୁଲ ବୁଝିଲା ନାହିଁ । ସେ କହିଲା—"ଝିଅ କାହିଁକି କାନ୍ଦୁଛୁ ! କୁମାରୀ ଆଉ ବନ୍ଦୀ ମହୁମାଛି ଏକା । ଦିନେ ନା ଦିନେ ତ ପରଘରକୁ ଯିବାକୁ ପଡ଼ିବ । ଆଉ ଦୁଇଦିନ ପରେ ଆମେ କଣ ତୋର ନିଜର ନହେବୁ !"

ବାସନ୍ତୀ ଭିତରକୁ ଚାଲିଗଲା । ଭିତରୁ ସେ ବରର ବାପ କହିବାର ଶୁଣିଲା—ମୋତେ ଦୁଇମାସ ତଳେ ଖବର ମିଳିଲା ଯେ ତୁମର ଭଉଣୀଟିଏ ଅଛି । ସତରେ କହିବି । ଯା'ର ଝିଅ ତାର ବିବାହ । ମଥୁରା ପାଇଁ ଯେ କେତେ ଯାଗାରେ ଝିଅ ଦେଖିଲି··· ।"

## ବାର

ଧନଞ୍ଜୟ ଆଗରୁ କିଛି ଖବର ପାଇ ନ ଥିଲା । ଗତ ସପ୍ତାହେ ହେଲା ସେ ବେମାରି ଲୋକଙ୍କ ଚିକିତ୍ସାରେ ବ୍ୟସ୍ତ ଥିଲା । ବର୍ଷା ଆରମ୍ଭରେ ଖୁବ୍ ବେଶି ବର୍ଷା ହେଲା । ସୋନାଇର ପାଣି ଉଛୁଳି ନ ଥିଲେ ମଧ ନାଳ, ପୋଖରୀ, ବିଲ, ପଡ଼ିଆ

ସବୁ ପାଣିରେ ଭର୍ତ୍ତି ହୋଇଗଲା । ସୋନାଇପଶିଆଁ ଲୋକଙ୍କର ମାଛ ଧରିବାର ପାଳି ଆସିଲା । ଖେପାଜାଲ ପକାଇ ମାଛ ଧରିଲେ । ମୁଗୁରୁ ବସେଇ କଇ, ମାଗୁର ମାଛ ଧରିଲେ । କିନ୍ତୁ ଯେତେବେଳେ ପାଣି ଶୁଖିବାକୁ ଆରମ୍ଭ କଲା ସୋନାଇପଶିଆ ଲୋକେ ବଡ଼ କଷ୍ଟ ପାଇଲେ । ପୋକ ଯୋକ ମରି ଚାରିଆଡ଼େ ଦୁର୍ଗନ୍ଧମୟ ହେଲା । ପଶୁ ସଢ଼ା ମାଛର ଦୁର୍ଗନ୍ଧ ଆଉ ପଶୁ ଆବର୍ଜନାର ଦୁର୍ଗନ୍ଧ ସୋନାଇପଶିଆର ବାୟୁ ମଣ୍ଡଳକୁ ବିଷାକ୍ତ କରିଦେଲା । ମଶାମାଛି ଆଉ ପୋକଙ୍କ ରାଜତ୍ୱ ହେଲା । ବେମାରି ବଢ଼ିଲା । ସନ୍ନିପାତ ଆସିଲା । ପାଲଜର ମଧ୍ୟ ହେଲା । ହଇଜାରେ ଗୋଟିଏ ଗୋଟିଏ ଗାଁ ଅଣି ଉଠିଲା । ଉତ୍ତରପାରି ଅଞ୍ଚଳରେ ଲୋକଙ୍କ ଜୀବନ ଯେମିତି ସାରୁ ପତ୍ରରେ ପାଣିପରି ହେଲା ।

ଧନଞ୍ଜୟ ଅଞ୍ଚଳର ଦୁର୍ଯୋଗରେ ସହାୟ୍ୟ କରିବାକୁ ପାରୁପର୍ଯ୍ୟନ୍ତ ଲାଗିଲା । ବାସନ୍ତୀର ଖବର ଦେବାକୁ ତା' ପାଖରେ ସମୟ ନ ଥିଲା । ସେ ଈଶ୍ୱରଙ୍କ ଉପରେ ବିଶ୍ୱାସ ରଖେ । ଉତ୍ତର ଲକ୍ଷ୍ମୀପୁରଠେ ଭୂମିକମ୍ପ ହେଲାବେଳେ, ସାକ୍ଷାତ ଯୋଗୀଙ୍କ ପରି ସେ ମଧ୍ୟ ଭାବିଲା ଯେ ଦରିଦ୍ର ନାରାୟଣଙ୍କ ସେବା ମଧ୍ୟରେ ପ୍ରକୃତ ନାରାୟଣଙ୍କ ସନ୍ଧାନ ମିଳିପାରେ । କିନ୍ତୁ କାହା ମୁହଁରୁ ବାସନ୍ତୀର ସବୁକଥା ଶୁଣି ଶୀଘ୍ର ପ୍ରପୀଡ଼ିତ ଗଛପରି ସେ ନିଶ୍ଚଳ ହୋଇଗଲା । ତା'ର ଧ୍ୟାନ, ଧାରଣା ଆଉ ସେବାରେ ଅଦମ୍ୟ ଉତ୍ସାହ ଓଲଟିଗଲା । ବସୁନ୍ଧରା ଆଜି ଦେବଗରେ ହଇଜା ନିଜାକାମ ସାରି ବର୍ତ୍ତମାନ ଶାନ୍ତ । କୁଞ୍ଜୀରେ କେବଳ ଗୁରେଟି ବେମାରି । ଅବଶ୍ୟ ନୂଆଲୋକେ ଆକ୍ରାନ୍ତ ହେଲେ ନାହିଁ । ବାସନ୍ତୀ କଥା ଶୁଣି ସେ ହତାଶ ହୋଇ ତା' କଥା ଆଉ ବେଶି ଭାବିଲା ନାହିଁ । ତା'ର ଭଙ୍ଗା ହୃଦୟକୁ ଏମିତି ଲାଗିଲା ଯେ, ସେ ଭାବିଲା ଯେପରି ଅନ୍ୟଙ୍କ ପରି ସେ ମଧ୍ୟ ଅକ୍ଷମ । ତା'ର ହୋମିଓପାଥି ଜ୍ଞାନ ଆଉ ଆୟୁର୍ବେଦର ସାମାନ୍ୟ ଶିକ୍ଷା ମହାମାରୀର ପ୍ରତିକାର ପାଇଁ ସମ୍ପୂର୍ଣ୍ଣ ବ୍ୟର୍ଥ । ସେ କେବଳ ଚେଷ୍ଟା କରି, ଉପକାର କରି, ଆତ୍ମ-ସନ୍ତୁଷ୍ଟ ପାଇପାରେ । କାଳସର୍ପରୂପୀ ମହାମାରୀର ବିଷଦାନ୍ତ ଉପାଡ଼ି ହେବନାହିଁ । ସେ ମଧ୍ୟ ଆଉ କିଛି କାମ କରିପାରିଲା ନାହିଁ । ପକ୍କା ରାସ୍ତାରେ ସ୍କୁଲୁଥିବା ଦକ୍ଷିଣପାରି ଲୋକଙ୍କ ଉପରେ, ମୋରପୁର ଆଉ ଦରିଙ୍ଗିସ୍କୁଲ ମଣିଷଙ୍କ ଉପରେ—ନୂତନ ପରିସ୍ଥିତି ନମ୍ବୁରୁ ଭାବରେ କରିଥିବା ନୈତିକ ସ୍ଖଳନ ଆଉ ମାନସିକ କୁଟିଳତାକୁ ତା' ପରି ମଣିଷ ଶେଷ କରି ପାରିବନାହିଁ । ସମସ୍ତ ଆଉ ଆକସ୍ମିକ ସୁବିଧାରେ ଅହଙ୍କାରୀ, ସ୍ୱାର୍ଥପର ଓ ସୁବିଧାବାଦୀ ହୋଇଯାଇଥିବା ଆଜିର ଧନୀମାନଙ୍କ ଭୋଗରାମକୁ ପୁଣିଥରେ ପୂର୍ବର ଭୋଗରାମ ସେ କରି ପାରିବ ନାହିଁ ।

ବାସନ୍ତୀ ପ୍ରତି ତା'ର କ୍ରୋଧ କି ଅଭିମାନ ହେଲାନି । ବାରି ବାରି ଗୋଟିଏ କଥା ତା' ମନକୁ ଆସିଲା—ଶେଷରେ ପାଉଣ୍ଟିଲା ସେ ସ୍ତ୍ରୀଭାବ ? କେଉଁ ଖରାଦିନରେ ହଠାତ୍ ଦଲଙ୍ଗ ଘାଟ ଉପରେ କାଠପୋଲ ହେବ । ଗଡ଼କପ୍ତାନୀ ଝାଞ୍ଜଘର ରାସ୍ତା ସୋନାଇର ଉତ୍ତର ପାରିର ଗାଁକୁ ସବୁ ଛୁଇଁବ । ସେତେବେଳେ ମଣିଷ ସବୁ ଆହୁରି ଜଟିଳ ହୋଇ ପଡ଼ିବେ । ସେତେବେଳେ ହୁଏତ କାହାରିକୁ ସନ୍ତୁଷ୍ଟ କରି ହେବନି । ବେପରୁଆ ଭାବ ଏହି ମଣିଷଙ୍କ ମନରୁ ମରମ ସ୍ନେହକୁ ବିଦା କରିଦେବ !

ଜୀବନରେ ଯେଉଁ ଯୁବତୀକୁ ଆପଣାର କରିଥିଲା ଯାହାକୁ ନେଇ ଗୋଟିଏ ଶ୍ରେଷ୍ଠ ସଂସାରର ନୀଡ଼ ରଚନା କରିବ ବୋଲି ଭାବିଥିଲା, ଯାର ମଧୁର ଭାବନା ଚିରବସନ୍ତର କୋଇଲି ଓ କେତକୀ ପରି ହୋଇଥିଲା—ସେଇ ବାସନ୍ତୀ ଯେ ପରର ହୋଇଯିବ ସେହି ଚିନ୍ତା ଦିନର ଆଲୋକରେ ତାକୁ ଅଧୀର କରେନା—କରେ ରାତିରେ ନିବିଡ଼ ଅନ୍ଧକାରରେ । ରାତିର ଅନ୍ଧକାରକୁ ପ୍ରକଟ କରିବା ବିଜୁଳୀ, ରାତିର ନିସ୍ତବ୍ଧତାକୁ ଗମ୍ଭୀର କରିବା ନିଶାର ଡାକ ଜୀବନକୁ ଅଧିକ ଭୟଙ୍କର ଉପଲବ୍ଧି ଦିଏ । ଆଉ ମନକୁ ଅସ୍ଥିର କରିବାକୁ ବେଙ୍ଗର ଡାକ ତାକୁ ବେଶି ଅସହ୍ୟ କରିଦିଏ । ସେ ବହୁତ ଭାବିଲା । ବିଛଣା ଯେପରି ତା'କୁ କଣ୍ଟା ଲାଗିଲା । ସାରାରାତି କଡ଼ ଲେଉଟାଇଲା । ବାସନ୍ତୀ ତା' ସହିତ ବିଶ୍ୱାସଘାତକତା କରିଛି—ଏ କଥା ସେ ଆଦୌ ଭାବିପାରିଲା ନାହିଁ । ଆଖି ଆଗରେ ଭାସି ଉଠିଲା ତା'ର ଛବି ଏବଂ ତା'ର ମନ ପ୍ରସନ୍ନ ହେଲା । ସାରାରାତି ଭାବିସାରିଲା ପରେ, ଭାବିବା କଥା ବେଶି ଉପଯୁକ୍ତ ବୋଲି ମନେ ହେଲା । ଅନ୍ଧାର ରାତି ନିତାନ୍ତ ଗୋପନ ଆବେଗ, ଅସ୍ପଷ୍ଟ ଚିନ୍ତାକୁ ଆକୁଳ ଦିଏ । ଚିନ୍ତାହିଁ ରକ୍ତ ମାଂସର ରୂପ ନିଏ । କିନ୍ତୁ ରାତି ପାହିଲାବେଳେ ସେହି ସବୁ ଚିନ୍ତା ବିନ୍ଦୁ ପରି ମିଳେଇଯାଏ । ଖରା ପଡ଼ିଲେ ଚିନ୍ତା ବାଷ୍ପପରି ଉଡ଼ିଯାଏ । ଉଷାର ପ୍ରଥମ କୋମଳ କିରଣ ଧନଞ୍ଜୟ ମନକୁ ସଜୀବ କରିଲା । ତା'ର ସିଦ୍ଧାନ୍ତ ରାତିର ବିଚାର ପରି ସ୍ପଷ୍ଟ ଆଉ ସ୍ୱତନ୍ତ୍ର । ଦିନର ବାସ୍ତବିକତା, ରାତିର ଧାରଣାକୁ ବାଷ୍ପ କରି ପାରିଲାନାହିଁ । ସେ ଦୃଢ଼ ପ୍ରତିଜ୍ଞା କଲା । ଆଜି ସେ ସବୁକଥା ରୂପକ ବୁଢ଼ୀକୁ କହିବ । ତା ହାତରେ ବାସନ୍ତୀକୁ ଚିଠି ଖଣ୍ଡିଏ ଦେବ । ଦିନେ ସୁବିଧା ଦେଖି ସେ ଠୁନୁଆ ଘାଟରୁ ତାକୁ ନେଇ ଆସିବ । ଆଜି ଖିଅନ୍ନ ହୋଇ ଭଲ ଲୁଗା ପିନ୍ଧିଲା । ବୁଲିଲା ରୂପକ ବୁଢ଼ୀ ଘରକୁ । ଶେଷଥର ପାଇଁ ନିଜକୁ ପ୍ରଶ୍ନକଲା ଯେ ତା'କୁ ନେଇ ଆସିଲେ ନିଜର ଅପଯଶ ହେବକି ? ଯୁକ୍ତିରେ ସେ ନିଜର ଉତ୍ତର ପାଇଲା—ଏ ଅଞ୍ଚଳରେ ଝିଅକୁ ଘିଚି ନେଇଯିବା ଅତି ସ୍ୱାଭାବିକ କଥା । ସେଥିରେ ପୌରୁଷ ଫୁଟିଛି,

ପ୍ରେମର ଜସ୍ନା ଫୁଟେ । ଅଜଣା ମାଦକତା ଥାଏ । ଏ ଅଞ୍ଚଳରେ ଯେଉଁମାନେ ଏକାଧିକ ସ୍ତ୍ରୀ କରନ୍ତି ସେମାନଙ୍କର ଅପଯଶ ଅଛି । ଏଠି କୌଣସି ବିଧବା ମା'ର ଏକମାତ୍ର ଝିଅ ଘରୁ ପଳେଇଗଲେ, ଝିଅ ନ ଥିବାରୁ ଘର ଆଉ ମନକୁ କେମିତି କେମିତି ଲାଗୁଛି ବୋଲି ଦୁଃଖ କରନ୍ତି । ସେଥିପାଇଁ ମା'କୁ ଛାଡ଼ି ପଳେଇଲେ, ଯୌବନର ଧର୍ମ ରକ୍ଷା କରିଛି ବୋଲି ଭାବନ୍ତି । ସେଥିପାଇଁ ବହୁତରେ ଆଉ ଭାବନାରେ ଏମିତି ଘଟଣା ଘଟିଥାଏ । ଏହିସବୁ ଘଟଣା ପାଇଁ କିଛି ବିଶୃଙ୍ଖଳା ବା ଚର୍ଚ୍ଚା ମଧ୍ୟନାହିଁ । ଏ ସୋନାଇପଲ୍ଲୀଆର ମାଛି ଉମ୍ଫ ଦେଖିପରି ସମସ୍ତ ସାପେକ୍ଷ ଆଉ ସ୍ୱାଭାବିକ । ଧନଞ୍ଜୟର ଦୃଢ଼ଧାରଣା ଯେ ବାସନ୍ତୀକୁ ନେଇ ଆସିଲେ ମଣିଷଙ୍କ ଶ୍ରଦ୍ଧା କମିବ ନାହିଁ । ତାଙ୍କ ଉପରେ ପ୍ରଭାବ କମିବ ନାହିଁ । ବରଂ ଏହା କରିଲେ ଖୋରଗାମର ଅହଙ୍କାର ଆଉ ମର୍ଯ୍ୟାଦାବୋଧ ଖର୍ବ ହେବାରେ ବେଶି ଲୋକ ଭଲ ପାଇବେ । ଆଉ ମଣିଷ କଣ ଭାବିବେ ? ନିଜ ମନର ସ୍ୱାଧୀନତା ରହିବ ? ଲୋକେ କଣ ଭାବିବେ ବୋଲି ଯେ କିଛି କରେନା, ଯେପରି ମଣିଷ କେବେହେଲେ ସୁଖିହୋଇ ପାରିବନି । ପରିସ୍ଥିତି ତାକୁ ଆତ୍ମ-ଏକାନ୍ତିକ କରିଛି । ସେ ନିଜର ଦର୍ଶନ ଭାବି ନେଇଛି । ଭାବିଛି —ମୋତେ କେହି ଭଲ ପାଇବା ଦରକାର ନାହିଁ । କେହି ଶ୍ରଦ୍ଧା ମଧ୍ୟ କରିବା ଦରକାର ନାହିଁ । କେହି ମୋତେ ଗୁରୁତ୍ୱ ଦେବା ଦରକାର ନାହିଁ କି ମୁଁ କାହାକୁ ଗୁରୁତ୍ୱ ଦେବିନାହିଁ । ବାସ୍, ଏଇଆ । କିନ୍ତୁ ମୋର ବାସନ୍ତୀ ଦରକାର । ବାସନ୍ତୀକୁ କେନ୍ଦ୍ରକରି ଯେ ଭବିଷ୍ୟତ ଗଢ଼ି ଉଠିବ ସେହି ଭବିଷ୍ୟତକୁ ବାଧା ଦେବାକୁ କାହାରର ଅଧିକାର ନାହିଁ । ମାନ-ସମ୍ମାନର, ମାନଦଣ୍ଡର, ଅପଯଶ ଚେତନାର ବା ଆଉ ଯେ କୌଣସି ଶକ୍ତିର ଅଧିକାର ନାହିଁ ।

ରୂପକ ବୁଢ଼ୀକୁ ସେ ସବୁକଥା କହିଲା । ବୁଢ଼ୀ ଆଶ୍ଚର୍ଯ୍ୟ ହୋଇ ପଚାରିଲା—' ପୁଅ ଧନ !" ଶେଷରେ ତୁ ମଧ୍ୟ... " ସେ କହିଲା—"ସତ କଥା ଭଉଣୀ, ମୁଁ ଏହା କରିବାକୁ ବାଧ୍ୟ ହେଲି । କାରଣ ବାସନ୍ତୀର ସାରା ଜୀବନ ଦୁଃଖରେ କଟିବ । ଆଉ ମୁଁ ମଧ୍ୟ ରହିପାରିବି ନି ।"

ଧନଞ୍ଜୟର ସଜଳ ଆଖିରୁ, ବୁଢ଼ୀକୁ ଦୁଃଖର ଆଭାସ ମିଳିଲା, କହିଲା—"କିନ୍ତୁ, ତୋପରି ପିଲାକୁ କଣ ଏମିତି ଝିଅ ଆଣିବାକୁ ହେବ ? ଲୋକେ ଦେଖି ଆଉ ଶୁଣି 'ହରି ହରି" କହିବେ ।

ହଁ, କିଛିଦିନ ପାଇଁ ଲୋକେ ଆଶ୍ଚର୍ଯ୍ୟ ହେବେ । କିନ୍ତୁ ଭଉଣୀ ଲୋକଙ୍କର ମନେ ରଖିବାର ଶକ୍ତି ଖୁବ୍ କମ । ଖୁବ୍ ଶୀଘ୍ର ମୁଁ ପୁଣି ଧନଞ୍ଜୟ ହୋଇଯିବି । କିନ୍ତୁ ବର୍ତ୍ତମାନ

ଯଦି ସମ୍ମାନ ଆଉ ଶ୍ରଦ୍ଧାକୁ ଜାବୁଡ଼ି ଧରି ବସି ରହିବ, ହେଇ ଭୁଲ ମୋର ସାରା ଜୀବନକୁ ନଷ୍ଟ କରିଦେବ । ମୁଁ ଗୋଟିଏ ସାଧାରଣ ମଣିଷ । ଏଠିରହି ମୁଁ ଏଠାକାର ମଣିଷ ହୋଇଛି । ଲୋକେ ମୋତେ ଅତି ଉଚ୍ଚସ୍ଥାନ ଦେଇ ଖୁବ୍ ଦୋଷ କରିଛନ୍ତି । ମୋତେ ଲୋକେ ବଡ଼ ଭାବନ୍ତି । ଏହା ମୋପ୍ରତି କଷ୍ଟର କାରଣ ହୋଇଛି । କେବଳ ଈଶ୍ବରହିଁ ସବୁଗୁଣରେ ପରିପୂର୍ଣ୍ଣ । ମଣିଷ ସେମିତି ହୋଇ ପାରିବନି ।”

ବୁଢ଼ୀ ବିଶେଷ କିଛି ବୁଝି ପାରିଲା ନାହିଁ । କହିଲା ପୁଅଧନ, ଆଉଥରେ ଭାବି ଦେଖ । ବୟସ କମ, ସେଥିପାଇଁ ଭାବୁଛୁ ତୋର ବୋଧହୁଏ ଭୁଲ ହୋଇଛି ।

ଧନଞ୍ଜୟ ଜୋରରେ କହିଲା, “ମୁଁ କେବେ ହେଲେ ଭାବି ପାରିବନି ଯେ ମୁଁ ଭୁଲ କରିଛି । ତୁ ମଧ୍ୟ ଭାବି ଦେଖ ଭଉଣି—ନିଜ ଇଚ୍ଛା ବିରୁଦ୍ଧରେ ଯଦି ବାଧାବିଘ୍ନ ଉପୁଜେ ତେବେ ସେ ବାଧା ବିଘ୍ନ ଦୂର କରିବା ମଣିଷର ଅଧିକାର । ସେଥିପାଇଁ ଲଢ଼ିବାକୁ ବି ଅଧିକାର ମଣିଷର ଅଛି । ବାସନ୍ତୀକୁ ପାଇବାକୁ ବହୁତ ବାଧା । ତା’କୁ ତାଘରୁ ତ ମୁଁ ଡାକିଆଣି ପାରିବିନି । ସେଥିପାଇଁ ତାକୁ ଏମିତି ଭାବରେ ଆଣିବାର ଅଧିକାର ମୋର ଅଛି । ଆଉ ଝିଅର ମନ ମୁଁ ପାଇଛି । ଯେଉଁ ଝିଅ ମୋତେ ପ୍ରଥମ ପ୍ରେମ ଶିଖାଇଲା ସେ ଝିଅକୁ ଏମିତି ଘରକୁ ଆଣିବାର ମୋର କଣ ଅଧିକାର ନାହିଁ ? ଆଉ ବାସନ୍ତୀକୁ ଏମିତି ଆଣିଲେ ତାକୁ ଉଦ୍ଧାର କରିହେବ । ଯଦି ନ ଆଣେ ତେବେ ତା ପ୍ରତି ମୁଁ ପ୍ରବଞ୍ଚନା କଲି । ସ୍ତ୍ରୀ ଦୁର୍ବଳ । ପରିସ୍ଥିତିରେ ତା’ ମନ ଆହୁରି ଦୁର୍ବଳ ହୋଇଯାଏ । ସ୍ତ୍ରୀ ଏକୁଟିଆ ବାଧାବିଘ୍ନର ସମ୍ମୁଖୀନ ହୋଇ-ପାରେନା । ବିପଦର ସ୍ରୋତରେ ଭାସିଯାଏ ।

ମନର ଆବେଗରେ ବକ୍ତୃତା ପରି ଆହୁରି ଅନେକ କିଛି କହିଗଲା । ରୂପକ ବୁଢ଼ୀ ମନ ଏଥର ମାନିଲା । ପାକୁଆ ପାଟିରେ ଅଳ୍ପ ହସିବାରୁ ମୁହଁଟା ଉଜ୍ଜ୍ୱଳ ହେଲା । ଧନଞ୍ଜୟର ମନେ ହେଲା—ଯେମିତି ଦାନ୍ତ ନଥିଲା ପିଲା ହସୁଛି । ଏହା ଦେଖି ତାକୁ ସାନ୍ତ୍ୱନା ମିଳିଲା । ବୁଢ଼ୀ ମଜାକରି କହିଲା—“ସତ କଥା, ସ୍ତ୍ରୀ ମାୟା କଲେ ଜଟାଧାରୀ ଶିବଙ୍କର ମଧ୍ୟ ଧ୍ୟାନଭଙ୍ଗ ହୁଏ । ତୁ ସତକଥା କହୁଛୁ । ଏ ଭୋଗରାମ ହେଲା ସାକ୍ଷାତ୍ ରୁକ୍ମବୀର । ଭାଓନାରେ (ଯାତ୍ରା) ରୁକ୍ମବୀର ଦର୍ପ ଦେଖିନୁ ? ତା’ ନହେଲେ କ’ଣ ଭଗବାନ କୃଷ୍ଣ ନିରୁପାୟ ହୋଇ ରୁକ୍ମିଣୀ ଯେମାକୁ ନେଇ ପଳାଇଥାନ୍ତେ ?”

ଏକଥା ଶୁଣି ଧନଞ୍ଜୟର ଆଉ ଦୁଇଜଣ ପୁରୁଷ ଆଉ ଦୁଇଟି ନାରୀ କଥା ମନକୁ ଆସିଲା । ଏମାନେ ବହିର ପୃଷ୍ଠାରେ ରକ୍ତ, ମାଂସ, ଆଶା, ଆକାଂକ୍ଷା ଏବଂ କାମନା

ବାସନାରେ ପୁରୁଷ ଓ ନାରୀ । ଶାଶ୍ବତ ବସୁଧା ଯୁଗଯୁଗ ଧରି ସେମାନଙ୍କୁ ମାଟିର ସ୍ବପ୍ନ ଆଉ ଫୁଲର ସୌରଭ ପ୍ରଦାନ କରନ୍ତି । ସେମାନେ ହେଲେ ଉଷା, ଅନିରୁଦ୍ଧ, ସୁଭଦ୍ରା, ଅର୍ଜୁନ ଓ ଆହୁରି କେତେ । ରୁପନ ବୁଢ଼ୀ ଧନଞ୍ଜୟ କହିବା ଅନୁସାରେ କାମ କରିବାକୁ ରାଜି ହେଲା । ବୁଢ଼ୀଠାରୁ ବିଦାୟ ନେଲାବେଳେ ଧନଂଜୟ କହିଲା— "ବର୍ତ୍ତମାନ ବି ଯଦି ତୁ ଭାବୁ ଯେ ମୁଁ ଭୁଲ କରିଛି, ତା' ହେଲେ ମୋର କିଛି ଆଉ କହିବାର ନାହିଁ । ପ୍ରତି ମଣିଷର ଭୁଲ ଆଉ ଠିକ୍ ଅଛି । ଯେଉଁ ରାମଚନ୍ଦ୍ର, ପିତୃସତ୍ୟ ପାଳନ କରିବାକୁ ବନବାସୀ ହୋଇପାରନ୍ତି, ସେହି ରାମ ଲୁଚିକରି ବାଲୀକୁ ବଧ କଲେ । ଅକାରଣରେ ସୀତାଙ୍କୁ ବିସର୍ଜନ ଦେଇ ପାରିଲେ ।"

ବୁଢ଼ୀ ହସି କହିଲା, ଆଉ ବୁଝାଇବା ଦରକାର ନାହିଁ । ଏଇଟା ଯଦି ଭଲ, ତା' ହେଲେ ତିରିଶ କି ଚାଳିଶ ବର୍ଷ ଆଗରେ ମୁଁ ମଧ୍ୟ ଭୁଲ କରି ନଥିଲି । ଧନଂଜୟ ପଚାରିଲା—"କିଣ ଏକା କାରଣ ?" ରୁପନବୁଢ଼ୀ ସେମିତି ହଠାତ୍ ଧନଞ୍ଜୟ ଆଖିରେ ଯୁବତୀ ହୋଇଗଲା । ବୁଢ଼ୀର ଈଷତ୍ ସଲଜ୍ୟା ହସ ବସ୍ତୁସତ୍ତାକୁ ଯେମିତି କମେଇ-ଦେଲା । ଘରୁ ଗଲାବେଳେ ପଛରୁ ବୁଢ଼ୀ କହିଲା—ଏତ ଭାରି ଗୋପନୀୟ କଥା, କେହି ଜାଣିବେନି । ଆଚ୍ଛା ପୁଅ ଧନ, କାଲି ଯିବାକୁ ହେବ ?

ଧନଞ୍ଜୟ ଫାଟକ ପାଖରୁ କହିଲା—"ନାଁ ପଦ୍ମବଦନ । ମୁଁ ପୁଣି କାଲି ଆସିବି । ଏଠି ଦେଲେ ସେ ବିଶ୍ବାସ କରିବ ।" ଖୁସି ମନରେ ଧନଂଜୟ ଘରକୁ ଫେରିଲା ।

## ତେର

ବର୍ଷା ଦିନରେ ଦକ୍ଷିଣ ପାରିର ଲୋକେ ଉତ୍ତରପାରିକୁ ଯାନ୍ତି ନାହିଁ । କଥା ହେଲାଯେ, ନିହାତି ଜରୁରୀ ଅବସ୍ଥାରେ ଉତ୍ତରପାରିର ଲୋକେ ଦକ୍ଷିଣ ପାରିକୁ ଯାନ୍ତି । ସୋନାଇ ପାରହେବା ଖୁବ୍ ବିପଦ । ପୁରୁଣା ଘାଟିଆ ଗ୍ରେଟ ଡଙ୍ଗା ନେଇ ସୋନାଇର ଲହରୀରେ ଖେଳାଲେ ମଧ୍ଯ ଦକ୍ଷିଣ ପାରିର ଲୋକ ଉତ୍ତର ପାରିକୁ କମ୍ ଆସନ୍ତି । ମାଇପେ ତ ଆଦୌ ଆସନ୍ତି ନାହିଁ । କିନ୍ତୁ ରୁପନ ବୁଢ଼ୀ କଥା ଅଲଗା । ଘରେ ଘରେ ଏଣ୍ଡି ଆଉ କାଣ୍ଡିଆ କପଡ଼ା ବିକ୍ରୀ କରିବା ମାଇକିନା । ଏଇଟା ତା'ର ଖୁବ୍ ଭଲ ବ୍ୟବସାୟ । ଏହି ବ୍ୟବସାୟ କରି ସେ ଘରେ ଦୁଇ ଦୁଇଟା ଜବାନ୍ ଟୋକାଙ୍କର ଭରଣ ପୋଷଣ ଚଳାଏ । ନିଜେ ବି ଭଲରେ

ରୁହେ । ପୁରୁଷ ନଥିଲେ ସୁଦ୍ଧା ଘର ସୁରୁଖୁରୁରେ ଚାଲିଯାଏ । ବୁଢ଼ୀ ଛୋଟ ମୋଟ ବିପଦକୁ ଖାତିର କରେନା । ବେଶି ବର୍ଷାରେ ଯେ ସୋନାଇ କେମିତି ଭୟଙ୍କର ହୁଏ, କେତେ ନୌକା ବୁଡ଼ିବାର ଖବର ମିଳେ; କିନ୍ତୁ ବୁଢ଼ୀ ଏସବୁକୁ ଖାତିର କରେନା । ଦରକାର ପଡ଼ିଲେ ସେ ଛୋଟ ଡଙ୍ଗାରେ ସୋନାଇ ପାରହୁଏ । ଘାଟିଆ, ଡଙ୍ଗାବାଲା, ବଡ଼ଡଙ୍ଗାର ମାଲିକ ସମସ୍ତେ ତା'ର ପରିଚିତ । ନାଉରି ଯେତିକି ସାହସୀ ସେ ମଧ୍ୟ ସେତିକି ସାହସୀ । ସେ ଅନୁରୋଧ କଲେବି କୌଣସି ନାଉରି ସେପାରିକୁ ଯିବାକୁ ମନା କରନ୍ତି ନାହିଁ । ସେ ରୋଗ ବେମାରରେ ମରିବ କିନ୍ତୁ ପାଣିରେ ବୁଡ଼ି ନୁହେଁ । ସେ ପୁଣି ଭଲ ପ୍ରକାର ପହଁରି ଜାଣେ । ସମସ୍ତେ ଜାଣନ୍ତି, ସୋନାଇର ମାଛପରି ଏ ବୁଢ଼ୀ । ସୋନାଇର ଦୁଇ ପାରିରେ ଯେତେ ଲୋକ ଧନଞ୍ଜୟକୁ ଜାଣନ୍ତି, ସେତିକି ମଧ୍ୟ ରୂପକ ବୁଢ଼ୀକୁ ଜାଣନ୍ତି । କାରଣ ମାଲିପଙ୍କ ସାଙ୍ଗରେ ରୂପକ ବୁଢ଼ୀର ଯେମିତି ବସାଉଠା, ସେମିତି ପୁରୁଷଙ୍କ ସହିତ ଧନଞ୍ଜୟର ।

ପୁରା ଖରାବେଳେ ରୂପକ ବୁଢ଼ୀ ଖେଳରାମ ଘରକୁ ଆସିଲା । ଆଜିକାଲି ସ୍ଥାଙ୍କ ଘରକୁ ଆସିବାକୁ ସେ ଭଲ ପାଉନି । ଧନୀ ହେବାପରେ ଏମାନଙ୍କର ମତିଗତି ବଦଳି ଯାଇଛି । ଖେଳରାମ ଆଜିକାଲି ବଡ଼ ବଡ଼ କଥା କୁହେ, ଏଣ୍ଡି କପଡ଼ା କଥା କହିଲେ ସେ 'ଜର୍ଜେଟ' ବା 'ବାଏଲ' କଥା କହେ । ଆଜି କାମ ନଷ୍ଟ କରି ଆସିଲେ ସୁଦ୍ଧା ସେ ଆଗପରି ବ୍ୟବହାର କଲାନି । ଦୁଆରେ ପହଞ୍ଚି ଡାକିଲା, ଘରେ କେହି ଅଛନ୍ତି ? କୋଳରେ ଛୋଟ ପୁଅଟିକୁ ଧରି ଚରୁଲତା ବାହାରକୁ ଆସିଲା । କହିଲା—"ଆସ ଅପା ! ଆଜି ଆମ ଘରକୁ ଆସିବାକୁ ଆଜ ରାସ୍ତାରୁ କଣ୍ଟା କିଏ ଉଠେଇଲା ମ ?"

ଭିତରୁ ବାସନ୍ତୀ କହିଲା—"ରାସ୍ତା ଭୁଲି ଯାଇନାହିଁ ତ ?" ଛୋଟ ପିଢ଼ାରେ ବସି ରୂପକ ବୁଢ଼ୀ କହିଲା—"ତୁ ଯାହା କହୁନା କାହିଁକି ତୁମ ଘରକୁ ଆସିବାକୁ ଆଦୌ ଭଲ ଲାଗୁନି । ଧନୀ ହେବାପରେ ତୁମେ ସବୁ କେମିତି ବଦଳି ଯାଉଛ ।"

"ଏମିତି କ'ଣ କହୁଛ ଅପା । ଆମେ କଣ କାହାକୁ ଧରି ବାନ୍ଧି ପିଟୁଛୁ !"

"ଆଚ୍ଛା ! ତା' ହେଲେ ତୁମେ ସବୁ ଅନ୍ୟ ଆଗରେ ନମ୍ର ହେବାକୁ ଶିଖିଲଣି ?"

ଚରୁଲତା ଦୁଃଖରେ ଦୀର୍ଘଶ୍ୱାସ ଟାଣି କହିଲା—"ଅପା ! ତୁମକୁ କ'ଣ ନୂଆ କଥା କହିବି ? ପରିବାର ଧନୀ ହେଲେ ମର୍ଦ୍ଦଙ୍କ ପ୍ରତାପ ବଢ଼େ । ମାଇପେଟ ଯେମିତି ଥାଆନ୍ତି ସେମିତି ରୁହନ୍ତି ।"

"କଣ କହୁଲୁ ? ତୋ ମନରେ ବର୍ତ୍ତମାନ ମଧ୍ୟ ଦୁଃଖ ?"

"ହଁ, ଆଗେ ଖାଇବା ପିଇବା ଲୁଗାପଟା ସବୁଥିରେ ଅଭାବ ଥିଲେ ସୁଦ୍ଧା ମନର ସୁଖଥିଲା । ବର୍ତ୍ତମାନ ଭଲ ଖାଇପିନ୍ଧି ଲାଭ କଣ ? ମନଟା ଶୁଖି ଶୁଖି କାଠ ହୋଇ ଗଲାଣି ।"

ଏତେବେଳଯାଏ ବାସନ୍ତୀ ଖାଲି ବୁଢ଼ୀ ମୁହଁକୁ ଚାହିଁ ରହିଥିଲା । ସେ ଜାଣେ ଯେ ବୁଢ଼ୀଘର ପାଙ୍ଗିଶିଳରେ । ଯଦି ବୁଢ଼ୀ ମୁହଁରୁ ଧନଞ୍ଜୟ କଥା କିଛି ବାହାରେ, ଯଦି ନିଜେ ନିଜେ ସେ ନ କୁହେ ତେବେ ନିଜ ସରମ ଛାଡ଼ି ଭାଙ୍ଗି ଗଲାପରେ ସେ ନିଜେ ପଚାରିବ । ବିବାହ ହେଲାପରେ ସେ ପିଞ୍ଜରାର ଚଢ଼େଇପରି ଛଟପଟ ହେଉଛି । ରାତିରେ ସପନ ଦେଖୁଛି । କେବେ କେବେ ରାତିରେ ପେଚାଡ଼ାକଶୁଣି ଚମକି ଉଠି ବସେ । ଦେହଥରେ, ଛାତିକମ୍ପେ, ଜୀବନର ଦାରୁଣ ଅନିଶ୍ଚିତ ନେଇ ବନ୍ଧାଣପରି ଦିନ କଟାଉଛି । କିନ୍ତୁ ବର୍ତ୍ତମାନ ରୂପକ ବୁଢ଼ୀକୁ ଦେଖି କଣ ଗୋଟାଏ ଅଜଣା ଆଶାର ଝଲକ ଦେଖିଲା ।

ତରୁଲତା ସହିତ ବୁଢ଼ୀର କଥାବାର୍ତ୍ତା ଶୁଣି ଗୋପନ ଓ ଜଣଙ୍କର ଲକ୍ଷକରି ବାସନ୍ତୀ ଆପେ ଆପେ ସେଠୁ ଉଠିଗଲା । ଦେଖେଇ ଘରକୁ ଯାଇ, ଗୁଡ଼ାପାଣି ଚୁଲିରେ ବସେଇଲା । ଏଇ ସୁଯୋଗରେ ବୁଢ଼ୀ ପଚାରିଲା, "ମୋ ମତରେ ତୋର ତ ଦୁଃଖ ନ ରହିବା କଥା ! ସେ ମାରଧର କରୁଛି । ଶୁଣିଛି, ହଠାତ୍ ବଡ଼ଲୋକ ହେଲେ ଲୋକ ମଦ ପିଅନ୍ତି ।"

ତରୁଲତା ଆଖି ବଡ଼ ହୋଇଗଲା, କାନ ପାଖରେ ମୁହଁରଖି ସେ କହିଲା, ସେ ବଡ଼ ଲୋକ ହେଲା, ସ୍ନେହ ଶ୍ରଦ୍ଧା ସବୁ ଭୁଲିଗଲା । ମନ ତା ମଦ ନିଶାକୁ ଆସନ ଦେଲା । ଏତେବର୍ଷ ପରେ ମୁଁ ହେଲି ଖରାପ । ମୋତେ ଦେଖିଲେ, ତାକୁ ଅସୁନ୍ଦର ମନେ ହେଉଛି । ଘରର ସ୍ତ୍ରୀପ୍ରତି ତାର ମନ ଲାଗୁନାହିଁ । ଆଉ କାହା ଉପରେ ନଜର ପଡ଼ୁଛି ।

ବୁଢ଼ୀ କହିଲା, "ତା ହେଲେ ମୁଁ କଣ କରି ପାରିବି କହ ।"

ତରୁଲତା କହିଲା—"ଶୁଣିଲି ଯେ ଗୋସାଇଁବାବାର ମୁକୁଟ କୈବର୍ତ୍ତି ଅଣ୍ଟାରେ ବାନ୍ଧିବାକୁ ଡେଉଁରିଆ ଦିଏ ।"

"ହଁ—ମୁଁ ଶୁଣିଛି ।"

"ମୁଁ ତୁମ ଗୋଡ଼ଧରି କହୁଛି ଅପା, ରବିବାର ଆଗରୁ ସେ ଡେଉଁରିଆ ମୋତେ ଆଣିଦେବ । ଯାହା ଦାମ୍ ପଡ଼ିବ ମୁଁ ବର୍ତ୍ତମାନ ଦେଉଛି । ହେଲେ ତାକୁ ବାନ୍ଧିଲା ପରେ ଅବା ମୋ ପ୍ରତି ମନେହୁଏ । ଜାଣିଛ ଅପା, ସବୁ ପୁରୁଷ ଭ୍ରମର ।"

ତରୁଲତାର ଦୁଃଖ ବୁଝି ରୁପକ ବୁଢ଼ୀ କଥା ଦେଲା । ସେତିକବେଳେ ବୁଢ଼ୀ ଆଗରେ ତାଟିଏ ସୂତା ଆଣି ବାସନ୍ତୀ ରଖିଲା । ଆଉ ପାଖରେ ବସି ଗୁଆ କାଟିଲା । ତରୁଲତା କଥା ବଦଳେଇ ପଚାରିଲା—"ଅପା ଆଜିକାଲି କପଡ଼ା ଆଣୁନ ଯେ ?" ବୁଢ଼ୀ ଉତ୍ତର ଦେଲା ଏ ମାସରେ ଆଣିନ । ଲୋକଙ୍କ ଅବସ୍ଥା ଖରାପ ହେଲାଣି । କିଣିବା ଶକ୍ତିନାହିଁ ।

ପିଲାଏ କାନ୍ଦଲେ, ତରୁଲତା ବୁଢ଼ୀକୁ ବସିବାକୁ କହି ବୋଷେଇ ଘରକୁ ଗଲା । ବୁଢ଼ୀ ସହିତ ଏକା ରହିବାର ସୁଯୋଗ ବାସନ୍ତୀକୁ ମିଳିଲା । କିଛି ସମୟ ଦୁଇଜଣ ଚୁପ୍ ରହିଲେ । ଆଖିରେ କିନ୍ତୁ ଅନେକ କଥାର ଆଦାନ ପ୍ରଦାନ ହେଲା । ଶେଷରେ ବୁଢ଼ୀ କହିଲା—"ହୈଅ ଝାଣ୍ଟିଆ ପିଲା ତୁ କିନ୍ତୁ ଏମିତି ଶୁଖି ଯାଉଛୁ ? ତୋତେ ଦେଖି ଖୁବ୍ ମାୟା ଲାଗୁଛିରେ ! ତୁ ତ ମୁଣ୍ଡ ବି କୁଣ୍ଡାଉନୁ ।" ବାସନ୍ତୀ କିଛି କହିଲା ନାହିଁ । ମାଟିରେ ଚାଲୁଥିବା ପୋକକୁ ଚାହିଁ ରହିଲା । ରୁପକ ପଚାରିଲା—"ତୁ ପଢ଼ିଛାନ୍ତୁ ?" ବାସନ୍ତୀ କହିଲା—"ଚତୁର୍ଥ ଶ୍ରେଣୀ ଯାଏ ପଢ଼ିଛି ।"

"ବାସନ୍ତୀ ମୁଁ ସବୁ ଶୁଣିଛି । ତୁ ଭାବନା ଯେ ଧନଞ୍ଜୟ ସୁଖରେ ଅଛି । ତୋ ଠାରୁ ଜବାବ ନେବାକୁ ଆସିଛି । ନେ ଏ ଚିଠି । ଚିଠି ପଢ଼ । କାହାକୁ ନ ଦେଖେଇ ଚିରଦେବୁ ।"

ବାସନ୍ତୀର ଦୁଇ ଆଖିରେ ବନ୍ୟା ଖେଳିଗଲା । ସୂତାର କାନରେ ସେ ଆଖି ଢାଙ୍କିଲା । ଅନ୍ୟ ହାତରେ ଲୋତକ ପୋଛି ଆଗପରି ଦୃଢ଼ ହୋଇ ବସିଲା । ଦୁଇ ଚୋଟକରେ ସୂତା ଶେଷ କରି ଅସଂଲଗ୍ନ ଭାବରେ ରୁପକ ବୁଢ଼ୀ ଅସଲ କଥା ଆରମ୍ଭ କଲା ।

"ବାସନ୍ତୀ ! ଜୀବନରେ ସୁଯୋଗ ବଡ଼ କଥା । ସେ ତୋତେ ନେଇଯିବାକୁ ଚାହେଁ । ଏ ସୁଯୋଗ ଯଦି ହାତରୁ ଖସିଯାଏ, ସାରା ଜୀବନ ଭୋଗିବାକୁ ପଡ଼ିବ । ମନେରଖ, ଜୀବନରେ ସୁଯୋଗ ଥରେ ମାତ୍ର ଆସେ ।"

ବାସନ୍ତୀ କେବେ ଭାବିନଥିଲା ଯେ ସେ ଧନଞ୍ଜୟ ଏତେଦୂର ଯାଇପାରେ । ସେ ଆନନ୍ଦରେ ଆତ୍ମହରା ହୋଇଗଲା । କହିଲା—"କିନ୍ତୁ ତା'ର ତ ଏତେ ସମ୍ମାନ । ଲୋକେ ତାକୁ ଖୁବ ଭଲ ବୋଲି ଜାଣନ୍ତି ।"

ବୁଢ଼ୀ ଉତ୍ତର ଦେଲା, "ଲୋକଙ୍କ କଥାକୁ ଡରି ତୁ କଣ ସାରାଜୀବନ ପ୍ରତେଇବୁ ? ଧନଞ୍ଜୟ କଣ କହୁଛି ଜାଣୁ ? ଭଦ୍ରତା ଆଉ ଅନୁଶାସନ ମଣିଷକୁ ଅଳ୍ପ ପ୍ରାଣିରେ

ଜୀବନ୍ତ ମାଛ ମରି କରିଦିଏ । ଭଲକରି ବୁଝିବନି ବାସନ୍ତୀ । ପ୍ରେମ ନିୟମ ମାନେନା । ଆଉ ପ୍ରେମର ଉତ୍ତର ଦେବାକୁ ହେଲେ ବେନିୟମ କରିବାକୁ ପଡ଼େ । ପ୍ରେମ ବଣବୁଦା ପରି ବଢ଼େ । ଗ୍ରେଟ ମୋଟ ବଦନାମ ପ୍ରେମକୁ ଢୋଡ଼ିଲେଇ ପାରିବନି । ପଛ ହୁଲିଲେ ବରଗଛ ଯେମିତି ମହୁଗୁ ବଢ଼ାଏ ।”

ରୁପକ ବୁଢ଼ୀର ମନଭୁଲା କଥା ଶୁଣି ବାସନ୍ତୀର ପ୍ରେମଭରା ଆଖି ‘ଝଜାନ’ ମାଛପରି ଡେଇଁବାକୁ ଲାଗିଲା । ଭରା ବର୍ଷାରେ ସୋନାଇର ସ୍ରୋତ ପରି ସେ ହଠାତ୍ ଛନ୍ଦମୟୀ ଆଉ ଗତି ଚଞ୍ଚଳ ହୋଇ ଉଠିଲା । ଅବଶ୍ୟ ବୁଢ଼ୀ ଆଗରେ ଲାଜ ଭାବ ଦେଖାଇ ମୁହଁକୁ ଦୁଇ ହାତରେ ଘାଙ୍କି ଦେଲା । ଯିବ ବୋଲି ଗ୍ରେଟ ଶବ୍ଦରେ ଗୋଟିଏ ବଡ଼ କାମଲାଗି ତା’ର ପ୍ରସ୍ତୁତ କଥା ଜଣେଇ ଦେଲା । ବୁଢ଼ୀର ତା’ପ୍ରତି ଖୁବ୍ ମାୟା ହେଲା । ପାଖକୁ ଆସି ଅଲଗା ବାଳକୁ ସଜାଡ଼ୁ ସଜାଡ଼ୁ ବୁଢ଼ୀ କହିଲା— “ଶୁଣ ପାଇଁ ରବିବାର ଦିନ ଯେତେବେଳେ ଡେଉଁରିଆ ଆଣିବ ସେତେବେଳେ କହିବ । ସେହିଦିନ ରାତିରେ ଯେତେବେଳେ କୁକୁଡ଼ା ରାବ ଦେବ, ତୋତେ ଠାକୁଆ ଘାଟରେ ପହଞ୍ଚିବାକୁ ହେବ । ସେ ଆଉ ଯୋଗନା ଘାଟିଆ ଡଙ୍ଗା ନେଇ ତୋ ଅପେକ୍ଷାରେ ରହିବେ । ରାତି ଶେଷ ପହର ଗୁନ୍ଦନ ହେବ । ଅଲଟ ରାସ୍ତା ଯିବାକୁ ତୋତେ କଷ୍ଟ ହେବ ନାହିଁ । ଚିଠିରେ ସେସବୁ କିଛି ଲେଖିଛ ?”

ବାସନ୍ତୀ କହିଲା —“ତୁ ବରଂ ଡେଉଁରିଆ ଦେବାକୁ ଶନିବାର ଦିନ ଆସିବୁ । ରବିବାର ଦିନ ଆସିଲେ ଏମାନେ ସନ୍ଦେହ କରିପାରନ୍ତି ।”

“ବେଶ୍, ତୁ କହୁଛୁ ଯେତେବେଳେ ଡେଉଁରିଆ ଶନିବାର ଦିନ ଆଣିବି । ତା’ଛଡ଼ା ନବନ୍ଧ ମୁଦି ପିନ୍ଧିଥିବା ଝିଅକୁ ସହଜରେ କେହି ସନ୍ଦେହ କରିବେ ନାହିଁ । କିନ୍ତୁ ଗୋଟାଏ କଥା, ତୋତେ ମନ ଦୃଢ଼ କରିବାକୁ ହେବ । ବୁଝିଛୁ ବାସନ୍ତୀ, ଜଙ୍ଗଲ କାଟି ବାଲି କରିବା, ଆଉ ଘର ଗୁଣ୍ଡ଼ି କାହା ସହିତ ପଳେଇବା, ଏ ଦୁଇଟି କାମପାଇଁ ମନକୁ ଟାଣ କରିବା ଦରକାର । ଏସବୁ କଞ୍ଚା ମନର କାମ ନୁହେଁ ।”

ତରୁଲତା ପିଲା ଟେକିନିକ୍ ନେଇ ବିଛଣାରେ ଶୋଇଲା । ପାନ ଛେଚ ମାକୁ ଦେଇ ବାସନ୍ତୀ ନଈଘାଟକୁ ଗଲା । ସୋନାଇ ସେପାରିରେ ବାଉନ କଆଁର ମଝିରେ ଖଣ୍ଡେ ଦୁଇଖଣ୍ଡ ଡଙ୍ଗା ଯିବା ଭଳି ଦେଖାଗଲା । ଏ ପାରିରେ ଜଲଙ୍ଗ ଘାଟରେ ଦୁଇଟି ବଡ଼ ଡଙ୍ଗା ମଧ୍ୟ ଠିଆ । ସେ ଧୀରେ ଧୀରେ ବ୍ଲାଉଜ ଭିତରୁ ଚିଠିଟି ବାହାର କଲା । ଅକ୍ଷର ଦେଖି ତାକୁ ଅକ୍ଷର ବେଲି ବିଶ୍ୱାସ ହେଲାନି । ଯେପରି ଧନଂଜୟ ନିଜେ କଥା କହୁଛି, ସେ ମନେ ମନେ ପଢ଼ିଗଲା ।

"ସ୍ନେହର ବାସନ୍ତୀ, ମୁଁ ଜାଣେ, ତୁ ସ୍ୱପ୍ନରେ ସୁଦ୍ଧା ଭାବନ୍ତୁ ଯେ, ଘରର ଶାସନ ଶୃଙ୍ଖଳାରେ ବାନ୍ଧ ହୋଇ ତୁ ମୁଦ୍ଦ ପିନ୍ଧିଲୁ ବୋଲି, ମୁଁ ତୋତେ ଭୁଲ ବୁଝି ତୋଠାରୁ ଦୂରେଇ ଯାଉଛି । ତୋ ଉପରେ ମୋର ଖବ୍ ବିଶ୍ୱାସ ଅଛି । ମୁଁ ଖୁବ୍ ବ୍ୟାକୁଳ ହୋଇପଡ଼ିଛି । ବହୁତ ଭାବି ଠିକ୍ କଲି ଶେଷରେ । ମୁଁ ସୋନାଇପାରର ପ୍ରଚଳିତ, ହୁଏତ ତୁମ ଘର ଆଦବ କାଇଦାର ବିପରୀତ, ସହଜ ଉପାୟଟି ବାଛି-ନେଲି । ଅନ୍ୟର ମତାମତ ନେଇ ଚଳିଲେ, ନିଜ ଇଚ୍ଛାକୁ ନିରୋଧ କରିବାକୁ ହେବ । କିନ୍ତୁ ବର୍ତ୍ତମାନ ତ ସମୟ ନାହିଁ । ସେଥିପାଇଁ ତୁମ ପରିବାରରେ ଯାହା ନ ଘଟିଛି, ତାହାହିଁ କରିବାକୁ ପଡ଼ିବ । ରାତିଶେଷରେ ଯେତେବେଳେ ଜହ୍ନ ଉଇଁବ ରବିବାର ରାତିରେ ଯୋଗ ନାଉଟି ସହିତ ତୁମରି ଘାଟରେ ଡଙ୍ଗାନେଇ ଅପେକ୍ଷା କରିବି । ତୁ କୁକୁଡ଼ାର ପ୍ରଥମ ଡାକ ଶୁଣିଲା ମାତ୍ରକେ ବାହାରି ଆସିବୁ । ଅବଶ୍ୟ ଅଧଘଣ୍ଟା ଡେରି-ହେଲେ କୌଣସି ଚିନ୍ତାନାହିଁ । ମୁଁ ଜାଣେ ନିଜଘର, ବୁଢ଼ୀବୋଉ ଓ ଅନ୍ୟମାନଙ୍କୁ ଛାଡ଼ି ଆସିବାକୁ ତୋତେ ଭାରି କଷ୍ଟ ହେବ,...କିନ୍ତୁ ମୁଁ କଣ ପର ? ଆଉ କିଛି ଲେଖିବିନି । ରୂପକବୁଢ଼ୀ ବୋଧହୁଏ ସବୁ କହିଛି । ବୁଢ଼ୀକୁ କଥା ଦେବୁ ବୋଲି ମୁଁ ଆଗରୁ ଧରିନେଇଛି ।

ଶେଷରେ ବହୁତ ପ୍ରେମ...ଚିନ୍ତା କରି ବାକ୍ୟର ଖାଲିସ୍ଥାନ ପୂରଣ କରିବୁ ।"

ତୋର ଧନଂଜୟ ।"

ଚିଠି ପଢ଼ି ବାସନ୍ତୀର ମନ ଉତ୍ତଳା ହେଲା । ଦୂରପାଖରେ 'ବାଲିମାଙ୍କି' 'ସଖିମଣ୍ଟା' ଆଉ ଗଙ୍ଗା ଚିଲର ଡାକରେ କେତେ ନୂତନ ସ୍ୱର ଶୁଣିଲା । ଖରସ୍ରୋତା ସୋନାଇର କଳକଳ ଶବ୍ଦ ତା ମନରେ ମଧ୍ୟ ପ୍ରତିଧ୍ୱନିତ ହେଲା । ଦୂରର ବାଲିଧାନଚରେ ଖେତ ଆଉ ତାର ଶ୍ୟାମଳିମା ତା'ମନର ଶ୍ୟାମଳିମା ସହିତ ମିଶିଗଲା । ସେହି ସବୁଜ ପଛଭୂମି ସେ ସୋନାଇର ସ୍ରୋତରେ ନିଜକୁ ଯେମିତି ଦେଖିବାକୁ ପାଇଲା । ସୋନାଇ ଯେପରି ତରଳ ସୁନା ଆଉ ରୁପାର ପ୍ରବାହ । ତା'ର ନିଶ୍ୱାସ ପ୍ରଖର ହେଲା । ରୂପକ କହିଥିଲା—ଯେ ଚିଠି ପଢ଼ିସାରିଲା ପରେ ଚିରି ଦେବାକୁ । କିନ୍ତୁ ଧନଞ୍ଜୟର ଚିଠିକୁ ସେ ଚିରିପାରିଲାନାହିଁ । ଏଇଟାଇ ହେଲା ଧନଞ୍ଜୟର ପ୍ରଥମ ଚିଠି, ହୁଏତ ଏହା ମଧ୍ୟ ଶେଷ । କାରଣ ତା' ସହିତ ଗଲେ ଆଉବା ଚିଠିର କଣ ପ୍ରୟୋଜନ । ସେଥିପାଇଁ ସେ ଏହି ଚିଠିକୁ ଖୁବ୍ ଆଦରରେ ଆଉ ଗୋପନରେ ରଖିବ । ଯେତେବେଳେ ଗୃହିଣୀ ହୋଇ ଦୁଇଗୋଟି ପିଲାର ମା ହେଲାପରେ ସୁଦ୍ଧା ତାର ଯୌବନର ଶେଷ ମୁହୂର୍ତ୍ତରେ ମଧ୍ୟ ଗୋପନରେ ରଖିଥିବା ଏଇ ଚିଠିଟି ତାକୁ

ଦେଖାଇ କହିବ—"ଦେଖ, ତୁମେ ସୋନାଇ ସେ ପାଖରୁ କେମିତି ଚିଠି ଲେଖିଥିଲ ! ମୁଁ ତୁମ ମନକୁ କେମିତି ଲୁଟି ନେଇଥିଲି । ସେତେବେଳେ ତା ହୃଦୟରେ ବେଶି ଭଲପାଇବା ଢେଉ ଉଠିବ ।" ସେତେବେଳେ ସେ ବାପର ଗାମ୍ଭୀର୍ଯ୍ୟ ଆଉ ସ୍ୱାମୀର ଦାୟିତ୍ୱରେ କହିବ—"ପାଗଳୀ ମନେ ହେଉଛି, ତୁ ଦିନକୁ ଦିନ ଯୁବତୀ ହୋଇଯାଉଛୁ ।" ଏହା କହି ସେ ପ୍ରାଣ ଖୋଲି ହସିବ ।

ସେ କଳସୀରେ ପାଣି ଭରି କରି ଫେରିଲା, ତକିଆର ସିଲଇ ଖୋଲି ତୁଳା ଭିତରେ ଚିଠିଟି ରଖି ପୁଣି ସିଲେଇ କରିଦେଲା । କେହି ଜାଣି ପାରିଲେ ନାହିଁ, କେଇଘଣ୍ଟା ଭିତରେ, ନିଜର ଘର, ପର ପରି ଲାଗିଲା ।

ରବିବାର ଖରାବେଳେ ବୋଉପାଖରେ ଖୁବ୍ ଗେହ୍ଲାହୋଇ କଥାବାର୍ତ୍ତା କଲା ବାସନ୍ତୀ । ଭାଉଜ କାଳେ ସନ୍ଦେହ କରିବ, ସେ ପାଇଁ ତା'ଠାରୁ ଦୂରେଇ ଦୂରେଇ ରହିଲା । ଦିନ କେମିତି କଟିବ । ସେଇ ଅପେକ୍ଷାରେ ସେ ରହିଲା । ଭାଇ ଭୋଗରାମ ସାରାଦିନ ବାହାରେ, ହୁଏତ ରାତିରେ ଫେରିବ । ସେ ଲୋକ ଖରାପ ହୋଇଗଲାଣି । ପଇସା ହେଲାପରେ, ଯାହାଘରେ ଯିବାନ ହୁଅ ତାଙ୍କ ଘରେ ପାନ ଆଉ ଗୁହ୍ୱା ଖାଏ । ତଳପୁରାସ୍ତା ଗାଁର ଜଣେ ପରିତ୍ୟକ୍ତା ସ୍ତ୍ରୀ ଲୋକ ସହିତ ତା'ର ସମ୍ପର୍କ ବଢ଼ିଯାଇଛି । ସେ ତାକୁ ମଧ୍ୟ ବହୁତ ପଇସା ଦେଉଛି । ଏକଥା ଅନେକଙ୍କୁ ଜଣା । ତରୁଲତା ମଧ୍ୟ ଜାଣେ । ଆଜିକାଲି ତରୁଲତା ମନରେ ଦୁଃଖ । ପିଲା-ପିଲାଙ୍କ ମୁହଁକୁ ଚାହିଁ ସାନ୍ତ୍ୱନା ପାଏ । ବାସନ୍ତୀ ଭାବିଲା ଯେ ସେ ଚାଲିଗଲେ ତରୁଲତା ଖୁବ୍ ନିଃସଙ୍ଗ ହୋଇ ପଡ଼ିବ । ମନକଥା କହି ଦୁଃଖକୁ ପତଳା କରିବାକୁ ଆଉ ଦ୍ୱିତୀୟ ପ୍ରାଣୀ ପାଇବ ନାହିଁ ।

ସନ୍ଧ୍ୟାରେ ବାସନ୍ତୀ ଭାତ ଖାଇ ପାରିଲାନି । ତା'ର ଅନେକ ଟଙ୍କା କେଜାଣି ଯଦି ଧରାପଡ଼ିଯାଏ ଦିନରୁ ଗୋଟିଏ ପୁଟୁଳି ଘରକୋଣରେ ସମସ୍ତଙ୍କ ଅଲକ୍ଷରେ ଲୁଚାଇ ରଖିଛି । ସେଥିରେ ଧନଞ୍ଜୟର ଚିଠି ମଧ୍ୟ ଅଛି । ଅବଶ୍ୟ ତା ଭିତରେ ତା'ର କିଛି ସୁନା ଗହଣା ମଧ୍ୟ ରଖିଛି । କାରଣ ଘରେ ଥିବାବେଳେ ଭଲ ଗହଣା ପିନ୍ଧି ପାରିବନି । ସମସ୍ତଙ୍କ ଆଖିରେ ପଡ଼ିବ । ତା' ଛଡ଼ା ଗହଣା କେତେଟି ନ ହେଲେ ଧନଞ୍ଜୟ କଣ ଶୀଘ୍ର ଗଢ଼ାଇ ପାରିବ । ତା ପାଖରେ କେତେ ପଇସା ଅଛି କିଏ ଜାଣେ । ତାର ହୁଏତ ପଇସା ଅଛି ବୋଲି ରୂପକବୁଢ଼ୀ କହୁଥିଲା, ତା ପରେ ଆହୁରି ଦୁଇଟା ବଖରା ବଢ଼େଇଛି । ଯେପରି ରାଜରାଣୀ କରି ରଖିବ ।

ଭାତ ଖାଇବା ସମୟରେ ପ୍ରାୟ ଭୋଗରାମ ନଥାଏ । ଘରେ ସମସ୍ତେ ଶୋଇବାକୁ ଗଲାବେଳେ ସେ କବାଟ ଠକ ଠକ କରେ । ଆଜି ମଧ୍ୟ ସେ ରାତି ଦଶଟାରେ

ଫେରନ୍ତା । ତା'ର ଗଳା ଶୁଣି ଆଜି ବାସନ୍ତୀର ଖୁବ୍ ରାଗ ହେଲା । ସେ ଭାବିଲା, ସବୁ କଷ୍ଟର ମୂଳ ଭୋଗରାମ । ଯେଉଁ ଲୋକ ଧନଞ୍ଜୟଙ୍କୁ ସାଧାରଣ ଲୋକ ବୋଲି ଭାବି ତାଙ୍କୁ ଘୃଣାକରେ, ତାକୁ ମଧ୍ୟ ଖରାପ ଭାବିବା ଉଚିତ, ଘୃଣା କରିବା ଉଚିତ୍ । ଭୋଗ ପ୍ରତି ତା'ର ପ୍ରତିଶୋଧ ମନୋଭାବ ଜାଗିଲା । ଧନଞ୍ଜୟ ସଙ୍ଗରେ ପଳେଇଯିବାର ଇଚ୍ଛା ଆହୁରି ପ୍ରବଳ ହେଲା । ନିଜ ଘରଟାର ମାୟା ଛେଲି ଯିବାକୁ ମନ ଦୃଢ଼ ହେଲା । ସେ ଠିକ୍ ଭାବିପାରିଲା, ପଳେଇଯିବାର ମାନେ ହେଲା, ସମ୍ମାନଲୋଭୀ ଭୋଗରାମକୁ ଅପମାନ ଦେବା । ଆଉ ତା ଉପରେ ପ୍ରତିଶୋଧ ନେବା ତା'ହେଲେ ତା'କୁ ଶିକ୍ଷା ମିଳିବ ଯେ ସ୍ତ୍ରବତୀ ଝିଅର ମଧ୍ୟ ନିଜର ଇଚ୍ଛା ଓ ମନଅଛି ଏବଂ ପରିବାରର ପ୍ରଚଳିତ ନୀତିକୁ ତ୍ୟାଗକରି ସେ ମଧ୍ୟ ସୁଖୀ ହୋଇପାରେ ।

ରାତିରେ ବାଦଲ ଦେଖି ତା ମନ ଦବିଗଲା । ଡଙ୍ଗା ନେଇ ଧନଂଜୟ କଣ ଆସିବ ନାହିଁ ? ନିଶ୍ଚୟ ଆସିବ, ଶେଷ ରାତିରେ ଏମିତି ପାଗ ରହିଲେ ଅନ୍ଧାର ବେଶି ହେବନି—ରାସ୍ତା ଚିହ୍ନି ହେବ, ବେଶି ଜହ୍ନ ଆଲୁଅ ଖରାପ ।

ଭୋଗରାମକୁ ପୁରାନିଦ, ତରୁଲତା ମଧ୍ୟ ଶୋଇ ପଡ଼ିଥିବ । କାରଣ ଶୋଇବା ଘରର ଆଲୁଅ ଲିଭିଗଲା । ବାସନ୍ତୀ ବୋଉ ପାଖରେ ଶୋଇଛି । କିନ୍ତୁ ବୁଢ଼ୀକୁ ଶୀଘ୍ର ନିଦ ହୁଏନା । ଅନେକ ରାତିଯାଏ ଗୁଣୁ ଗୁଣୁ ହେଉଥାଏ—"ମୋପେ କୃପା କରି ହରି ଏ, ଦାନ୍ତେ ଧରେ ତୃଣ, ମାଥେ ଧରେ ତୃଣ, ଶୁନ୍ହି କୃପାମୟଙ୍କ ନା ଜାନୁ ଏତେ। ଦିନ ।" ବୁଢ଼ୀକୁ ନିଦ ହେବାଯାଏ ଅଧେରାତି ବିତିଗଲା । ବାସନ୍ତୀ କବାଟରେ କୁଣ୍ଡି ଲଗାଇ ନାହିଁ । କିଛି ସମୟ ଲାଗି ବାହାରକୁ ଯାଇ କବାଟକୁ ଜୋରରେ ବନ୍ଦକଲା ସତ, କିନ୍ତୁ କୁଣ୍ଡି ଲଗାଇଲା ନାହିଁ । ଆଜି କୁକୁଡ଼ା ପ୍ରଥମ ଡାକିବ ନାହିଁ ନା କଣ ? କାହିଁକି ନ ଡାକିବ ? କିଛି ନ ବୁଝି ସେ ଏମିତି ଭାବି ଚାଲିଛି, ପ୍ରକୃତିର ନିୟମ କେବେ ଲଂଘନ ହୁଏନା । କୁକୁଡ଼ା, ଡାହୁକ, ସଖିମଣି ବାଲିସାପି—ପଶୁ ପକ୍ଷୀ ଆଉ କାକରୁଆ ମଧ୍ୟ ପ୍ରକୃତିର ସାଥୀ, ସେମାନେ ଚନ୍ଦ୍ରସୂର୍ଯ୍ୟ ପରି ଆଉ ସ୍ତ୍ରୀ ଲୋକଙ୍କ ପରି ନିଜ ନିଜ କାମ ଠିକ୍ ସମୟରେ କରିଚାଲିଛନ୍ତି । ତୋଳନକଲୁଆ ଘରର କୁକୁଡ଼ା ଆଜି ବି ଡାକିବ—"ଲିକ୍ କା···କୁ-ଉ କୁ ଉ···।"

ଗୁହାଳରେ ବାଛୁରିଟାଏ ହମ୍ବାରଡ଼ି ଛାଡ଼ୁଛି । ଏଟା କଣ ରାତିଶେଷ ହେବାର ଲକ୍ଷଣ ? କାଳି ଗାଈର ଚାରିମାସର ବାଛୁରିଟାକୁ ସେ ଏତେ ଭଲ ପାଏ ଯେ ସେ ଦୁଆରେ ଠିଆହେଲେ ବାଛୁରିଟା ଦଉଡ଼ି ଆସି ତା ଶାଢ଼ୀରେ ମୁହଁ ଗୁଞ୍ଜି ଶୁଂଘେ । ହାତକୁ ଚାଟେ । ପାଉଁସିଲା ଗଲେ ତା କଥା ତ ମନେ ପଡ଼ିବ । ଏଇ ସୁନ୍ଦର

ବାଚୁଶ୍ରାଙ୍କୁ ମଧ୍ୟ ଭୁଲ ହେବ ନାହିଁ । ଉପାୟ ନାହିଁ । ମାଷ୍ଟ୍ରରେ ପ୍ରୀତ—ଏଇ ଦୁଇଟି ଏକାକଥା ନୁହେଁ ବୋଧହୁଏ । ଗୋଟାଏ ବଡ଼ ପ୍ରଶ୍ନ ବାସନ୍ତୀକୁ ଅସ୍ଥିର କଲା ।

ଏସବୁ ଭାବଲେ ଚଳିବ ନାହିଁ, ମନସ୍ଥିର କରିବାର ସମୟ ହେଲାଣି । ସେ ଶବ୍ଦ ଶୁଣିଲା—ପ୍ରାଣୀଜଗତ ଉଠିଲେଣି । କୁକୁଡ଼ା ନଡ଼ାକଲେ ଯୁଝା ରାତଶେଷ ହେବାକୁ ବସିଲାଣି । ଶିଲଗୁଡ଼ୀ ରାସ୍ତାରେ ଯିବା ଗାଡ଼ି ଶବ୍ଦ ବାସନ୍ତୀ ଶୁଣିଲା । ତା'ହେଲେ "ସୋଦର ପାସ"ର ଲୋକେ ଗାଡ଼ିନେଇ ବାହାରକୁ ଗଲେଣି । ନିଶ୍ଚୟ ଅଧ ରାତ ହେଲାଣି । କାରଣ ଏମାନେ ତାରାଦେଖି ରାତ କେତେ ହେଲା ସ୍ଥିର କରନ୍ତି । ସେ ଏମିତ ଗୋଟାଏ ପକ୍ଷୀର ଡାକ ଶୁଣିଲା ଯାହାର ନାମ ସେ ଜାଣେନା । ନଳୁ ଘରର କୁକୁର ମଧ୍ୟ ଭୁକୁଛି । ଦୋନାମୁଖୀ ଜଙ୍ଗଲର ଝିଣ୍ଟିକାର ଶବ୍ଦ ତା' କାନରେ ପଡ଼ିଲା । ସେ ଉଠି ବସିଲା, ଗୋଟିଏ ଅଜଣା ଆଶଙ୍କା ତାକୁ ବ୍ୟସ୍ତ କଲା । କାହା ସଙ୍ଗରେ ପଳେଇଯିବାକୁ ସାହାସ ଦରକାର । ମନବଳ ଦରକାର । କେତେଟା ନିଷ୍ଠୁର ହେବାକୁ ମଧ୍ୟ ପଡ଼େ । ବୋଉ, ଭାଇ, ଭାଉଜ ଆଉ ସ୍ନେହ ସ୍ନେହ ପୁଅଝିଅ କେଇଟାଙ୍କ ପାଇଁ ମୁହୂର୍ତ୍ତିକର ଖୁବ୍ ମାୟା ହେଲା । ସେମାନେ ଖୁବ୍ ବେଶି ନିଜର ଲାଗୁଛନ୍ତି । ସେମାନେ ସମସ୍ତେ ଉତ୍ତର । ସେମାନଙ୍କ ପ୍ରତି ପ୍ରାଣଟା ଅଲଗା । ସେମାନେ ଏଇ ବୟସରେ ତା'ର ପ୍ରୀତର ମୂଲ୍ୟ ବୁଝିପାରିବେନି । ସେଥିପାଇଁ ତା'ର ଭଲ ହେଲେ ସେମାନେ ଆନନ୍ଦ ପାଇବେନି । ଭାଇ ଭୋଗରାମ କୁ ସେ ଭଲପାଏନା କି ? ଭାଉଜ ତାକୁ ଅନ୍ୟ କାରଣ ପାଇଁ ଖରାପ ବୁଝୁଛି । ଭାଇର ଗରମାଗରମ କଥାଶୁଣି ବୋଉ ମଧ୍ୟ କହିଲା ଟଙ୍କା ତା ଦିମାଗ ଖରାପ କରୁଛି । ସେ ବର୍ତ୍ତମାନ ଓଲଟା ଚାଲୁଛି । ନିଜ ଭାଇକୁ ସେ କେମିତ ଖରାପ କହିପାରୁଛି । ତା' ବାପା ମଲାପରେ ସାରା ଘରଟା ନଷ୍ଟ ହୋଇଯାଇଥାନ୍ତା । ବର୍ତ୍ତମାନ ପରି ଜର କାମଥିବା ମେଖଳା, ଗୁଧର ଓ ଓଢ଼ଣା ଗୁଡ଼ି ପରଘରେ କାମ କରିବାକୁ ପଡ଼ିଥାନ୍ତା । ଧନ କେଉଁଠି ଦରକାର ନୁହେଁ ! ସୋନାଇପଗିଆ ଲୋକେ କହନ୍ତି—"ମାଛ ଦେଖିଲେ ବଗ କଣା, ଧନ ଦେଖିଲେ ପୁରୁଷ କଣା ।" ଯେ ଧନ ଅର୍ଜ୍ଜନ ନ କରିପାରେ, ସେ ଧନ ଦୌଲତ ସବୁ ଅସାର କହି ଆପଣା ପାଣ୍ଡିତ୍ୟ ଦେଖାଏ । କାଲି ତରୁ ଭାଉଜ ତାକୁ ନଦେଖି ଏକବାରେ ଭାଙ୍ଗି ପଡ଼ିବ । ଆଖି ଭରି କାନ୍ଦିବ । କାନ୍ଦିଲା ପରେ ବି ମନରେ ଭଲ ପାଇବା ରଖି ସେ ବାସନ୍ତୀକୁ ଗାଳିଦେବ । ହୁଏତ କହିବ—ଯୁବତୀ ଝିଅ ଆଉ "ଘଟିଆସିଘର" ମାଛ—ଦୁହେଁ ସମାନ କିନ୍ତୁ ଏଇ ଯୌବନ କାଳରେ ତରୁଲତାହିଁ ତା'ର ଦୁଃଖର ସାଥୀ ଥିଲା । ବାସନ୍ତୀର ଗୁଣ ଗାଇ ତରୁଲତା ଅନ୍ୟ ସମ୍ମୁଖରେ କେତେ ଗର୍ବ କରେ ।

ଆଉ ମୋ ବୋଉ ! ଶୁଖିଲା କାଠପରି ପଡ଼ିଛି । ଏଇ ମାଟି ଯେ କେତେ ମହତ । ଦଶମାସ ଦଶଦିନ ଗର୍ଭରେ ଧରି ଆଉ ପିଲାଙ୍କୁ ତା'ଙ୍କୁ ଲାଳନ ପାଳନ କରିବାକୁ କି କଷ୍ଟ ନ ଭୋଗିଛି । ତା'ଙ୍କୁ କେନ୍ଦ୍ର କରି କେତେ ସ୍ୱପ୍ନ ନ ଦେଖିଛି । ଅନ୍ୟ ଯୁବତୀ ଝିଅଙ୍କୁ ଦେଖି ଦେଖି କିଏ ଜାଣେ କେତେ ତା'ର ଯୌବନର ଛବି ସେ ଦେଖିଛି ଆଉ କେତେ ମଧୁର ସ୍ମୃତି ତା ମନରେ ଫୁଲହାର ପରି ଗୁନ୍ଥି ହୋଇଛି ।

ଆରେ ! ଅସଲ ସମୟରେ ତା' ମନଫୁଲଠାରୁ କୋମଳ ହୋଇ ଯାଉଛି । ଘର ଧର୍ମକ୍ଷେତ୍ର ପରି ପବିତ୍ର ଲାଗୁଛି । ଘରର ସମସ୍ତଙ୍କ ଲାଗି ତାର ମୋହ । ଜନ୍ମଦେବା ଘର ଭିତର ନିସ୍ତବ୍ଧତାରେ ମୁଖର ହୋଇଛି । ସେ ଯେମିତି ସାତ ବନ୍ଧନରେ ବାନ୍ଧି ହୋଇଛି ।

ହଠାତ୍ ତାର ଗୋଡ଼ଠାରୁ ମୁଣ୍ଡଯାଏ ଥରିଲା । ଚୋଲନ୍ କଣ୍ଟାସ ଘରୁ କୁକୁଡ଼ା ଡାକିଲା । ପ୍ରଥମ କୁକୁଡ଼ା ଡାକିଲା ··ଲକ୍ଷ୍ମ···କୁ ଉ-କୁ-ଉ, କୁ-ଉ-ଉ । ସମସ୍ତ ଆସିଗଲା ! ଏହି ମୁହୂର୍ତ୍ତରେ ମୋ ମନ ଠିକ୍ କରିବାକୁ ପଡ଼ିବ । ରୂପକ ବୁଢ଼ୀର କଥା କାନରେ ବାଜୁଥାଏ । ମନକୁ ଟାଣ କରିବାକୁ ହେବ । ଏସବୁ ଦୁର୍ବଳ ମନର କାମ ନୁହେଁ । ଭାବିଲା ଯେ, ଧନଞ୍ଜୟ ମଧ୍ୟ ସେମିତି ଇଙ୍ଗିତ ଦେଇଛି—"ମୁଁ ଜାଣେ ନିଜ ଜନ୍ମସ୍ଥାନ ଘରଗୁଡ଼ା ଆସିବାକୁ, ବୁଢ଼ୀବୋଉ ଓ ଅନ୍ୟମାନଙ୍କୁ ଛାଡ଼ି ଆସିବାକୁ ତୁମପାଇଁ କଷ୍ଟ ହେବ । କିନ୍ତୁ ମୁଁ କ'ଣ ପରି ?···"

ଚିଠିରେ ଏଇ କେଇପଦ କଥା ତାକୁ ମନବଳ ଦେଲା । ତଳେ ବାଁ ପାଖ କଣରେ ଥିବା ପୁଟୁଳୀକୁ ନେଲା । ମା ଗୋଡ଼ଛୁଇଁ ପ୍ରଣାମ କଲା, ଶବ୍ଦ ନ କରି, ନିରବ ହୋଇ କହିଲା, "ବୋଉ, ମୋତେ କ୍ଷମା କରିବ । ମାତ୍ର ବର୍ଷକାଳଟା ଦୁଃଖ ସହିବାକୁ ହେବ, ପରେ ଯେତେବେଳେ ଛୁଆ ପିଲା ଧରି ଘରକୁ ଆସିବି, ସେତେବେଳେ ଝିଅ ଜ୍ୱାଇଁକୁ ଦେଖି ତୁ କଣ ଖୁସୀ ହେବୁନି ?"

ଚୁପ ଚୁପ ଗୋଡ଼ର ବଳ ଅଣ୍ଟାକୁ ଆସିଲା । ଦୁଇ କବାଟକୁ ଆସ୍ତେ ଆସ୍ତେ ବନ୍ଦ କଲା । ଗଛପତ୍ର ହଲିଲା ଶବ୍ଦ ବି ହେଲାନି, ପୁଟୁଳୀ ମାଟିରେ ରଖି ଜନ୍ମଭୂମିର ମାଟିକୁ ପ୍ରଣାମ କଲା । କିଛି ମାଟିନେଇ ମୁଣ୍ଡରେ ଦେଲା ଏବଂ ମନେ ମନେ କହିଲା, "ହେ ଘରର ଲକ୍ଷ୍ମୀ ! ତୁ ମୋତେ ଆଶୀର୍ବାଦ କର, ଅପରାଧ କ୍ଷମା କରିବୁ । ତୁଳସୀ ଦୁଇପତ୍ର ଛିଣ୍ଡାଇ ଶୁଂଘିଲା, ଅଳ୍ପ ବ୍ଲାଉଜ ଭିତରେ ରଖିଲା । ଥରେ ଉପରକୁ ଚାହିଁଲା, ଆକାଶରେ ଯେଉଁଠି ଜହ୍ନ ଉଠେ, ସେଠି ଟିକିଏ ହେଲେ ସୁଦ୍ଧା ମେଘ ନାହିଁ । ଯେମିତି ଚୋପା ଜହ୍ନ ତାକୁ ଲଙ୍ଗଳା ହୋଇ ଚାହିଁଛି । ଘରପଛ ବାରି ଆଡ଼େ

ଠନୁଆ ଘାଟ । ସେଇ ଆଡ଼କୁ ସେ ଗୋଡ଼ ଚଳାଇଲା । ହଉର ଅଢ଼ ଦକ୍ଷିଣ ବିପରୀତ ଦିଗରୁ ଦୁଇ ଶକ୍ତି ତାକୁ ଯେପରି ଟାଣୁଛନ୍ତି । ତଥାପି ସେ ଧୀରେ ଧୀରେ ଘାଟ ଆଡ଼କୁ ଚାଲିଲା । ଜହ୍ନ ଆଲୁଅରେ ଗୁଆଗଛ ଦିଶୁଛି ଆଉ କାଠହଣା ଚଢ଼େଇର ଶବ୍ଦ ମଧ୍ୟ ଶୁଭୁଛି । ଶ୍ରେଷ୍ଠ ଚଢ଼େଇ ସପୁଙ୍ଗ ଗଛର ପତ୍ରରେ ବସି ମଧୁର ଶବ୍ଦ କରୁଛି । ସେ ଚାଲିଛି । କାଠୁରିଆ ଚଢ଼େଇ ଅଳ୍ପ ସମୟ ମଧ୍ୟରେ ନୀରବ ହୋଇଗଲା । ବୋଧହୁଏ ସେ ତାକୁ ଦେଖୁଛି । ଦଳଙ୍କ ଘାଟରୁ ବରଗୀତ ଅନେକ କଣ୍ଠରେ ଶୁଭୁଛି । ଭକ୍ତିରେ ଗଦଗଦ୍ ହୋଇ କେହୁ ଯାଉଛନ୍ତି "ବନ୍ଧୁରେ ଗୌରୀ ଗୋପାଲ ପ୍ରାଣ ନେହାରି ଫୁଲାୟୁଛବା ନନ୍ଦନ ଜୁଲେମେର, ନୟନେ ପୁରିତବାରି ।" ଘାଟରେ ପହଞ୍ଚିବାକୁ ଆଉ ଅଳ୍ପ ରାସ୍ତା ବାକି । କଣ୍ଟାବାଉଁସ ଝାଡ଼ ଘାଟକୁ ଢାଙ୍କି ଦେଇଛି । ଦୁଇଟି କଳା ଜାମୁଗଛ ଫାଙ୍କରେ ଜହ୍ନ ଆଲୁଅ ତା' ମୁହଁରେ ପଡ଼ୁଛି । ଘାଟ ପାଖେଇ ଆସିଲା । ଆଉ ଯେମିତି ଗୋଡ଼ ଚଳୁନି । ଦୁଇଗାଲ ଆଖି ପାଣିରେ ଓଦାଗଲା । ନିଶ୍ୱାସ ପ୍ରଖର । ଜହ୍ନ ଯେପରି ତା ମୁହଁକୁ ଚାହିଁଛି, ସେଇପାଦ ଆଗକୁ ଗଲା । କଣ୍ଟା ବାଉଁଶ ବଣପାରି ହେଲା । ସୋନାଇ ଦେଖାଗଲା । କିଛି ଅଂଶ ଗଛ ବୁଦାଡ଼ରେ ଲୁଚିଗଲା । ନଈରେ ଗୋଟିଏ ଡଙ୍ଗାରେ ସାଧା କପଡ଼ା ପିନ୍ଧା ମୂର୍ତ୍ତିକୁ ଦେଖିଲା । ସେ କିଷ୍ଟସୁ ଧନଞ୍ଜୟ । ଅନ୍ୟ ଲୋକଙ୍କୁ ନ ଦେଖିଲେ ବି, ତା ବଡ଼ ଆଲୁଅ ଦେଖାଗଲା । ବଡ଼ ପିଇଲାବାଲା କିଷ୍ଟସୁ ଘୋଗନା ଘାଟିଆ ।

ହଠାତ୍ ତା'ର ଏକ ନୂତନ ଚେତନା ଜାଗ୍ରତ ହେଲା । ହାତର ମୁଦି ଉପରେ ନଜର ପଡ଼ିଲା । ସେ ମୁଦିକୁ ଦେଖିବାକୁ ଲାଗିଲା । ମଥୁରର ବୋଉ ସେ ମୁଦି ପିନ୍ଧେଇଥିଲା । ସେ ମୁଦି ପିନ୍ଧେଇ ମଥୁରର ବୋଉ ଆପଣା ଝିଅ ବୋଲି ଡାକି କହିଥିଲା । ଆଉ ଦୁଇଦିନ ପରେ ମୁଁ କଣ ତୋର ଆପଣାର ହେବି ନାହିଁ ? ତାକୁ ବୋହୂ କରିବାକୁ ତାର କେତେ ଆଶା ଓ ଅଭିଳାଷ ! ଜହ୍ନ ଆଲୁଅରେ ମୁଦି ଚକ ଚକ କରୁଛି । ଯେପରି ମୁଦିକ ମଥୁରର ଆଶା ଅଭିଳାଷ ସେଥିରୁ ଜଣାପଡ଼ୁଛି । କିନ୍ତୁ କାଲି ସେହି ଅପରିଚିତ ଲୋକର ଅପମାନ ହେବନି ? ସ୍ୱାଇ ଭୋଗରାମ କାଲିଠାରୁ କୌଣସି ଜାଗାରେ ମୁହଁ ଦେଖାଇ ପାରିବନି । ଆଉ ତା'ର ପଳେଇବା ଫଳରେ ଯଦି ବୋଉ ମରିଯାଏ ? ଆଉ କାଲି ଯଦି—'ତା ସ୍କୁଲ୍ ସକାଶେ ଏହା ହେଲା କହୁ—'ଭାବ ଭାଉଜକୁ ପିଟେ !!

କାଲେ ସେମାନେ ଡଙ୍ଗାରୁ ଦେଖି ନେବେ ସେଥିପାଇଁ ପଣସ ଗଛ ଆଡ଼ୁଆଳରେ ପିଠି ବୁଲେଇ ଠିଆ ହେଲା । ମୁଦିଟି ହାତରୁ ଖୋଲି ନଈକୁ ପକାଇବାକୁ ଇଚ୍ଛା କଲା । କିନ୍ତୁ ପକେଇ ପାରିଲାନାହିଁ ! ତା' କରିଲେ ପାପ, ସେ ହିନ୍ଦୁ ଘରର ଝିଅ ।

ଈଶ୍ୱରଙ୍କୁ ସାକ୍ଷୀ କରି ମୁଦି ବଦଳା ହୋଇଛି । ସେଦିନ ପାନ ଦାମ୍ପରେ ପାନ ସଜେଇ ସେ ପ୍ରଣାମ କରିଛି । ସବୁ ଜିନିଷକୁ ପ୍ରଣାମ କରିବାର ଅର୍ଥ ଭଗବାନ ସବୁଥିରେ ଅଛନ୍ତି । ସେଥିପାଇଁ ସେହିଦିନଠୁଁ ଧର୍ମର ନୀତି ଅନୁଯାୟୀ ସେ ତାଙ୍କ ଘରର ହୋଇ ଯାଇଛି । ସେ ପୁରୁଷକୁ ସେ ଫାନ୍ଦ ଦେଇ ପାରିବ ନାହିଁ । ତା’ ଛଡ଼ା ଏଯାଏଁ ତ ଧନଞ୍ଜୟ ତା ଦେହକୁ ସ୍ପର୍ଶ କରିନାହିଁ । ବର୍ତ୍ତମାନ ସୁଦ୍ଧା ସେ ପବିତ୍ର କୁମାରୀ ।

କିଛି ସମୟପରେ ତା’ର ନୈତିକ ଚେତନା ପ୍ରବଳ ହେଲା । ସେ ଆଗକୁ ପଛକୁ ନ ଚାହିଁ ଦୌଡ଼ି ଦୌଡ଼ି ଘର ଦୁଆର ମୁହଁକୁ ଆସିଲା । ଆସ୍ତେ ଅସ୍ତେ ଦୁଆର ଖୋଲି ପୁଟୁଳୀଟି ଘର କୋଣରେ ରଖିଲା । ଜୋରରେ କବାଟ ବନ୍ଦକଲା, ବୋଉ ଉଠି ପଡ଼ିଥିଲା । ଝିଅ ବାହାରକୁ ଯାଇଥିଲା ଭାବି ବୋଉ କିଛି କହିଲାନି । ବିଛଣାରେ ପଡ଼ିଗଲା । ସାରାଦେହରୁ ଝାଳ ବୋହିଗଲା । କିଛି ସମୟପରେ ପୁଣି କୁକୁଡ଼ା ଡାକିଲା । ତା’ର ଖିଆଲ ହେଲା ଯେ, ସେମାନେ ଡଙ୍ଗା ଫେରାଇ ପାଉଁଶିଆଙ୍କୁ ଫେରିଯିବେଣି । ଏତିକି ଅପମାନ ପରେ ଧନଞ୍ଜୟକୁ ଯୋଗନା ଘାଟଆ ତା ବିରୁଦ୍ଧରେ କିଛି କହି ନ ଥିବ ! ଏହି ଚିନ୍ତା ମନକୁ ଆସିଲା ମାତ୍ରକେ ତା’ର ଓଠ ଦୁଇଟି ଗଛପତ୍ର ପବନରେ କମ୍ପିଲା ପରି କମ୍ପିଲା । ଫୁଲେଇଲା ପରି ସେ କାନ୍ଦି ଉଠିଲା । ନିଦରୁ ଉଠି ବୋଉ ପଚାରିଲା—"ବାସନ୍ତୀ ! ତୋର କଣ ହେଲା ?" ସେ କାନ୍ଦି କାନ୍ଦି କହିଲା, "ବୋଉ ! ତୋ କଥା ଭାବି କାନ୍ଦ ମାଡ଼ିଲା । ତୋତେ ଛାଡ଼ି ପର ଘରକୁ ଗଲାପରେ ତୋତେ ସବୁ ଶୂନ୍ୟ ଦେଖାଯିବ । ଆଉ ମତେ ମଧ୍ୟ ମଲାପରି ଲାଗିବ ।" ବୋଉ ସାନ୍ତ୍ୱନା ଦେଇ କହିଲା—"ପାଗଳି ଝିଅ ! ଏପରି କଣ ଏତେ କାନ୍ଦିବା ଦରକାର ! ମୁଁ ଭାବିଲି—ତୋ ଦେହ ଖରାପ । କୁମାରୀ ଝିଅର ଖାଲି ବୋଉ କଥା ଭାବିଲେ କଣ ଚଳିବ ? ଏଇ ସାମାନ୍ୟ କଥା ତୁ ବୁଝି ପାରୁନୁ ?"

## ତିନି

ସେହି ଦିନରୁ ବାସନ୍ତୀ ବାହାଘର ପାଇଁ ମନକୁ ମନେଇବାକୁ ଲାଗିଲା । ଉତ୍ସବରେ ଦିନ ଗଡ଼ି ଚାଲିଲା । ବିଭାଦିନ ମଧ୍ୟ ଆସିଗଲା । ସେତେବେଳେ ବାସନ୍ତୀ ବି ମଥୁର ବିଷୟରେ କୌତୁହଳୀ ହେଲା । ତା ସମ୍ବନ୍ଧରେ ଖବର ନେଲା । ପର ଘରେ କେମିତି ଚଳିବାକୁ ହେବ, ବୋଉ ଓ ଭାଉଜ ପ୍ରତିଦିନ ଉପଦେଶ ଦେଲେ । ମଙ୍ଗଳ

ପାଳ ଢ ବର୍ଣ୍ଣ ଲୁଗା ଓ ଗହଣା ପିନ୍ଧି ଗୋଟିଏ ଅନ୍ୟ ସଂସାରର ସୁଖ ଚିନ୍ତା କଲା । ନିଜମନକୁ ମଥୁରାମୁଖି କରିବାକୁ ସେ ଚେଷ୍ଟା କଲା । ବହୁଦିନ ତଳେ ବୋଉ କହିଥିବା କଥାକୁ ଜୀବନର ସତ୍ୟ ରୂପ ମାନିନେଲା ! ବୋଉ ଦିନେ ତାକୁ କହିଥିଲା—"ଯେଉଁ ସ୍ତ୍ରୀ ପ୍ରକୃତରେ ଭଲ, ତା ସହିତ ଯେ କୌଣସି ପୁରୁଷ ସୁଖର ସଂସାର କରି ପାରିବ । ନିଜକୁ ଖାପ ଖୁଆଇ ପାରିଲେ ସ୍ତ୍ରୀ ଯେ କୌଣସି ଅବସ୍ଥାରେ ସୁଖୀ ହୋଇ ପାରିବ ।"

ବେଦୀ ହୋମ ପାଖରେ ଝିଅକୁ କାନ୍ଦିବାକୁ ହୁଏ । ପାଖରେ ଥିବା ସବୁ ମାଈପଙ୍କ ଆଖି ଛଳଛଳ ହୋଇଯାଏ । ସେହି ସମୟରେ ବାସନ୍ତୀ ମଧ୍ୟ କାନ୍ଦିଥିଲା । ତରୁଲତା ଆଉ ସୁଜଳାଙ୍କ ଆଖିରୁ ଲୁହ ବୋହିଲା । କିନ୍ତୁ ବର ପାଖରେ ବସି ବାସନ୍ତୀ ସେପରି ଅଲଗା ଝିଅ ହୋଇଗଲେ । ତା'ର ହୃଦୟର ଆଉ ମଥୁରାର ହୃଦର ବାନ୍ଧି ଦିଆଗଲା । ସେ ମଥୁରାକୁ ଅନ୍ତରଙ୍ଗ ଭାବିଲା । ପୁରୋହିତ ଜୀବନକୁ ନୂତନ ସନ୍ଧାନ ଦେଲା । ପବିତ୍ର କୁଶକୁ ତା' ହାତରେ ଆଉ ମଥୁରା ହାତରେ ବାନ୍ଧି ଦିଆଗଲା ! ସେ ଅଗ୍ନି ସାକ୍ଷୀ କରି ଦାମ୍ପତ୍ୟ ଜୀବନର ବନ୍ଧନ ପାଇଲା । ହୋମ ସରିଲା । ବାସନ୍ତୀର କୁମାରୀ ଜୀବନ ଅନ୍ତରାଳରେ ବିଲୀନ ହୋଇଗଲା । ତା କପାଳରେ ସିନ୍ଦୁର ଆଉ ମୁଣ୍ଡରେ ଓଢ଼ଣା ସବୁଦିନ ପାଇଁ ହୋଇଗଲା । ବରଘରକୁ ଯିବାବେଳେ, ବୋଉ ଯୋଉଁକୁ ଉପଦେଶ ଦେବା ଶୁଣି ବାସନ୍ତୀ ଖୁବ୍ ଆଶ୍ଚର୍ଯ୍ୟ ହେଲା । ପ୍ରଥମ ଥର ଦେଖା ଟୋକାକୁ ବୋଉ ନିଜ ପୁଅ ପରି କଥା କହୁଛି । ସେ ମଧ୍ୟ ଅକପଟ ଭକ୍ତିରେ ବୋଉ ପାଦ ଛୁଇଁ ପ୍ରଣାମ କରୁଛି । ସୁଜଳା ତାଙ୍କ ମୁଣ୍ଡରେ ହାତ ଦେଇ ଆଶୀର୍ବାଦ ଦେଲା । ଗୋଟିଏ ଦିନ ଭିତରେ ଦୁଇ ଘରର ଲୋକେ ଭଲ ପାଇବାର ଶୃଙ୍ଖଳାରେ ବନ୍ଦୀ ହେଲେ ।

ହୋମ ପାଖରେ ବସିଥିଲାବେଳେ ବାସନ୍ତୀ ମଥୁରାର ଉପସ୍ଥିତିକୁ ଉପଲବ୍ଧି କରି ପାରିଥିଲା । ମୁଣ୍ଡଯାଏ ଓଢ଼ଣା ଲମ୍ବିଥିଲା । ସେଥିପାଇଁ ସମସ୍ତଙ୍କ ଆଗରେ ମଥୁରାକୁ ଦେଖିବାକୁ ଚେଷ୍ଟା କରି ଥିଲେ ବି ଦେଖିପାରି ନ ଥାନ୍ତା । ମଥୁରାକୁ ଥରେ ଦେଖିବାକୁ ତାର ମନ କମ୍ ଛଟପଟ ହେଉ ନଥିଲା । ଭାବିଲା ତାକୁ ଦେଖିବାକୁ କଣ ମନ ସେମିତି ବାଉଳା ହେଉ ନ ଥିବ ? ଓଢ଼ଣା ଭିତରୁ ଥରେ ତା ହାତ ଦେଖି ପାରିଥିଲା । ଥରେ ମୁହଁର କିଛି ଅଂଶ ଦେଖିଥିଲା କିନ୍ତୁ ସେଥିର ଚେହେରାକୁ ଅନୁମାନ କରିପାରି ନଥିଲା । କିନ୍ତୁ ଘର ଭିତରେ ଓଢ଼ଣା ଟେକିବାରୁ ତାକୁ ଥରେ ଭଲ ଭାବରେ ଦେଖିବାର ସୁଯୋଗ ପାଇଥିଲା । ଯାହା ଆଗରୁ ଶୁଣିଥିଲା ମଥୁରା

ସେମିତ ସୁନ୍ଦର ପୁରୁଷ । ସୁଭଗା ଶୋଭାବଙ୍କ ନଜାଣି ? ସୁପୁରୁଷ, ମୁଖ ମଣ୍ଡଳରେ ପବିତ୍ରତା ପୁରପୁର ପରିସ୍ଫୁଟ; ପ୍ରଥମ ଦର୍ଶନରେ ହିଁ ସେ ତାଙ୍କୁ ଆପଣାର ଭାବିଲା । ଲମ୍ବ ପ୍ରାୟ ଛଅଫୁଟ । କଳା କଳା ଦେହଟା କାର୍ଯ୍ୟକ୍ଷମ ବୋଲି ଅନୁମାନ କରିହେବ । 'ଶୋଆଲ-କୁଣ୍ଡିଆ'ର ସିଲ୍କ୍ ପଞ୍ଜାବୀର ଉପର ବୋତାମ ଖୋଲା । ତା'ର ଭିତରୁ ଦିଶୁଥାଏ ସୁଗଠିତ ଛାତିଟି । ପଞ୍ଜାବୀ ଭିତରୁ ଛାତିରେ ଗୋଟାଏ ଦୁଇଟା ବାଳ ଦେଖାଗଲା । ଭାରି ଭଲ ଲାଗିଲା । ଅକସ୍ମାତ ବାସନ୍ତୀ ମନରେ ଗୋଟିଏ କଥା ଉଠିଲା । ସେ ଭାବିଲା ଯେ ମଥୁରା କୋମଳ ପ୍ରାଚୀର ମଣିଷ । ସେ କେଉଁଠୁ ଶୁଣିଥିଲା ଯେ ଛାତିରେ ବାଳଥିବା ମଣିଷ ଭଲ—

ଏଟା ଭଲ ଲକ୍ଷଣ—

ଉଚ କପାଳ ଛାତିରେ ବାଳ
ସେହି ପୁରୁଷର ଲକ୍ଷଣ ଭଲ ।

ବର କନିଆଁ ବିଦା ହେଲାବେଳେ, ନିୟମ ଅନୁଯାୟୀ ବାସନ୍ତୀ ଭାଇକୁ ପ୍ରଣାମ କଲାବେଳେ ଟୋପାଟୋପା ଲୁହ ମାଟିରେ ପଡ଼ିଲା । ଏ ଲୁହ ଦୁଃଖର ନୁହେଁ, ଭାଇପ୍ରତି କୃତଜ୍ଞତାର, ଭାବପ୍ରବଣତା । ଘରୁ ଯିବାବେଳେ ତାର ମନ ଉଦାସ ହୋଇପଡ଼ିଲା । ସେ ବହୁତ ଡେରିରେ ଜାଣିପାରିଲା ଯେ ମାଟିର ମଣିଷ ସବୁବେଳେ ଏକ ଭଲ ଓ ଖରାପର ସମଷ୍ଟି । ପୃଥିବୀଟା ମଧ୍ୟ ଭଲ ଖରାପର ସମଷ୍ଟି । ଆଜି ପୃଥିବୀ ରୂପବାନ, ମୋହମୟ ଆଉ ଚିର ନୂତନ । ବହୁତ କାନ୍ଦେଇ ଆଉ ନିଜେ କାନ୍ଦି ପାଲିଙ୍କିରେ ବରର ବାଁ ପାଖରେ ବସିଲା । ବାସନ୍ତୀ ତା'ର ନୂଆ ଜୀବନ ଦରଙ୍ଗିଆଲି ଗାଁ ଆଡ଼କୁ ଚାଲିଲା । ବନ୍ଦୁଆ ଯୋଡ଼ାଟଣା ପାଲିଙ୍କିରୁ ସେ ନିଜ ଗାଁକୁ ଚାହିଁଲା । ଆସ୍ତେ ଆସ୍ତେ ଗାଁ ତା ଆଖିରୁ ଦୂରେଇଗଲା । କିନ୍ତୁ ଚରୁଲତା, ବୋଉ, ବଡ଼ ଭାଇ ଆଉ ପୁତୁରା ଝିଅଙ୍କ ଲାଗି ମନରେ ଦୁଃଖ ହେଲା । ବୋଉ ଆଉ ପୁତୁରୀ ଏବେବି ସଜଳ ନୟନରେ ତା'ର କଥା ଭାବୁଥିବେ । ପୁତୁରା, ଝିଆରି ବୋଧହୁଏ କାନ୍ଦୁଛନ୍ତି । ବଡ଼ଭାଇ ହୁଏତ କାହାକୁ କହୁଛନ୍ତି ଯେ, ଆଜିଠାରୁ ଘରଶୂନ୍ୟ ହେଲା । ସେ ଘରର ଶୋଭା ବଢ଼େଇବା ଝିଅ ଥିଲା । ପାଲିଙ୍କି ପଛରେ ଆସୁଥିବା ବରଯାତ୍ରୀଙ୍କର ଆନନ୍ଦ କୋଳାହଳ ତା କାନରେ ପଡ଼ିଲା ପରେ ମଧ୍ୟ, "ମହୁରୀର କରୁଣ ସ୍ୱର, ତାର ଘର ଛାଡ଼ିବା ଦୁଃଖକୁ ତୀବ୍ରତର କରିଦେଲା ।

ହଠାତ୍ ତା'ର ଦୀର୍ଘଶ୍ୱାସ ମଥୁରା କାନରେ ପଡ଼ିଲା । ସେ ତା ପିଠି ଉପରେ ହାତ ରଖିଲା । ଗୋଟାଏ ଶିହରଣ ତା ଦେହରେ ଖେଳିଗଲା । ତା ଦେହରେ

କେଉଁ ପୁରୁଷର ହାତ ଲାଗିନ—କିନ୍ତୁ ତାର ଯେ ବୈଧ ଅଧିକାର ! ସେ କହିଲା—"କାନ୍ଦନା—ମୁଁ କଣ ଖରାପ ଲାଗୁଛି ?" ତାର କଣ୍ଠସ୍ୱର ଖୁବ୍ ମିଠା, ବାସନ୍ତୀର ହୃଦୟ ଶାନ୍ତ ହୋଇଗଲା । ହୁଁ—ଏ ପୁରୁଷ ପ୍ରେମ କରି ପାରିବ । ଭଲ ଲୋକ । ଏମିତି ମଣିଷ ଏପରି ପ୍ରବୋଧ ଦେବାକୁ ଜାଣିବା ଦରକାର । ନହେଲେ ତା'ର ହୃଦୟ ଶୂନ୍ୟ ରହିଯିବ । ପୁରୁଷର ପ୍ରବୋଧ ବଚନ ହିଁ ହଜାର ଦୁଃଖକୁ ପତଳା କରେ । ଯାତ୍ରା କଥାଟିଏ ମନେ ପଡ଼ିଲା—ରାଜକନ୍ୟାଙ୍କ ରୁକ୍ମଣୀକୁ ସ୍ୱୟଂ ଭଗବାନ କୃଷ୍ଣହିଁ ପ୍ରବୋଧ ଦେଇଥିଲେ । ପୀତବସ୍ତ୍ରରେ ଆଖି ପୋଛି ଦେଇ କହିଥିଲେ—"କ୍ୟା କରବୋ ସିଂଘକୋ ଶ୍ରୀକ ସବ ଆସ୍ଥା । ହମାକୁ ଶପଥ ତାପ ତେଜହୁଁ 'ଜାସ୍ଥା' ।

ମୋରାପୁରର ଦୁଇମାଇଲ ଦୂରରେ ଥିବା ଦରଂଗିଆଲ ଗାଁକୁ ବାସନ୍ତୀ ପୂର୍ବରୁ ଦୁଇଥର ଆସିଥିଲା । ଏହି ଗାଁଟା ମୋରାପୁର ଭଳି । କିନ୍ତୁ ସୋନାଇ ଏହି ଗାଁ ପାଖରେ ମୋଡ଼ି ଯାଇଛି । ମଥୁରାଙ୍କର ଘର ଆଗରେ ସୋନାଇ । କାରଣ ଘରଟା ଉତ୍ତରମୁଖୀ । ହରାହର ପରିବାର ଶଶୁର, ଶାଶୁ ଆଉ ନଣନ୍ଦମାନଙ୍କୁ ତା'ର ବେଶ୍ ଆପଣାର ଲାଗିଲା । ନଣନ୍ଦ ଦୁଇଜଣ—ପାରୁଲ ଆଉ ପୁତଲି—ବେଶ୍ ଫୁର୍ତ୍ତି ଝିଅ । ତନଟା ଛେଳି କାଟି "ଖୋବା ପଡ଼ିଆରେ" ଗାଁବାଲାଙ୍କୁ ଭୋଜିଭାତ ଦିଆଗଲା । ବର କନିଆଙ୍କୁ ଘେରି ଅନେକ ଠୋକା ଆଉ ଠୋକ ଥଟ୍ଟା କରିଲେ । ବାସନ୍ତୀକୁ ଖୁବ୍ ଭଲ ଲାଗିଲା । ଗାଁ ଲୋକ ତାକୁ ଖୁବ୍ ପସନ୍ଦ କରିଲେ ଆଉ କହିଲେ—"ଝିଅର ଲକ୍ଷଣ ଭଲ । ଦେଖିବାକୁ ଦୁର୍ଗା । ଭଗୀରଥ ଦାଦା, ଆପଣଙ୍କ ପୁଅର କପାଳ ଭଲ ।" କେତେଜଣ ସ୍ତ୍ରୀ ଦୀର୍ଘଶ୍ୱାସ ଟାଣି କହିଲେ ପୁଅ ଆଉ ଝିଅର ଯୋଡ଼ି ଖୁବ ଭଲ ହୋଇଛି । ଭଣିତା ଭଞ୍ଜଣୀ ! ତୁମ ବୋହୂ ଖୁବ ଭଲ । ଲମ୍ବା ମୁହଁର ଝିଅ ଘରକୁ ଆସିଲେ ସେହି ଘରର ଲୋକେ ଯଶ ପାଆନ୍ତି । ଲୁଚି ଲୁଚି ବାସନ୍ତୀ ଏହି ଅଭିମତ ଶୁଣି ଗର୍ବରେ ଫୁଲି ଉଠେ । ଝିଅଟା ରୂପ ଆଉ ପ୍ରେମରେ ଗୋଟିଏ ପୁରୁଷକୁ ବଶ କରିବା ସହଜ ।

ଆଜି ରାତି—ଜୀବନର ସବୁଠାରୁ ବଡ଼ରାତି—ବିଶେଷ ରାତି—ଯେ ଥରେ ହିଁ ଆସେ, ଆଉ ମନେ ରୁହେ । ଅନେକ ତ ଏଇ ରାତିଟା ଲାଗି ଆଶା ଆଉ କଳ୍ପନା ନେଇ ଅପେକ୍ଷା କରନ୍ତି । ଏଇ ରାତିରେ ଯୁବକ ପୁଅ ଆଉ ଯୁବତୀ ଝିଅଙ୍କର ଆଶା, ଆକାଂକ୍ଷା, ଆଉ ପ୍ରେମ ସାମାଜିକ ସ୍ୱୀକୃତି ପାଇଁ ନାଚିଉଠେ । କୋଠରୀରେ ଅଗୁରୁ ଓ ଚନ୍ଦନ ଗନ୍ଧ ତା ମନରେ ସଙ୍କୋଚ, ଭୟ ଆଉ ଅନୁରାଗର ଢୁଆର ଉଠାଇଲା । ପାରୁଲ, ପୁତୁଲି ଆଉ ପଡ଼ୋଶୀ ଘରର ବୋହୂ ତାକୁ କୋଠରୀ ଭିତରକୁ ଠେଲି ଦେଲାରୁ, ତାକୁ ମରିଗଲା ପରି ଲାଜ ଲାଗିଲା ।

ଛୋଟିଆ ଝରକା ଥିବା ବନ୍ଦ ଘରଟିରେ ଏମିତି ସୁନ୍ଦର ଭାବରେ ବିଛଣାଟା ଯେ ..କିଏ ସଜେଇଛି, ବାସନ୍ତୀ ଜାଣି ପାରିଲା ନାହିଁ । ମଥୁରା ମଧ୍ୟ ଏମିତି ହଠାତ୍ କୋଠରୀ ଭିତରକୁ ଆସିଲେ ତାକୁ କିପରି ଲାଗିବ ? ଲୁଚକାଳି ମଧ୍ୟ ସେ ତା' ମୁହଁକୁ ଚାହିଁ ପାରିବନି ! ଚାରୁଲତା କଥା ମନେ ପଡ଼ିଲା । ତା ଜୀବନରେ ଏବଂ ଅନେକଙ୍କ ଜୀବନରେ ମଧ୍ୟ ଏମିତି ଦିନ ଆସିଛି ! ଏମିତି ଗୋଟାଏ ଦିନର ପ୍ରତୀକ୍ଷାରେ ଏବଂ କଳ୍ପନାରେ କେତେ ଝିଅଙ୍କ ଆଖିରେ, ସ୍ୱପ୍ନ ଦେବତା ହୋଇଯାନ୍ତି । ସେ ଝରକାରେ ଉଙ୍କି ମାରିଲା । ବାହାରେ ବିଛେଇ ହୋଇଛି ଜହ୍ନ ଆଲୁଅ । ସୁନ୍ଦର କିରଣ ବାହାରେ ବଣ ଜଙ୍ଗଲ ଗଛକୁ ରଜତଝରଣାର ରୂପ ଦେଇଛି । ଉଜ୍ଜ୍ୱଳ ଗଙ୍ଗ ଦୂରରେ ସୋନାଇ ଯେପରି ସୋନାଇ ନୁହେଁ—ଶରତର ଚନ୍ଦ୍ରାବଳୀ ରାତିର ଯମୁନା—ସ୍ୱକଳ୍ପିତ ବୃନ୍ଦାବନର ପ୍ରାଣର ଯମୁନା ! ହଁ କୁମାରୀ ଜୀବନର ଉଦ୍‌ଯାପନ ମୁହୂର୍ତ୍ତରେ ଏମିତି ଭାବିବା ଭୁଲ । ନିଜର ମନକୁ ଏମିତି ଖାପ ଖୁଆଇ ନେବା ବୁଦ୍ଧିମତୀର କାମ ! ଧନଞ୍ଜୟ କଥା ତା' ମନକୁ ଆସିଲେ ମଧ୍ୟ ସେହି ସ୍ମୃତି ଧୂସର, ଅସ୍ପଷ୍ଟ ଆଉ ସ୍ମୃତିହୀନ । ସମୟର ସ୍ରୋତରେ ଭାସିଯାଇ ସେ ଅଜଣା ଦିଗନ୍ତରେ ମିଶିଗଲା ! ହଠାତ୍ ତା' ଚିନ୍ତାରେ ବାଧା ଆସିଲା । ଲାଜ ଲାଜ କରି ମଥୁରା ଘର ଭିତରକୁ ଆସିଲା । କବାଟ ବନ୍ଦ କଲା । ଦୀପ ଶିଖାକୁ ତେଜିଦେଲା । କିଛି ସମୟ ଏମିତି ଚିଆଁହୋଇ ରହିଲା, ଆହୁରି ଥରେ ବାସନ୍ତୀକୁ ଦେଖିଲା । ଶିଲ୍କ ପଞ୍ଜାବୀ ପକେଟରୁ ଦୁଇଖଣ୍ଡ କାଗଜ ଓ ଫାଉଣ୍ଟେନ୍ ବାହାର କରି ଟେବୁଲ ଉପରେ ରଖିଲା । ଅଟେଇ ନିଜ ମୁଣ୍ଡରେ ହାତ ବୁଲେଇଲା, ତା'ପରେ ଝରକା ଫାଙ୍କ ଦେଇ ପଡ଼ିଥିବା ଜହ୍ନ ଆଲୁଅକୁ ଦେଖିଲା ।

ଚାରୁଲତା କହିବା ଅନୁଯାୟୀ ପାନ ଆଣିଆ ଗୋଡ଼ତଳେ ରଖି ପ୍ରଣାମ କଲା । ସେ କିଛି ନକହି, ତା ମୁଣ୍ଡରେ ହାତ ରଖିଲା ଏବଂ ତାକୁ ବିଛଣାକୁ ଉଠେଇ ନେଇ ସେ କହିଲା—"ଆସ, ବସ" । ଭୟ ଓ ସଙ୍କୋଚ ତ୍ରସ୍ତ ସେ ତା' ପାଖରେ ବସିଲା । ବାସନ୍ତୀ ଆଙ୍ଗୁଳି ଧରି ସେ କହିଲା, "ଜଣ ଘର କଥା ମନେ ପଡ଼ୁଛି ?"

"ନା' ତ, ମନେ ପଡ଼ୁନି ।"

"ମୋତେ ଡରୁଛ ?"

"ନା"

କିନ୍ତୁ ବାସନ୍ତୀର ସାରା ଦେହଟା ଥରଥର କମ୍ପୁଥିଲା, କଥା ଯେମିତି ଗଳାରେ ଅଟକି ଯାଉଥିଲା । ତାକୁ ଯେପରି ସେ ଇନ୍ଦ୍ରଜାଲ କରିଛି । ତା' ମୁହଁକୁ ସେ ଚାହିଁ

ରହିଲା । ଓଢ଼ଣାଟେକ ସେ ମନ୍ତ୍ରମୁଗ୍ଧ ହୋଇ ଶୁଣି ରହିଛି । ସେହି ଶୁଣାଣୀରେ ଲାଳସା ଠାରୁ ପ୍ରେମ ହିଁ ବେଶୀ ।

"ତୁମକୁ ଘରେ କଣ ଏହି ନାଁରେ ଡାକନ୍ତି ?" ମଥୁରା ବୁଦ୍ଧିମାନ, ସେ ଗୋଟିଏ ନା ଗୋଟିଏ ପ୍ରଶ୍ନ ପଚାରି ପାରେ ।

"ହଁ ମୋତେ ଘରେ ଡାକିବାର ଅଲଗା ନାଁ ନାହିଁ ।"

"ଏଇ ନାଁ ଟା କିଏ ଦେଲା ?"

"ମାଉସୀ"

"କିନ୍ତୁ ମୋର ତ ଦୁଇଟା ନାଁ ।

"କଣ, କଣ ?"

"ଗାଁରେ ମଥୁରା, ବାହାରେ ମନଧନ ମଣ୍ଡଳ, ସରକାରୀ ନାଁଟା ମଧ୍ୟ ମନଧନ । ମୋତେ ମଧ୍ୟ ଏହି ନାଁଟା ଭଲଲାଗେ । ମଥୁରା ତ ଗୋଟିଏ ସ୍ଥାନର ନାମ । କିନ୍ତୁ ଲୋକେ ସେହି ନାଁ ଦେଇ ମୋତେ ପରିଚିତ କରେଇଲେ ।" ନିଜ ରସିକତାରେ ନିଜେ ଖୁବ୍ ଜୋରରେ ହସି ଉଠିଲା ।

"ମୁଁ ଯଦି ଧନ ବୋଲି ଡାକେ ?"

"ଖରାପ ଲାଗିବ ନାହିଁ, ହଁ ବରଂ ଖୁବ ଭଲ ଲାଗିବ । ଖୁବ୍ ପ୍ରେମରେ ସେ ତା' ମୁହଁରେ ହାତ ବୁଲେଇଲା । ସେ କିନ୍ତୁ ସଙ୍କୋଚରେ ମୁହଁ ବୁଲେଇଲା ନାହିଁ ।

"ତୁମେ ଖୁବ ସୁନ୍ଦର, ଖୁବ୍ ସୁନ୍ଦର ।"

"ସତେ ?

ମୋ ବାପ୍ପା ଦେଶର ସବୁ ଲୋକ୍କା ଏମ୍ଟ ହେମିତି ହଜି । ନାଁ ଭୁଲ ହେଲା ? ସୁନ୍ଦର ହେବାଟା ଏହି ଘଟଣା ଭିତରେ ନୁହେଁ । ହଁ, ମୁଁ ତେଣେ କହୁଥିଲି—ତୁମେ ସୁନ୍ଦର ଏବଂ ଏହା ତଥ୍ୟ ପୂର୍ଣ୍ଣ ପର ସତ ।"

"ଓଃ, ଏକବାରେ ଓକିଲର ପାରି ନ ଗଲାବା କଥା !" "ଏମିତି କହୁଛ କାମେଇ ଖାଉଛ । ମଣ୍ଡଳର କି ନାମ ! ତାଙ୍କୁ କେତେଅଡ଼େ ବୁଲିବାକୁ ପଡ଼େ । ମୁହଁ କଡ଼ା ହେଲେ ଲୋକ ଓଲଟି ଯିବ ।"

"ଏ କେମିତି କା କଥା ?

"ମୁଁ ଜଙ୍ଗଲି (ଅଢ଼ିବାସୀ)ଙ୍କ ପରି ଲମ୍ବା, ଚୌଡ଼ା ନଗିଁଷ ନୁହେଁ କି ?"

"ବାବୁ ପରି ଚେହେରା । ସଙ୍ଗ ର ଗୋବର୍ଦ୍ଧନ ନାହିଁ ।

"ନା, ନା 'ମୁଁ ତ ଗ୍ରାମପରି ତଳେ ଉପରେ ସମାନ ।"

"କଏ କହୁଛି ?"

"ମୁଁ ନିଜେ ।"

"କହିଲେ ହୋଇ ଗଲା ନା !"

"ଏମିତି ନ କହିଲେ, ତୁମେ ହସିଲ ଭଲ କଥା ତ ନାହିଁ !"

"ତା ବୋଲି, ନିଜକୁ ଖରାପ କହିବ ନା ?"

"ଭଲ ଲାଗେ । ।"

ଦୁଇଜଣଙ୍କର ଅଥା ଆଉ ହସ ଶେଷ ହେଲା । ମଥୁରର ହାତ ବାସନ୍ତୀ ମୁହଁରୁ ତଳକୁ ଗଲା । ରାତିର ନିବିଡ଼ତା ବାସନ୍ତୀକୁ ମଥୁରର ଛାତି ଉପରକୁ ଟାଣିନେଲା । ପ୍ରଥମେ ପ୍ରଥମେ ତାକୁ କେମିତି କଣ ଲାଗିଲା । ଦେହର ରକ୍ତର ଗତି ଖାକୁତର ହେଲେ ସୁଦ୍ଧା ଆତ୍ମସମର୍ପଣ କରିବାକୁ ଅଡୁଆ ଲାଗିଲା । ଯେମିତି ଗୋଟିଏ ବଡ଼ ବ୍ୟତିକ୍ରମ । କିନ୍ତୁ ତା'ର ଅଧିକାର ଅଛି । ଆଉ ନିଜର ମଧ୍ୟ ।

ସେ ଆପଣା ମୁହଁ ତାଙ୍କ ଲା । ଆଙ୍ଗୁଠି ଫାଙ୍କରେ ଦେଖିଲା, ଟେବୁଲ ଉପରେ ଦୁଇ ଗିଲାସ ଦୁଧ ଥୁଆ । ଶାଶୁଙ୍କ ନିର୍ଦ୍ଦେଶ ଅନୁଯାୟୀ ପାରୁଲ ରଖି ଦେଇଛି । ତା'ହେଲେ କ'ଣ ସେହି ରାତିରେ ଦୁଇଜଣଙ୍କୁ ଗିଲାସେ ଗିଲାସେ ଦୁଧ ପିଇବାକୁ ହୁଏ ? ବୋଧହୁଏ ଏଇ ରାତିରେ ନୂଆ କ୍ଳାନ୍ତି ଏବଂ ମଧୁର ଅବସାଦ ଦୂର କରିବାକୁ ସମସ୍ତଙ୍କୁ ଦୁଧ ପିଇବାକୁ ପଡ଼େ । ହୃଦୟର ଗୋପନ ଲାଳସା ଆଉ ଲାଜକୁଳୀ ରାତିର ଆକାଂକ୍ଷାକୁ ନୈତିକ ସମ୍ମତି ମିଳେ । ଏହା ମଧ୍ୟ ଚନ୍ଦ୍ର ସୂର୍ଯ୍ୟଙ୍କ ପରି ସତ !

ସେ ଧଇଁସଇଁ ହୋଇ କହିଲା—ଧନ ! ସ୍ୱାମୀଟା…

ତା ମୁହଁରେ ମୁହଁ ଲଗେଇ ସେ କହିଲା—କଣ ସ୍ୱାମୀ"…? ଲାଜ ଛାଡ଼ି ସେ କହିଲା—"ଲାଜ ଲାଗୁଛି ସ୍ୱାମୀଟା ଯଦି…।" ସେ ସ୍ୱାମୀଟା ଲିଭେଇ ଦେଲା । ଖୋଲା ଝରକା ଦେଇ ପଡ଼ୁଥିବା ଜହ୍ନର ନରମ ଆଲୁଅ କୋଠରୀର ଅନ୍ଧକାରକୁ ପତଳା କରିଥାଏ । ସେହି ଅନ୍ଧକାର ପହିଲି ପରିଚୟର ଲାଜ-ସଙ୍କୋଚକୁ ଦୂର କରିଦେଲା । ନୂତନ ଅନୁଭୂତିର ସ୍ୱାଦ ଚାଖିବାର ଦୁଇଟି ପ୍ରାଣୀଙ୍କର ଶୃଙ୍ଖଳମନକୁ କିଛି ସମୟ ପରର ଆଚରଣକୁ ବାସନାର ପ୍ରଚଣ୍ଡତା ବଶୀଭୂତ କରିଦେଲା । ଗୋଟିଏ ଦେହ ଅନ୍ୟ ଦେହ ନିକଟକୁ ସର୍ପସୂପ ଗତିରେ ପାଖେଇ ଗଲା । ତପ୍ତ ସନ୍ଧାନୀ ଦୁଇଟି ଦେହର ଏକକ ରୂପାନ୍ତରରେ ରାତିର ନୀରବତା ଆଉ ଅନ୍ଧକାର ବେଶି ଗୋପନ ଆଉ ବେଶୀ ମୋହମୟ ହୋଇ ଉଠିଲା । ସ୍ୱପ୍ନ ରଙ୍ଗୀନ୍ ହୋଇ ଉଠିଲା । ଦୁଇଟି ଦେହ ଏକ ହେଲା—ପୁରୁଷ ଓ ପ୍ରକୃତିର, ସୃଷ୍ଟିର ଇନ୍ଦ୍ରଜାଲ ତରଙ୍ଗର ଗୋଟିଏ ଛନ୍ଦ, ଗୋଟିଏ ରାଗ, ଦେହ ଦେହରେ ବନ୍ଧନ ହେବାର, ସନାତନ କାମନାର…।

# ପନ୍ଦର

ଘରଟିକୁ ଆନନ୍ଦ ମୁଖର କଲା—ବାସନ୍ତୀ ! ପୁତୁଲୀ ଆଉ ପାରୁଲ ଖାଉଙ୍କର ପାଖ ଛାଡ଼ିବାକୁ ନାରାଜ । ବୋହୂଠାରୁ ଆଦର ଯତ୍ନପାଇ ଭଣିତା ଆଉ ଭଗୀରଥ ପ୍ରଶଂସାରେ ପଞ୍ଚମୁଖ । ବାହା ଆଗରୁ ମଥୁରା ବେଶ୍ ଅନେକ ରାତିଯାଏ ଗାଁରେ ତାସ ଖେଳୁଥିଲା । ଆଜିକାଲି ସନ୍ଧ୍ୟାରେ ହିଁ ଘରକୁ ଆସେ । ଆଠମଙ୍ଗଳା ପରେ ଥରେ ନଣନ୍ଦମାନଙ୍କ ସଙ୍ଗରେ ବାସନ୍ତୀକୁ ସହରରେ ସିନେମା ଦେଖାଇ ଆଣିଲା ମଥୁରା । ବାହାର ପ୍ରଥମ ମାସରେ ସେମାନେ ଖୁବ୍ ବୁଲିଲେ । ବେଳେଶ୍ୱରର ମାଉସୀ ଘରକୁ ମଧ୍ୟ ଗଲେ । ତା'ପରେ ମାଗୁର ଗାଁ, ରୂପଧ, ଭାଲୁକମାଣି, କଟପାହର, ଆଉ ରାହାକୁ ମଧ୍ୟ ଗଲେ । ମଥୁରାର ଖୁବ୍ ଗର୍ବ । ଅନେକଙ୍କ ମୁହଁରୁ ସେ ତା' ସ୍ତ୍ରୀର ରୂପର ପ୍ରଶଂସା ଶୁଣିଛି । ସେମାନଙ୍କୁ ହରନ ମଣ୍ଡଳର ମା ମଧ୍ୟ କହିଥିଲା—"ଦେଖି ପେଟ ପୂରିଗଲାରେ, ମନଧନ ! ତୁମ ଦୁହିଁଙ୍କୁ ଦେଖି ଲାଗୁଛି ଯେମିତି ସୋନାଇ କୂଳରେ ହଳେ ଚକୁଆ—ଚକୋଇ ଚରି ବୁଲୁଛନ୍ତି ।"

ବାସନ୍ତୀର ବୋଉ ବାହାଘର ପରେ ଆସିଥିଲା । ଘର ଦେଖି ବୁଢ଼ୀମନ ସନ୍ତୁଷ୍ଟ ହେଲା । ସଙ୍ଗରେ ଫୁଲଲତା ମଧ୍ୟ ଆସିଥିଲା । ଇଙ୍ଗିତରେ ଫୁଲଲତା ବାସନ୍ତୀକୁ ମନ କଥା କହିଲା । ଖେରଗ୍ରାମ ସହର ଗଲାବେଳେ ଗୋଟିଏ ଚକର ଦେଇଯାଏ । ବାସନ୍ତୀ ମନରେ ସୁଖ, ଶାଶୁଆଡ଼େ ତ ଲାଗି ସୁଖ । କିନ୍ତୁ ଗୋଟିଏ କଥାରେ ତ ମନଟା ଦବିଯାଏ । ଥରେ ଖାଉଳ ମୁହଁରୁ ଶୁଣିଲା ଯେ, ଖେରଗ୍ରାମ ଆଗର ଅବୈଧ ସମ୍ପର୍କକୁ ଛାଡ଼ି ପାରିନାହିଁ । କଥାଟା ଆଜିକାଲି ସୁଜଳା କାନରେ ମଧ୍ୟ ପଡ଼ିଛି । ସେହି ଦୁଃଖରେ ବୁଢ଼ୀର ଦେହ ମଧ୍ୟ ବେଶି ଖରାପ ହୋଇଛି । କାଶଟା ରାତିରେ ଶୁଆଇ ଦେଉନାହିଁ । ଖେରଗ୍ରାମ ସହରରୁ ଡାକ୍ତରୀ ଔଷଧ ଆଣି ଦେଲା, ବୁଢ଼ୀର ତା ଉପରେ ରାଗ ଥିବାରୁ ଔଷଧକୁ ଛୁଇଁଲା ନାହିଁ । କହିଲା—"ମୋ ପାଇଁ ସେ କାହିଁକି ଚିନ୍ତା କରୁଛି ? ମରିବା ଦିନ ଆସିଗଲେ ଔଷଧ କି କାମ ଦେବ ! ଖେରଗ୍ରାମ ଆଣିବା ଔଷଧ ଖାଇବି ନାହିଁ । ଘରେ ପାପ ପଶିଛି ତରୁ ! ବର୍ତ୍ତମାନ ମୋତେ ଭଗବାନ ପାର କରିଦେଲେ ଭଲ ।"

ଈଶ୍ୱର ବିଶ୍ୱାସୀ ବୁଢ଼ା ବୁଢ଼ୀ ଯାହା ମରିଯିବାକୁ ଇଚ୍ଛା କରନ୍ତୁ ସେମାନେ ମରନ୍ତି ଏମିତି କେତୋଟି ଦୃଷ୍ଟାନ୍ତ ମଧ୍ୟ ପାଇଛି । ସେ ଭାବିଲା ଯେ, ଦରଙ୍ଗି ସ୍ଥାଲରେ

ଥିବା ସମୟରେ ବୋଉର ଶେଷ ମୁହୂର୍ତ୍ତରେ ତୁନ୍ଦାଏ ପାଣି ତା ପାଟିରେ ନ ଦେଇ ପାରିଲେ ତାକୁ ବହୁତ ଧନ ଲଗି ଶାନ୍ତି ମିଳବ ନାହିଁ । ଧନେ କାନ୍ଦ କାନ୍ଦ ମଥୁରାକୁ କହିଲାରୁ ସେ କହିଲା—"ଏ ସବୁ ଭାବି ମନ ଖରାପ କରୁଛ କାହିଁକ ? କପାଳରେ ଥିଲେ ନିଜର ଇଚ୍ଛା ପୂରଣ ହେବ । ମା ପ୍ରତି ଭକ୍ତି ଅଛ । ତା'ହେଲେ ଠିକ୍ ସମୟରେ ମା'କୁ ପାଇବ, ବାସନ୍ତୀ ସାନ୍ତ୍ୱନା ପାଇଲା ।

ବିବାହର ମାତ୍ର ଛଅମାସ ପରେ ବାସନ୍ତୀ ଜୀବନର ଚକ୍ର ଓଲଟି ଗଲା । ଏକ ପ୍ରଚଣ୍ଡ ଝଡ଼ ତା ଜୀବନର ସବୁ ସୁଖ ଓ ସ୍ୱପ୍ନକୁ ଧୂଳିସାତ କରିଦେଲା ।

କଥାରେ କହନ୍ତି—"ଊଣ୍ଡ ବାଇଦ ସହସ୍ରକୋଶ" ମଥୁରା ଧନେ ଗାଁ ଦୋକାନରେ ଅନେକ ଲୋକଙ୍କର ଆଲୋଚନା ଶୁଣିଲା । ଭିଡ଼ ଭିତରେ ସେ ବି ଯାଇଁ ଠିଆ ହେଲା । ତା'ର ଉପସ୍ଥିତିକୁ କେହି ଧ୍ୟାନ ଦେଇ ନଥିଲେ । ଆଲୋଚନା ଚାଲିଥିଲା—କଥା ହେଲା, ଗଲା ରାତିରେ ତଲ୍‌ସୁରସ୍ଥା ଲୋକେ ଭୋଗରାମକୁ ଧରି ବାନ୍ଧି ନେଲେ । ଖାଲି ପୁଲିସର ଭୟରେ ତାକୁ ଛାଡ଼ି ଦେଲେ । ସେ ଗୋଟାଏ ପାଲରେ ପଶିଯାଇଛି । ତଲ୍‌ସୁରସ୍ଥାରେ ଗୋଟାଏ ଚଣହଣିନା ସୁନ୍ଦରୀ ମାଇକନା ସହିତ ଥିଲାବେଳେ ତାକୁ ଲୋକେ ହାତେ ହାତେ ଧରିଲେ ।

ଧର୍ମପୁରୁଷର ଚରିତ୍ରର ଦୋଷ ଦେଖି ଲୋକେ ବଦନାମ କରିବାକୁ ପଞ୍ଚମୁଖ ହୁଅନ୍ତି । ସତେ ଯେପରି ମୁଖରା ସ୍ତ୍ରୀ କଥା, ପିଚ୍ ପିଚ୍ ପାନ ଛେପ ପକାଇ ଅନ୍ଧାର ଗପି ଚାଲିଥାଏ ! ମଥୁରା ଯେଉଁଠି ଲୁଚି ଠିଆ ହୋଇଥିଲା, ସେଇଠୁ ଶୁଣିଲା—"ହଁ, ସେଇ ଧନର ନାମ ଚଣ୍ଡାଳ । ଦି ପଇସା ଅଛି ବୋଲି ତାପାଦ ମାଟିରେ ଲାଗୁ ନାହିଁ । ଯାହା ମନରେ ପାପ ପ୍ରବେଶ କଲାଣି, ତାକୁ ରଖିବ କିଏ ? ସେହି ଘର ଝିଅ ଉପରେ ବି କଣ ଭରସା ? ତା'ର ଭଉଣୀ ଏଇ ମଥୁରାର ସ୍ତ୍ରୀ । ସେ କ'ଣ କମ୍ ? ପାଉଁଶିଲାର ସେଇ ଔଷଧ ଦେଲାବାଲା ଟୋକା ସହିତ ତା'ର ଅନେକ କିଛି ହୋଇଛି । ଲୋକେ କୁହନ୍ତି କୁଅଡ଼େ ରାତିରେ ପଳେଇବାକୁ ପ୍ରସ୍ତୁତ ଥିଲା । ଏକଥା ଶୁଣି ଜଣେ ପଚାରିଲା "ଦେଖ ଭାଇ ! ତୁ କମିତ ଏ ସବୁ ଖବର ପାଇଲୁ ?" ସେ କହିଲା—"ସୋନାଇପାଖର ଘାଟିଆ ଆଉ ପୋହାସି ମାଇକନା ଜାଇ ଆଇଁ ଆଉଁ, କଣ ଗଡଗାଁ (ଆହୁର ରଜାର ରାଜଧାନୀ) ର ଗୁପ୍ତଚର ଦରକାର ?"

ଆଉ ବେଶି ଶୁଣିବାକୁ ମଥୁରାର ଧୈର୍ଯ୍ୟ ନ ଥିଲା । କେହି ଦେଖିବା ଆଗରୁ ସେ ଭିତରୁ ଚାଲି ଆସିଲା । ଘରକୁ ଆସି ସେ ଆଶ୍ଚର୍ଯ୍ୟ ଭାବରେ ବ୍ୟବହାର କଲା । ଖୁବ୍ ଯୋରରେ ବାସନ୍ତୀକୁ କହିଲା—"ଶୁଣିଛ ତୁମର ଭାଇର କୀର୍ତ୍ତି ?

"କଣ ହେଲା ?"

"ବଡ଼ଘରର ପୁଅ, ତଳ୍‌ପୁରସ୍ତାରେ ହାତେ ହାତେ ଧରା ପଡ଼ିଲା । ଏମିତି କରିବା ଦରକାର ନ ଥିଲା, ମାଇକିନାର ମେଖଳା ତା ମୁହଁରେ ବାନ୍ଧିବା ଉଚିତ ଥିଲା ।"

"ଭଲ କରି କହୁନା କାହିଁକି ?"

"ଭ୍ରମର ଲମ୍ପଟ ଭାଇକୁ ତଳପୁରସ୍ତା ଲୋକେ ବାନ୍ଧି ରଖିଥିଲେ ।"

ବାସନ୍ତୀ ସବୁ ବୁଝି ପାରିଲା, ତା'ର ପ୍ର ସ୍ତୁ ଭାଇଙ୍କର କି ଅବସ୍ଥା ହୋଇ ନ ଥିବ, ତା'ର ଦୁଃଖ ହେଉଛି ମଥୁରର ବ୍ୟବହାର ସକାଶେ । ସେ କେବେ ଏମିତି କଥା କୁହେନା । ଆଜି ବରଂ କିଛି କହି ତା'କୁ ସାନ୍ତ୍ୱନା ଦିନା ଦେଇଥାନ୍ତା; ଭାଇର ଅପଯଶ କେଉଁ ଭଉଣୀ ସହ୍ୟ କରି ପାରିବ । ମଥୁର ହଠାତ୍ ଏମିତି ନିର୍ଦ୍ଦୟ କାହିଁକି ହେଲା ?

ସେହିଦିନଠାରୁ ମଥୁର ଅଲଗା ମଣିଷ ହୋଇଗଲା । ଧନଞ୍ଜୟଙ୍କୁ ସେ ଚିହ୍ନେ ! ତା ଦେହ ଜଳି ଉଠିଲା । ଦରିଙ୍ଗିସ୍କୁଲର କଳ୍ପନା କରିଣୀ ଘର ସହିତ ତାଙ୍କର ମନମାଳିନ୍ୟ ଥିଲା । ଦୁଇ ଦିନପରେ କଳ୍ପନାର ପୁଅ ଧନକାନ୍ତ ଚମ୍ପକଙ୍କ ଘରେ ଗୋଟାଏ ସଭାକରି ଖୁବ୍ ଖରାପ ଭାବରେ ସମାଲୋଚନା କଲା । ପାଖର ମଣିଷ ଧନକାନ୍ତ ଆଡ଼କୁ ଢଳିଲେ । ଆସ୍ତେ ଆସ୍ତେ କଥାଟାରେ ମଥୁରର ବିଶ୍ୱାସ ଆସିଗଲା । ବାସନ୍ତୀକୁ ମନ କଥାର ଇଙ୍ଗିତ ନ ଦେଲେ ସୁଦ୍ଧା ତା'ଙ୍କ ବ୍ୟବହାରରେ ବାସନ୍ତୀ ଅଜଣା ବିପଦର ଆଶଙ୍କା ପାଇଲା । ଆଜିକାଲି, ଦିଲ୍ଲୀପରଠାରୁ ଯେମିତି ଶୀଘ୍ର ଘରକୁ ଫେରୁଥିଲା ସେମିତି ଆସିଲା ନାହିଁ—ବେଶି ରାତିରେ ଆସେ । ବାସନ୍ତୀ ଆଡ଼କୁ ପିଠି କରି ଶୁଏ । ଘରେ ଥିବା ସମୟରେ ଅନବରତ କଣନା କଣ ଭାବୁଥାଏ । ଭିତରେ ପୁଷ୍ପଲି ଆଉ ପାରୁଲ ହସିଲେ ସେ ଯମଦାଗ୍ନି ପରି ଜଳିଉଠେ । ମଣ୍ଡଳ କାମରେ ହେଳା କଲା । ପୋଷାକ ପିନ୍ଧାରେ ଯତ୍ନ ନେଲା ନାହିଁ । ମୁହଁ ବନ୍ଦ କରି, ସମସ୍ତେ ଚୁପ୍‌ଚାପ୍ ରହିଲେ । ବାସନ୍ତୀର ଅନୁରୋଧ କାକୁତି ମିନତିକୁ ସେ ଗଣ୍ୟ କଲାନାହିଁ । ଜହ୍ନ ଆଲୁଅ ପରି ତାର କୋମଳ ମନ ଜ୍ୟେଷ୍ଠ ମାସର ଖରାପରି ଉଗ୍ର ହେଲା । କଥା କଥାକେ ରାଗିଲା । ବାସନ୍ତୀ ଯଦି କୁହେ—"ଗୋଟାଏ କମିଜ କେତେଦିନ ଧରି ପିନ୍ଧିବ ? କେଡ଼େ ମଇଳା ହେଲାଣି । ଏଇଟା ଏଥର ପିନ୍ଧ"—ସେତେବେଳେ ସେ ବାସନ୍ତୀ ଦେବା କାମିଜକୁ ପକାଇ ଦେଇ କୁହେ—"ତୁଚ୍ଛା ଆଦର ଦେଖାଇ ଲାଭ ନାହିଁ । ମୋ ଇଚ୍ଛା ମୁଁ ଯାହା ପିନ୍ଧିବି ।"

"ଆଜକାଲି ସହରଆଳୀରେ ବସ୍ତୁ ବସ୍ତୁ ଆପଣ ଉଠି ଯାଉଛନ୍ତି । ଏଥିରକ ଖାଇ ବେଶୀ ଖାଇବାକୁ ହେବ । ଦେହରେ ବଳ ବଢ଼ିବ । ବାସନ୍ତୀ ଦିନେ କହିଲା ।"

"ଡାକ୍ତରାଣୀ-ପରି ବକ୍ତୃତା ଦେବା ଦରକାର ନାହିଁ । ତୁମେ ସୁଖରେ ଖାଇପିଇ ବୀରାଙ୍ଗନା ହୁଅ ।" ମଥୁରା ଉତ୍ତର ଦେଲା ।

ଆଉ ଦିନେ ବାସନ୍ତୀ କହିଲା—"ଏମିତି ଦ'ପହରେ କୁଆଡ଼େ ବାହାରିଲ, ମୁଁ ତ ଦିନସାରା ତୁମ ଦର୍ଶନ ପାଉନି ।"

ରାଗି ମଥୁରା ଉତ୍ତର ଦେଲା—"ମୋତେ ଅନ୍ଧାରରେ ରଖିବାକୁ ଚେଷ୍ଟା କରୁଛନା ? ଏଣିକି ତୁମର ଅନୁମତି ନେଇ କୁଆଡ଼େ ଯିବି କି ? ବୁଝିଲ, ଏ ଅଞ୍ଚଳର ପୁରୁଷ ମାଇଚିଆ ନୁହନ୍ତି ।"

ମଥୁରାର କଥା ଏମିତି କର୍କଶ ଯେ ତାର ଗଳାରେ ତାହା ଆହୁରି ଭୟାନକ ଲାଗେ । ଟାଣ କଥା ଶୁଣି ଶୁଣି ବାସନ୍ତୀ ବହୁତ ଚେଷ୍ଟା କରେ, କିନ୍ତୁ ଆଗ ପରି ସେ ଆଉ ନିଜର କରି ପାରିଲା ନାହିଁ । କେବେକେବେ ରାତିରେ ଗୁମୁରି ଗୁମୁରି କାନ୍ଦିଲା । କଣ ହୋଇଛି ବୋଲି ସୁଦ୍ଧା ପଚାରିଲା ନାହିଁ । ଦିନେ କିନ୍ତୁ ଖୁବ୍ ଜୋରରେ କାନ୍ଦିଥିଲା । ପାଖଘରୁ ପୁତୁଳି ଆଉ ପାରୁଲି ଶୁଣିଥିଲେ ସୁଦ୍ଧା ନୀରବ ରହିଥିଲେ । ଭଗୀରଥ ଆଉ ଭଣିତା ନ ଶୁଣିଲା ପରି ରହିଲେ । କାରଣ ସ୍ୱାମୀ ସ୍ତ୍ରୀଙ୍କ କଜିଆର ଆଦିଅନ୍ତ ହେତୁ ଅହେତୁ କିଛି ନାହିଁ । ବୁଝିବା ମଧ୍ୟ କଷ୍ଟ । ତାଙ୍କ କଳିରେ ମୁଣ୍ଡ ପୂରେଇବାର ବିପଦ । ଏଇଟା ଜଣା କଥା ଯେ, ସ୍ୱାମୀ ସ୍ତ୍ରୀଙ୍କ କଜିଆ ମୁହୂର୍ତ୍ତିକରେ ତୁଟେ । ଆଉ ମୁହୂର୍ତ୍ତିକରେ ପୁଣି ଆପଣାର ହୁଅନ୍ତି । କିନ୍ତୁ ବାସନ୍ତୀର କରୁଣ କ୍ରନ୍ଦନ ମଥୁରା ମନକୁ ତରଳେଇ ପାରିଲା ନାହିଁ । ସେ ରାଗି ଉଠିଲା—"କହୁଥିଲା, ଯଖୁଣୀ ପରି ସବୁବେଳେ କାନ୍ଦୁଛୁ କାହିଁକି ? ଶୋଇବାକୁ ଦେବୁ ନାହିଁ ?" କୋହଟାଣି ଅନ୍ତରର ସବୁ ବେଦନାକୁ ତାଳି ଦେଇ କହିଲା "ମୁଁ କଣ ଦୋଷ କଲି ? କୁହନ୍ତୁ, ଶପଥ କରି କୁହନ୍ତୁ । ନ କହିଲେ ମୁଁ କେମିତି ଜାଣିବି ? ମୁଁ ଯଦି ଖରାପ ତାହା ହେଲେ ସେଇଆ କୁହନ୍ତୁ, ଆପଣ ଯେମିତି ଚାହାନ୍ତି, ସେମିତି ହେବାକୁ ଚେଷ୍ଟା କରିବି । ମୋତେ ଏଇତକ ସୁବିଧା ଦିଅନ୍ତୁ, ମୋତେ ଦୁଃଖ ଦେବାକୁ ଆପଣ କଣ ଭଲ ପାଆନ୍ତି ।" ମଥୁରା ନୀରବ ରହିଥିଲା, ସେ କେବଳ ଦୀର୍ଘଶ୍ୱାସଟାଏ ଟାଣିଥିଲା । ବିଛଣାରେ ଉଠିବସି ବଡ଼ ଟାଣ୍ଡି ଟାଣ୍ଡି ଯେ ଘର ଭିତରେ ବୁଲୁବୁଲୁ କହୁଥିଲା—"ମୋ ମନରେ ଥିବା କଥା କହି ଦେଲେ, ତୁମର ଆଉ ମୋ ପାଖରେ ରହିବା ସମ୍ଭବ ହେବନି । ସ୍ତ୍ରୀମାନେ ପୁରୁଷକୁ ମୂର୍ଖ ଭାବନ୍ତି, ଅଛି ସୁଲାଖି ଯେ ଧରାପଡ଼େ ଏକଥା ଜଣାନାହିଁ ।"

ଏଇକଥା ଶୁଣିବା ମାତ୍ରକେ ବାସନ୍ତୀର ମୁଣ୍ଡ ଘୂରିବାକୁ ଲାଗିଲା । କାନ ଦୁଇଟା ଶୂନ୍ୟ ଲାଗିଲା । ସେ ଅବଶ ହୋଇ ପଡ଼ିଲା । ଦେହରୁ ଜର ଝାଳ ବୋହିଗଲା । ମୁହଁରୁ କଥା ବାହାରିଲା ନାହିଁ । ସେ ମଥୁରିକୁ ଆଉ କିଛି ପଚାରିବାର ପ୍ରୟୋଜନ ବୋଲି ଭାବିଲା ନାହିଁ । ଦୁର୍ଭାଗ୍ୟ ବୋଧହୁଏ ତାର ସଙ୍ଗୀ ହେଲାଣି । ଜଣକୁ ବହୁ କଷ୍ଟରେ ପରିତ୍ୟାଗ କରି, ଅନ୍ୟ ଜଣଙ୍କ ପାଖରେ ଶାନ୍ତିରେ ଜୀବନ କଟେଇବ ବୋଲି ଭାବିଥିଲା । ଯେଉଁ କଥା ଲାଗି ତା' ଜୀବନରେ ସଙ୍କଟ ଆସିବାର ସମ୍ଭାବନା ତା ଉପରେ ନ ଆସୁ ବୋଲି ଭଗବାନଙ୍କୁ ସେ ଡାକୁଥିଲା ବର୍ତ୍ତମାନ କିନ୍ତୁ ସେଇଆ ହେଲା । ନିଶ୍ଚୟ ତା ବିଷୟରେ କିଏ ନାଁ କିଏ ଶୁଣିଛି । ସେ ଭାବିଲା—ଧନଞ୍ଜୟ ପ୍ରତି ମନର ଆଂଶିକ ଆବେଗ ଥିଲା । ଆଉ ଦୁର୍ବଳ ଅବସ୍ଥାରେ ତା ପ୍ରତି ଆକର୍ଷିତ ହୋଇଥିଲା । ଏଇ ସତ୍ୟକଥା ମଥୁରିକୁ କହିଦେଲେ ମଥୁରି ମନର ସକଳ ସନ୍ଦେହ ଆଉ ଜଟିଳତା ଦୂର ହେବକି ନାହିଁ ? ତାକୁ କାହିଁ କାହିଁ କହିବ ? କାକୁତି ମିନତି କରି କ୍ଷମାଭିକ୍ଷା କରିବ । ସେ ଯେ ଖୁବ୍ ଭଲ ମଣିଷ । ଏଇ କେତୋଟି ମାସ ମଧ୍ୟରେ ସେ ତାକୁ ଭାରି ଭଲ ପାଇ ପକେଇଛି । ସେ ମିଥ୍ୟା ନୁହେଁ । ତାର ପ୍ରେମ ସତ୍ୟ ।

କିନ୍ତୁ ହଜାର ଚେଷ୍ଟା କରି ସୁଦ୍ଧା ସେ କଥା ତାକୁ କହିପାରିଲା ନାହିଁ । ଦାରୁଣ ବିପଦର ଆଶଙ୍କା ତାକୁ କଣ୍ଠରୁଦ୍ଧ କଲା । ଟଳି ଟଳି ବାହାରକୁ ଆସି ଅଣ୍ଡାପାଣି ମୁହଁକୁ ଛାଟି ପୁଣି ଯାଇ ଶୋଇଲା । ପଲଙ୍କରେ ପଡ଼ିଥିବା ନରମ ବିଛଣାଟା ଯେପରି କଣ୍ଟାପରି ତା ଦେହରେ ଗଳିଗଲା ।

କିଛିଦିନ ପରେ ମୋରିପୁରର ଜଣେ ଲୋକ ଭଗୀରଥ କାନୁନଗୋଙ୍କ ଘରେ ଖବର ଦେଲା ଯେ, ବାସନ୍ତୀର ବୋଉର ଦେହ ଖୁବ୍ ଖରାପ । ଇଞ୍ଜେକ୍ସନ ଦିଆ ହୋଇଛି । ରାତି ପାରି ହେବ କି ନାହିଁ, ସୁଜଳାର ଝିଅ ଓ ଜୋଇଁଙ୍କୁ ଦେଖିବାକୁ ଭାରି ଇଚ୍ଛା ।

ଏକଥା ଶୁଣି ବାସନ୍ତୀ ଅସ୍ଥିର ହୋଇପଡ଼ିଲା । ଭଣିତା ଆଉ ଭଗୀରଥ ମଥୁରିଙ୍କୁ ଓ ବାସନ୍ତୀକୁ ତା ମା ପାଖକୁ ନେବାକୁ କଡ଼ା ନିର୍ଦ୍ଦେଶ ଦେଲେ । ସେ କିନ୍ତୁ ଅଚଳ ଅଟଳ । ସେ ଜବାବ ଦେଲା "ମୋ ସ୍ତ୍ରୀକୁ ନେବା କଥାଟା ମୋ କାମ, ଅନ୍ୟର କହିବାର କିଛି ନାହିଁ । ମା ବାପାଙ୍କ କଥାକୁ ସେ ଶୁଣିଲା ନାହିଁ । କଥାଟା କାଳେ ଖରାପ ହେବ ଭାବି ଭଗୀରଥ କାନୁନଗୋ ନିଜେ ସୁଜଳାକୁ ଦେଖିବାକୁ ଗଲେ ଏବଂ ସେହିଦିନ ସନ୍ଧ୍ୟାରେ ଫେରି ଆସି ଖବର ଦେଲେ ଏକା ସଙ୍ଗରେ ଅନେକ ରୋଗ

ହୋଇଛି । ଡାକ୍ତର ଆହୁରି କଡ଼ା ଇଞ୍ଜେକ୍‌ସନ୍ ଦେଇଛି । ଭଣିତା ପଚାରିଲା— "ଏମାନେ ଯେ ଗଲେନି, କାରଣ କଣ କହିଲ ?" ଭଗୀରଥ କହିଲା—'ମୁଁ କହିଲି ଯେ ମଥୁରି କେଇଦିନ ଧରି ସହରରେ ଅଛି ଆଉ ସେଥିପାଇଁ ମୁଁ ଏକା ଗାଡ଼ିଘୋଡ଼ା ଠିକ୍ କରିପାରିଲି ନାହିଁ ।"

ଏଇକଥା ଶୁଣି ବାସନ୍ତୀର ମନ କିଛିଟା ଶାନ୍ତ ହେଲା । ମଥୁରି ପ୍ରତି ଏଥର ମନରେ ଆକ୍ରୋଶ ହେଲା । ପୁରୁଷ ହେଲା ବୋଲି ସେ ତା' ପ୍ରତି ଏମିତି ଅତ୍ୟାଚାର କରିବ ? ରୋଗୀ ମା'କୁ ଦେଖିବାକୁ ନ ଦେବାଟା ଖାଲି ଅତ୍ୟାଚାର ନୁହେଁ, ପାଶବିକ ନିଷ୍ଠୁରତା ମଧ୍ୟ । ଆଗପରି ସେ ଆଉ ରାତିରେ କାନ୍ଦିଲା ନାହିଁ; କିନ୍ତୁ ଶୋଇପାରିଲା ନାହିଁ । ଶୋଇବା ଘରେ ଦୃଢ଼ କଣ୍ଠରେ ସେ ମଥୁରିକୁ କହିଲା—"ମୁଁ ଯିବା କହି ଦୋଷ କରିଛି କିନ୍ତୁ ବୋଉ କଣ କଲା ? ମୋତେ କଣ କିଣା ଗୋଲାମ ପାଇଛନ୍ତି ?" ସେ ମଧ୍ୟ ଆହୁରି ଦୃଢ଼ କଣ୍ଠରେ କହିଲା, "ମୁଁ ତୁମକୁ ଧରି ବାନ୍ଧି ରଖିନି, ଯିବତ ଯା, ଆଉ ନ ଆସିଲେ ଚଳିବ ।"

"ତାହାହେଲେ ବିଭା ହେଉଥିଲ କାହିଁକି ?"

"ସେଇଟା ମୋର ଭୁଲ୍ ।"

"ଆପଣ ମୋ ଉପରେ ଖୁବ୍ ବଡ ସନ୍ଦେହ କରିଛନ୍ତି ।"

"ସନ୍ଦେହ କରିବାର ପ୍ରୟୋଜନ ନାହିଁ ।" କାନ ଦୁଇଟା ଥିଲେ ହେଲା ।" ଏଇକଥା ମଥୁରି ଅନ୍ତର ଭିତରୁ କହିଲା । ହଠାତ୍ ସେ ତାକୁ ସବୁ କହିଦେବାକୁ ଭାବିଲା । ତା'ର ମୁହଁରେ ବିଚାରକର ଭାବ୍, କଠିନ ଗାମ୍ଭୀର୍ଯ୍ୟ ।

ବାସନ୍ତୀ କହିଲା—"ତା'ହେଲେ ଅନ୍ୟର ଅତିରଞ୍ଜିତ କଥାକୁ ବିଶ୍ୱାସ କରିବା ଆଗରୁ ମୋ କଥା ଶୁଣି ନିଅନ୍ତୁ ।"

ମଥୁରି ଏକଥା ଶୁଣି ତା ମୁହଁକୁ ବଲବଲ କରି ଚାହିଁ ରହିଲା । କିଏ ଜାଣେ ସତକଥା କହିବକି ? ତା ପ୍ରତି ଦୟା ହେଲା । ସେ କହିବାକୁ ଅନୁମତି ଦେଲା ।

ମଥୁରିକୁ ତାର ଆଗୁରି ଜୀବନର ସାରଥୀ ଭାବି, ବାସନ୍ତୀ ଧନଞ୍ଜୟ ସହିତ ତାର ସମ୍ପର୍କ ଏବଂ ସେ ସମ୍ପର୍କ କିପରି ଧୀରେ ଧୀରେ ବୃଦ୍ଧି ପାଇ ପୁଣି କମିଗଲା । ସବୁକଥା ଅତି ଆବେଗରେ କହିଲା । କିନ୍ତୁ ଠାକୁଆ ଘାଟରେ ତା ଛାତି ଉପରେ ମୁଣ୍ଡ ରଖିବା ଆଉ ରାତିରେ ତା ସହିତ ପଳେଇବା କଥା କହିଲା ନାହିଁ । କଥା ଶେଷ କରି କିଛି ସମୟ କାନ୍ଦିଲା ଏବଂ ମଥୁରିର ହାତ ଧରି ହାତକୁ ହଲେଇ ପଚାରିଲା—"ଜୁହୁଁ ଆପଣ ମୋତେ କ୍ଷମା କଲେକି ନାହିଁ ? ସନ୍ଦେହ ଦୂର ହୋଇଛି ତ ?"

ପଥର ପରି ନିଶ୍ଚଳ ହୋଇ ବସି ରହିଲା ମଥୁରା । କେବଳ ଆଖି ଛଳଛଳ ହୋଇଉଠିଲା । ଗେଞ୍ଜିଟା ଝାଳରେ ଡନ୍ତିଗଲା । କିଛି ନ କହି ଘରୁ ବାହାରିଗଲା । ବାସନ୍ତୀ ବୁଝିଲା ଅଗଠାରୁ ସେ ବେଶୀ ହତାଶ ହୋଇଛି । ଅବଶ ହୋଇ ସେ ବିଛଣାରେ ପଡ଼ିଗଲା ।

ତୁଆରୁ ସାଇକେଲ ନେବାର ଶବ୍ଦ ଶୁଣି ବାସନ୍ତୀ ଧଡ଼ପଡ଼ ହୋଇ ଉଠି ଆସିଲା, ଆଉ ଦେଖିଲା କାନ୍ଧରେ କମିଜ ପକେଇ, ମଥୁରା ସାଇକେଲରେ ପମ୍ପ ଦେଉଛି ।

ବାସନ୍ତୀ ପଚାରିଲା—"ସ୍ତୁ ଜଳଖିଆ ନଖାଇ କୁଆଡ଼େ ଯିବ ?" ଅନ୍ୟ ଆଡ଼କୁ ଚାହିଁ ସେ କହିଲା "ଅନେକ ଯାଗାକୁ ଯିବାକୁ ପଡ଼ିବ । ମୋର ଅନେକ କାମ ଅଛି ।"

କିନ୍ତୁ ମୋ ପ୍ରାଣ ଆଜ ଯାନ୍ତୁ ନାହିଁ, ମୁ ଖୁବ୍ ଖରାପ ସ୍ୱପ୍ନ ଦେଖିଛି ।"

"ହୁଁ ! ତୁମ ସ୍ୱପ୍ନ କଥା କହିଲେ ସରକାର ମାନିବେ ?"

ଆଉ ତା କଥାକୁ କାନ ନ ଦେଇ ସେ ସାଇକେଲରେ ଗଲା । ବାସନ୍ତୀର ଆଉ ବୁଝିବାକୁ ବାକି ନ ଥିଲା ଯେ ସେ କିନା କାମରେ ଗଲା ।

ଗାଁ ଦୋକାନ ଆଗରେ ଚାରି ପାଞ୍ଚ ଜଣ ମଣିଷ ଥିଲେ । ସେମାନେ ପଚାରିଲେ ଭଲନା ମଣ୍ଡଳ ? କୁଆଡ଼େ ବାହାରିଲ ?" ଏମିତି ଅନେକ ପ୍ରଶ୍ନର ଉତ୍ତର ନ ଦେଇ ସେ ଚାଲିଗଲା । ସେମାନେ ନିଜ ମଧ୍ୟରେ କଥାବାର୍ତ୍ତା ହେଲେ । "ଦିନ ଦୁଇଟା ଭିତରେ ଟାଣୁଆ ମଣିଷଟା ଏକବାରେ କଣ ହୋଇଗଲା ? ଇଆଡ଼କୁ ତାକୁ ଚାହିଁବାକୁ ଲାଜ । ଏଇସବୁ କଥା ଶୁଣିଲେ ସେ କଣ ଶାନ୍ତିରେ ରହିପାରିବ ?

"ଆଡ଼େ ତା ଅନ୍ତର ଦଗ୍ଧ ହୋଇ ଯାଉଛି । କି ମଣିଷ କଣ ହେଲାଣି ! ଦାଢ଼ୀ ଝିଅର ହେଉଚି । ମୁଣ୍ଡ ଫରଫର । କା ସଙ୍ଗରେ କଥା ନାହିଁ । ପୁଣି ଶୁଣିଲି କୁଆଡ଼େ ସବ୍‌ଡ଼େପୁଟି ଅଫିସରେ ହାଜର ଦେବାକୁ ଯାଉଚି ।"

ଖିଲ୍‌ଗୁଣ୍ଡି ଦେଇ ବଡ଼ରାସ୍ତା ଧରିଲା ମଥୁରା । ତା ଦେହରେ ଆଜି ନିଆଁ ଜଳୁଛି । ନାନାପ୍ରକାର ଚିନ୍ତା, ତାର ବାହ୍ୟଜ୍ଞାନକୁ ଗ୍ରାସ କରୁଛି । ଏତେଦିନ ସେ ପରମୁହଁରୁ ଶୁଣା କଥାକୁ ଏତେଟା ବିଶ୍ୱାସ କରି ନ ଥିଲା । ବାସନ୍ତୀ ପ୍ରତି ଖରାପ ବ୍ୟବହାର କଲେ ସୁଦ୍ଧା ମନର ଅନ୍ତରାଳରେ ତା ପ୍ରତି ଭଲ ପାଇବା ଥିଲା, ବର୍ତ୍ତମାନ ସୁଦ୍ଧା ତା ପ୍ରତି ଭଲ ପାଇବା ଅଛି । ଆଉ ସେଥିପାଇଁ ସେ ନିଜକୁ ବେଶୀ ଅସହାୟ ମନେ କଲା । ସେ ହେଲା ତା ଜୀବନର ପ୍ରଥମ ନାରୀ କିନ୍ତୁ ତା'ର ନିଜ ମୁହଁରୁ ପରକଥା

ସହିତ ମିଳିଯିବା କଥା ଶୁଣି ସେ ଭାଙ୍ଗି ପଡ଼ୁଛି । ସେ ଭାବିଲା ଯେ ଦେହ ଓ ମନର ସକଳ ମାଧୁରୀ ବାସନ୍ତୀ ଧନଞ୍ଜୟଙ୍କୁ ଦେଇଛି । ନାରୀ ହୋଇ ସେ ଏମିତି କହି ପାରିବନି । ଏମିତି ସତ୍‌ସାହସ ନ ଥାଏ । ସେ କ'ଣ ଛଳନାମୟୀ ? ସୌନ୍ଦର୍ଯ୍ୟ ତାକୁ ଛଳନା କରିବାକୁ ସାହାଯ୍ୟ କରୁଛି । ସେ ସଙ୍କଟରେ ପଡ଼ୁଛି । ଆତ୍ମଘାତୀ ଜଟିଳତାରେ ପଡ଼ୁଛି, ତାର ପ୍ରେମ, ତା'ର ଆକାଂକ୍ଷା, ଆଉ ଆଶା, ଭବିଷ୍ୟତ ସ୍ୱପ୍ନ ମଧ୍ୟ ବିନା ଦୋଷରେ ବ୍ୟର୍ଥ ହୋଇଛି । ବାରେ ବାରେ ତା ମନକୁ ଆସୁଛି ତାର ନିଜ ମୁହଁରୁ ଶୁଣା ପୀରିତର କଥା । ବିଶ୍ୱାସ କରିବାକୁ ପଡ଼ିବ । ଏହାଠାରୁ ବେଶୀ ବା କଣ ଘଟିପାରେ । ଏହାଠାରୁ ଘଟଣା କମ୍ ହୋଇ ନ ପାରେ । ସେ ପୁରୁଷ ହୋଇ, ସ୍ୱାମୀ ହୋଇ, କେମିତି ସହିବ ?"

ସେଦିନ ରାସ୍ତାରେ ବହୁତ ବସ୍ ଆଉ ମଟର । ଦଲଙ୍ଗ ଘାଟର ହାଟଦିନ । ଭ୍ୟାନ୍, ଡିଜେଲ ଟ୍ରକ ଆଉ ଜିପ୍ ଗାଡ଼ିର ଯିବା ଆସିବା ଖୁବ୍ ବଢ଼ିଛି । ଧୂଳି ପ୍ରକୋପରେ ଯିବା ଆସିବା କରିବା କଷ୍ଟ । ମଥୁରର ବିଶେଷ କିଛି କାମ ନଥିଲା । ସେ ଖାଲି ଖାଲି ବଜାର ଆଡ଼କୁ ବୁଲିଛି । ଦଲଙ୍ଗ ଘାଟ ବଜାରରେ ଧନଞ୍ଜୟଙ୍କୁ ଭେଟିବାକୁ ତା'ର ଇଚ୍ଛା । କିନ୍ତୁ ଧନଞ୍ଜୟଙ୍କୁ ସେ ପାଇଲା ନାହିଁ ।

ପାଉଁଶିଳାରେ ଗୋଟିଏ ବନ୍ଧ ସରକାର ବାନ୍ଧିବାକୁ ଠିକ୍ କରିଥିଲେ ସୁଦ୍ଧା ତାହା ଏ ଯାଏଁ ହୋଇନି । ସେହି କାମରେ ଧନଞ୍ଜୟ ଶିଲଂକୁ ଯାଇଥିଲା ।

ଦି ପହରେ ସେ ଘରକୁ ଫେରିଲା । ଘରମୁହାଁ ହୋଇ ସେ ବେଶୀ ଅଶାନ୍ତି ପାଇଲା । କି ସୁଖ ପାଇବା ପାଇଁ ସେ ଘରକୁ ଯିବ ? ସେ ସୁଖ ଉଦାସୀନ ହୋଇ ଯାଉଛି । ପୁରୁଣା ସ୍ମୃତି ତା ମନକୁ ଘାଣ୍ଟୁଛି ।

ଶିଲଗୁଡ଼ୀ ଦେଇ ବଡ଼ ରାସ୍ତାରେ ସେ ମାଇଲିଏ ଆସିଲା ପରେ ବଜାର ବସ୍ତିର ଭିଡ଼ ବଢ଼ିଲା । ହାଟ ଭାଙ୍ଗିବା ସମୟ ହେଲା । ବସ୍, ମଟର ପ୍ରତି ସତର୍କ ହେବାକୁ ସେ ପାଶୋରି ଗଲା, ଆଉ ମଧ୍ୟ ଧୂଳିରେ ମୁହଁ ଧଳା ହୋଇଛି । ମଟର ହର୍ଣ୍ଣ ଆଉ ଘର ଘର ଶବ୍ଦ ତା କାନରେ ପଶୁନି । ସେ ଯେପରି ଧ୍ୟାନ ଯୋଗୀ, ଚରମ ନିସ୍ତବ୍ଧତା ଯେପରି ତା'ର ଧ୍ୟାନ ଓ ଧାରଣାକୁ ଶାନ୍ତ କରିଛି । ରାସ୍ତାରେ ସାଇକେଲ ନେଇଯିବାର ନିୟମ ନ ମାନିବାରୁ, ମଟର ଡ୍ରାଇଭରମାନେ ମଧ୍ୟ ଅସୁବିଧାର ସମ୍ମୁଖୀନ ହେଉଛନ୍ତି । ମଟର ଅଟକେଇ, ତାକୁ ଗାଳି ଦେଉଛନ୍ତି । ମଥୁର କିନ୍ତୁ ସେସବୁ କିଛି ଶୁଣିନି । ସେ କୁଆଡ଼େ ଯାଉଛି, କୁଆଡ଼େ ଯାଇଥିଲା, ଆଉ କାହିଁକି ଯାଉଥିଲା, ସେ ନିଜେ କହି

ପାରିବ ନାହିଁ । ସେ ଚନ୍ଦ୍ରା ଯେତିକ ବଢ଼େ ସେ ସେମିତି ଅନ୍ୟ ମନସ୍କ ହୋଇଉଠେ । ଶେଷରେ ଯାହା ଘଟିବାର, ତାହାହିଁ ଘଟିଲା । ଅଳ୍ପ ଆଗରୁ ଯାଇଥିବା ଢ଼ିଜେଲ ଟ୍ରକ୍ ଉଠାଇଥିବା ଧୂଳିରେ ସେ କିଛି ଦେଖି ପାରିଲାନି । ଜୋରରେ ଆସୁଥିବା ଟ୍ରକଟା ବ୍ରେକମାଙ୍କ ମଧ୍ୟ ନିରାପଦ ଦୂରତ୍ୱ ରଖିପାରିଲାନି । ସାଇକେଲ ସହିତ ମଥୁରା ଟ୍ରକତଳେ ପଡ଼ିଗଲା । ଅଳ୍ପ ଦୂରରେ ଟ୍ରକଟି ଠିଆ ହେଲା । ଡ୍ରାଇଭର ଓହ୍ଲେଇ ଆସି ଦେଖିଲା, ତିନି ବର୍ଗମିଟର ସ୍ଥାନ ରକ୍ତରେ ଓଦା । ମଣିଷଟା ଏମିତି ଛେଚା ହୋଇଛି ଯେ, ମଣିଷ ବୋଲି ଚିହ୍ନିବା କଷ୍ଟ । ମୁହଁଟା ଛେଚି ହୋଇ ଯାଇଛି । ବୀଭତ୍ସ ଦୃଶ୍ୟ । ଚପା ପଡ଼ିବା ସଙ୍ଗେ ସଙ୍ଗେ ତାର ମୃତ୍ୟୁ ହୋଇଛି । ସାଇକେଲଟା ଗୁଣ୍ଡା ହୋଇଛି ।

ହଠାତ୍ ବ୍ରେକ ମାରିବାଟା ଦୁର୍ଘଟଣାର ସଙ୍କେତ । ଦୈତ୍ୟର ଅଟ୍ଟହାସ୍ୟ ପରି ଶବ୍ଦଟା । ତାକୁ ଶୁଣି, ଦୁର୍ଘଟଣା ବୋଲି ପାଖର ଲୋକେ ଜମା ହେଲେ । ଲୋକଙ୍କୁ ଦେଖି ଡ୍ରାଇଭରର ଭୟ ହେଲା, ମୃତ୍ୟୁ ଲାଗି ତାର ଖୁବ୍ ଦୁଃଖ ହେଲା । ଘଟଣାର ବୀଭତ୍ସତା ତାକୁ ଚେତନାଶୂନ୍ୟ କରିଥିଲା । ତା ଆଡ଼କୁ ମଣିଷ ଆସିବାର ଦେଖି ତା'ର ବୁଦ୍ଧି ପଶିଲା । ଗାଁ ମଣିଷ ବି ସହଜ ନୁହନ୍ତି । ତାକୁ ଘେରିଯାଇ ପିଟିବେ । ସେହି କାରଣରୁ ସେ ଡେରି ନ କରି ପୂରାଦମରେ ଟ୍ରକ ଚଲେଇଲା । ତା ମନରେ ଦୁଃଖ ଯଦିଓ ହେଲା ତଥାପି ତା'କୁ ପଳେଇ ପଳେଇ ଆସିବାଲାଗି ଅନୁଶୋଚନା ହେଲା ନାହିଁ; ମରିବା କଥା ମଲା, ଜୀଇବାଉ ଥିଲେ ରକ୍ଷା ପାଇଥାନ୍ତା ।

ଦୁର୍ଘଟଣା ପାଖରେ ମଣିଷର ଭିଡ଼ ବଢ଼ିଲା । ଆସୁଥିବା କେତେକ ମଟର ଆଉ ଟ୍ରକ ଦୁର୍ଘଟଣାର କାରଣ ଅନୁସନ୍ଧାନ କଲେ । ଶବକୁ ଚିହ୍ନଟ କରିବା ବଡ଼ କଷ୍ଟ ହେଲା । ବାଁ ହାତଟା ଟ୍ରକ ଚକାର ବାହାରେ ଥିଲା । ହାତଟାରୁ ମଥୁରା ବୋଲି ଚିହ୍ନିବା ସହଜ ହେଲା । ହାତରେ ଫିଟାଉଥିବା ଘଡ଼ିଟା ଝୁଲୁଥାଏ । କମିଜର ହାତ ଆଉ ଘଡ଼ି ପିନ୍ଧା ହାତରୁ ମଣିଷଟା ମଥୁରା ବୋଲି ଜଣେ ଦୁଇଜଣ ମତଦେଲେ । ଅନେକ ମନୁଷ୍ୟ ଏହି ବୀଭତ୍ସ ଦୃଶ୍ୟ ଦେଖି ଆଖି ବୁଜି ଚାଲିଗଲେ ।

ପୁଲିସ ଆସିଲା । ଦୁର୍ଘଟଣା ଜାଗାକୁ ମପାଚୁପା କଲେ । ଭାଙ୍ଗି ଯାଇଥିବା ହାତରୁ ମୁଦିଟାଏ ମଧ୍ୟ ମିଳିଲା । ମୃତ୍ୟୁର ବିଶ୍ୱାସଯୋଗ୍ୟ ଚିହ୍ନଟ ହେବାର, ନିଶ୍ଚିତ ହେବାର ସମ୍ଭାବନା ମିଳିଲା । କିନ୍ତୁ ଦୁର୍ଘଟଣା କରିଥିବା ମଟରକୁ ଧରିବା ଜିଣିଲା ପୁଲିସର ସାଧ୍ୟ ବାହାରେ ।

ପବନ ପରି ଖବର ଚାରିଆଡ଼େ ବ୍ୟାପିଗଲା । ମୋହନପୁରରୁ କେବଳରାମ ଆସିଲା ଓ ପୁଲିସଠାରୁ ମୁଦିଟି ଦେଖି ଚିହ୍ନି ପାରିଲା । ସହରରେ ଶବ ପରୀକ୍ଷା ଘରେ ଶବ

ଭଗୀରଥଙ୍କ ଘରକୁ ଅଣାଗଲା, ବାଉଳୀ ହୋଇ ବାସନ୍ତୀ ରକ୍ତ ଜୁଡ଼ୁ ଜୁଡ଼ୁ ଶବ ଉପରେ କାନ୍ଦି କାନ୍ଦି ଅଚେତ ହେଲା । ଘରର ସମସ୍ତଙ୍କର ଏକା ଅବସ୍ଥା, ପାଖର ଲୋକ ମଧ୍ୟ ମଥୁରା ଶୋକରେ ମ୍ରିୟମାଣ । ବାସନ୍ତୀ ଅଚେତ ହୋଇଥିବାବେଳେ ବୁଢ଼ୀଟିଏ ତା' କପାଳର ସିନ୍ଦୁର ପୋଛି ଦେଲା ।

ଶବ ସତ୍କାରବେଳେ ମଥୁରାର ବନ୍ଧୁ, ମିନାଧର ଗମ୍ଭୀର କଣ୍ଠରେ କହିଲା, "ବନ୍ଧୁର ଦୁର୍ଘଟଣାରେ ମୃତ୍ୟୁ ହେଲା ବୋଲି ମୋର ବିଶ୍ୱାସ ନୁହେଁ । ନୂତନ ଉପାୟରେ ବନ୍ଧୁ ଆତ୍ମହତ୍ୟା କଲା । ବୁଝିଲ ସୁରମଣି ଦାଦା ! ମୁଁ ବନ୍ଧୁଙ୍କୁ ଭଲ ଭାବରେ ଜାଣେ । କଥାଟା ଯେ କଣ ମୋତେ କହିଲାନି । ଏଇକ୍ଷଣି ବୁଝିଲି ଯେ, ମୋ ବନ୍ଧୁ କେଡ଼େ ମହତ, ନିଜେ ମରିଲା ଅଥଚ ଆତ୍ମଘାତୀ ଅପଯଶରୁ ଘରକୁ ରକ୍ଷାକଲା । ନିଜେ ମରିବ ବୋଲି ଯେତେବେଳେ ଠିକ୍ କଲା—କେମିତି ମଲା, ଅନ୍ୟ ଜାଣି ଆଉ ଲାଭ କଣ ? ମରିବାକୁ ବସିଲେ, ଜୀବନପ୍ରତି ଆଶକ୍ତି ନ ଥାଏ ।"

ଏହା କହି ମିନାଧର ଗାମୁଛାରେ ମୁହଁ ପୋଛିଲା । ଆଖି ଦୁଇଟି ପାଣିରେ ଭରିଁ । ଦୀର୍ଘଶ୍ୱାସ ଟାଣି ଶବଦାହ ଯାଗାକୁ ଚାଲିଗଲା । ହୁଏତ ଏକା ବସି ନିଜକୁ ବେଶି ଦୁଃଖ ଦେବ ।

ମିନାଧର କହିବା କଥା ପାଖରେ କେଇଟି ଲୋକ ଶୁଣିଲେ । କିନ୍ତୁ ବିଶେଷ ଆଗ୍ରହ ଦେଖାଇଲେ ନାହିଁ । ଏପରି ଦାରୁଣ ପରିଣାମ ଦେଖି ଭଗୀରଥ ପରିପ୍ରତି ସହାନୁଭୂତି ଦେଲା । କୁତ୍ସାରଟନା ଅଶୋଭନୀୟ ଲାଗିଲା । ମୃତ୍ୟୁ ମହାନ୍ ହେଲା ।

## ଷୋହଳ

ଭଗୀରଥ ଓ ଭଣୀତା ଅତିସ୍ନେହ ଚକ୍ଷୁରେ ବାସନ୍ତୀକୁ କହିଲେ । ପୂର୍ଣ୍ଣ ଯୁବତୀ ଝିଅଟିର ଏମିତି ଅବସ୍ଥା ଦେଖି, ଯେପରି କୌଣସି କଥାରୁ ତା' ମନରେ ଦୁଃଖ ନ ଲାଗେ—ଆଉ ନିଜର ଦୁର୍ଭାଗ୍ୟ ଚିନ୍ତାରେ ଆତୁର ନ ହୁଏ । ବୁଢ଼ା ବୁଢ଼ୀ ଖୁବ ସତର୍କ ରହିଲେ । ବାସନ୍ତୀ ସକାଶେ ଘର ସେମିତି ରହିଲା । ବାସନ୍ତୀ ମୁହଁକୁ ଚାହିଁ, ବୁଢ଼ା ବୁଢ଼ୀ ପୁଅ ଦୁଃଖକୁ ଲାଘବ କରିବାକୁ ଚେଷ୍ଟା କଲେ । ଶ୍ରାଦ୍ଧ କାମପରେ ବାସନ୍ତୀ ବାପ ଘରକୁ ଗଲା । ଯିବାର ପୂର୍ବରୁ ଭଗୀରଥ କହିଲେ—"ଝିଅ ! ତୁମେ ଯଦି

ସେଠାରେ ରହିବାକୁ ଚାହଁ, ସେଥିରେ ମୋର ଆପତ୍ତି ନାହିଁ । କିନ୍ତୁ ତୋର ଦୁଃଖ ନ ହେଲେ ହେଲା ।"

ବାସନ୍ତୀ କଥା ଦେଲା—"ବାପା ! ବଡା ହୋଇଥିବା ଝିଅର ବାପଘରେ ଆଉ କି ଅଧିକାର ? କେଉଁ ମୂଳଧନ ଉପରେ ନିର୍ଭର କରି ମୁଁ ସେଠାରେ ରହିବି ?"

ବୋଉ କଥାରେ ଭଗୀରଥ ଖୁବ୍ ଶାନ୍ତି ପାଇଲା । ଭଣିତା ତାଙ୍କୁ କହିଥିଲା ଯେ ବାସନ୍ତୀ ଚାରିମାସର ଗର୍ଭବତୀ । ଭଗୀରଥ କାନୁନ୍‌ଗୋ ପ୍ରଥମ ନାତିର ମୁହଁ ଦେଖିବାକୁ ଚାହିଁ ରହିଲେ । ନାତି ଗୋଟିଏ ହେଲେ, ମଥୁରାର ବଂଶ ରହିବ ।

ବାସନ୍ତୀ ଭଣିତା ସହିତ ଯାଇ ବୋଉ ପାଖରେ ଚାରିଦିନ ରହିଲା । ଭୋଗରାମ ଓ ତରୁଲତା ତାକୁ ମେରି ପୁରରେ ରହିବାକୁ ବହୁତ କହିଲେ । ସେମାନଙ୍କର ସହାନୁଭୂତିପୂର୍ଣ୍ଣ ଅନୁରୋଧକୁ ସେ ରକ୍ଷା କରି ପାରିଲାନି । ନମ୍ର ଭାବରେ ନିଜର ଅଭିପ୍ରାୟ ଜଣେଇ ଦେଇ ଭଣିତା ସହିତ ପୁଣି ତରଙ୍ଗିସ୍ଥାଲକୁ ଫେରି ଆସିଲା ।

ବୋଉର ଅବସ୍ଥା ଖରାପ । ପୁରୁଣା ଧଇଁ ବେମାରି ଯୋଗୁଁ ମରନ୍ତି । ଆସିଲାବେଳେ ବୋଉ କହିଥିଲା —"ଝିଅ ! ଯା, ତୁ ସେଠାରେ ରହିବାକୁ ଇଚ୍ଛାକରୁ ଶୁଣି ମୁଁ ଖୁବ୍ ସନ୍ତୋଷ ପାଇଲି । ଶାଶୁ ଶଶୁରଙ୍କୁ ନିଜର ମା ବାପ ବୋଲି ଭାବିବୁ । ଆଉ ମୁଁ ବା କେଇଦିନ ଅଛି । ସେ ପୁରକୁ ଗୋଟିଏ ଗୋଟିଏ କରି ସମସ୍ତେ ଗଲେଣି । ଏହି ଦୁଃଖ ସ୍ମୃତିରେ ବାନ୍ଧି ଆଉ ଜିଇ ରହିବାକୁ ଇଚ୍ଛା ହୁଏନା । ମଝିରେ ମଝିରେ ଆସୁଥିବୁ ମା ।"

ବୋଉର ଗୋଡ଼ଧୂଳି ମୁଣ୍ଡରେ ମାରି, ଛଳ ଛଳ ଆଖିରେ ବିଦାୟ ନେଲା । ଦୁଃଖରେ ଭୋଗରାମ କଥା କହି ପାରିଲାନି । ନିରବରେ ମୁଣ୍ଡରେ ହାତ ଦେଇ ଭଣିତା ସହିତ ବାସନ୍ତୀ ଚାଲିଯିବାର ଦେଖୁଥିଲା । ବଡ଼ ଦୀର୍ଘଶ୍ୱାସଟାଏ ପକେଇଲା । ସେହି ଶ୍ୱାସ ପାଖର ପବନକୁ ଭାରି କରିଲା । ଭାଇପ୍ରତି ତା'ର ଅଗପରି ସ୍ନେହଥିଲା । ବୋଧହୁଏ ଭୋଗରାମ ଆଜିକାଲି ଭଲ ହୋଇ ଯାଇଛି । ସେତେବେଳକୁ ତଳପୁରସ୍ଥା ଗାଁର ବଦନାମଟା ପୁରୁଣା ହୋଇ ଗଲାଣି । ଚାଷ କରିବା ଓ ଧାନ କଟାକଟିରେ ସୋନାଇ ପଟ୍ଟିଆ ଚାଷୀ ସମାଜ ଦୁଃଖଭରା, କଳଙ୍କଭରା ଆଉ ଅପମୃତ୍ୟୁର ଭୟାବହ ଅତୀତକୁ ପାଶୋରି ପକାନ୍ତି । ସୋନାଇପଟ୍ଟିଆ ଉଦାର ହୁଅନ୍ତି । ଚାଷବାସ କରି କୃଷକ ପୂଜା ପାର୍ବଣରେ ମାତେ । ସୋନାଇର ସ୍ରୋତ ନିତ୍ୟ ନୂତନ । ସୋନାଇର ଅଜଣା ଅଭିପ୍ରାୟ ମଧ୍ୟ ନିତ୍ୟ ନୂତନ । ମୂର୍ତ୍ତିମନ୍ତ ସୋନାଇର ଜୀବନ ଚେତନା ମଧ୍ୟ ନିତ୍ୟ ନୂତନ । ଏହି ନୂତନତ୍ୱ ହିଁ ଆବହମାନ କାଳର ଗତି ଚେତନା—ଭୋଗରାମର

ଅପଯଶ, ଅନେକଙ୍କର ମଧୁର ସ୍ୱପ୍ନ, ସମାଜ ସ୍ୱୀକୃତ କଳଙ୍କ, ଶ୍ୱେତବସ୍ତ୍ରର ପୁଞ୍ଜ ଉତ୍ପ୍ରାସ ଆଉ ବାସନ୍ତୀର ଜ୍ୱାଳା ଓ ଯନ୍ତ୍ରଣାକୁ ଡାକିଦିଏ ।

ବାସନ୍ତୀ କିନ୍ତୁ ରୂପସୀ ପ୍ରକୃତିରେ ଅଛି ଚତୁର୍ଦ୍ଦିଗରେ ସ୍ପନ୍ଦିତ ଗତିମୟ ପୃଥିବୀରେ ନିତ୍ୟ ନୂତନ ହେବାପାଇଁ ଆଶା ପାଏନା । ବର୍ତ୍ତମାନ ତାର ଆଶା ଶାଶୁ ଶଶୁରଙ୍କର ଆଶା ସହିତ ମିଶି ଯାଇଛି । ଗୋଟିଏ ସନ୍ତାନ ଲାଭର ଆଶା । କିନ୍ତୁ ସେ ଯେ ଜନ୍ମ ଦୁଃଖିନୀ । ଦୁର୍ଭାଗ୍ୟ ଯାହାକୁ ପଥର ଧୂଳିରେ ଧୂସରିତ କରିଛି । ସେହି ସ୍ତ୍ରୀ ଏମିତି ଆଶା କରିବାକୁ ସାହାଯ୍ୟ କରିପାରେକି ?

ଘରର ସମସ୍ତଙ୍କଠାରୁ ଆଶାତୀତ ଆଦର ପାଇଛି । ପୂତନି ଓ ପାରୁଲ୍ ତା ମନକୁ ବଦଳେଇବାକୁ ସବୁବେଳେ ଚେଷ୍ଟା କରନ୍ତି । ଭଗୀରଥ ଜାଣୁନ୍ତିଗୋ, ସେ କଣ ଖାଇବାକୁ ଭଲ ପାଏ, ସେ ପ୍ରତି ଦୃଷ୍ଟି ରଖନ୍ତି । ପାଖରେ ବାସନ୍ତୀକୁ ଶୋଇବାକୁ ନ ପାଇଲେ ଭଣିତାକୁ ନିଦ ଲାଗେନା । ରାତିରେ ବୁଢ଼ୀ ତା' ମୁହଁରେ ହାତ ବୁଲାଇ କାନ୍ଦିନ ବୋଲେ ।

କିନ୍ତୁ କେଉଁଥିରେ ବାସନ୍ତୀ ଶାନ୍ତି ପାଏନା । ଗୋଟିଏ କଥା ତାକୁ ଥରକୁ ଥର କଷ୍ଟଦିଏ । ସେ ଭବେ ନିଶ୍ଚୟ ତା'ରି ଦୋଷ ଯୋଗୁ ମଥୁରା ମରିଲା । ସୋନାଇ-ପୁଅା ହିସାବରେ ଯୁଗଯୁଗର ଦର୍ଶନ କିଛି ଭୁଲ୍ ନୁହେଁ । ଝିଅ ଅବସ୍ଥାରେ ବୋଉ ଅନେକ ଥର ବୁଝେଇଛି—ପୁରୁଷର ସବୁ ଅମଙ୍ଗଳ ହୁଏ ଯଦି ସ୍ତ୍ରୀ ମନରେ ପାପ ପଶେ । ବାସନ୍ତୀର ଜୀବନ ଭୁଲ୍ ସୂତାରେ ଗୁନ୍ଥା ହୋଇଛି । ତା ମନରେ ପାପ ପ୍ରବେଶ କରିଥିଲା । ଦିନେ ଧନଞ୍ଜୟ ସହିତ ପଳେଇବାକୁ ମନ ଚଞ୍ଚଳ ହୋଇଥିଲା । ତା'ପରେ ମଥୁରା ତା'କୁ ଦୋଷୀ ସାବ୍ୟସ୍ତ କଲା । ସତ୍ ଉଦ୍ଦେଶ୍ୟରେ ଦୋଷ ସ୍ୱୀକାର କରିଲେ, ମନୁଷ୍ୟର ମୌଳିକ ସତ୍ତାର ରୂପାନ୍ତର ହୁଏ । ସେଥିପାଇଁ ସେ ସ୍ୱୀକାର କରିଥିଲା—ମଥୁରାକୁ ସେ ଭଲ ପାଉଥିଲା ବୋଲି ମଧ୍ୟ ସେ ବୁଝିଲା ନାହିଁ । ତା'ର କାତର ଅନୁରୋଧ ରକ୍ଷା କଲାନି । ସେ କ୍ଷମା କରି ମହତ ହୋଇ ପାରିଲା ନାହିଁ । ସାମାନ୍ୟ ଅନୁକମ୍ପା ମଧ୍ୟ ଦେଖାଇଲା ନାହିଁ । ଆଉ କେଉଁ କାର୍ଯ୍ୟରେ ସେ ନିଜର ପୌରୁଷକୁ ପ୍ରକାଶ କଲା ? ତା'କୁ ବାହାର କରିଦେଇ ତା'କୁ ଭଲ ଲାଗିବା ରାସ୍ତା ବାଛି ନ ନେଲା କାହିଁକି ? ସେ ଉଦାସ ହେଲା—ସେ ବାଉଳା ହେଲା—ଆତ୍ମକ୍ଷୟୀ ବିଚାର କଲା । ହୁଏତ ଚିନ୍ତା କରି କରି ବେଶି ଅସ୍ଥିର ହେଲା । ଆଉ ସେହି କାରଣରୁ ସେ ଦୁର୍ଘଟଣାରେ ମରିଲା । କିନ୍ତୁ ତାକୁ ବାହାର କରି ଦେଇ ସେ ବଞ୍ଚିଥିଲେ ଭଲ ହୋଇଥାନ୍ତା, ଅନ୍ତତଃ ତାର ସିନ୍ଦୁର ଲିଭି ନ ଥାନ୍ତା । ହୁଏତ ଦିନେ ଫେରି ବାଉଁଶ

ଯୋଡ଼ ହୋଇ ଯାଇଥାନ୍ତା । ଯେଉଁ ମଣିଷକୁ ସନ୍ଦେହ ଏମିତ ଅସ୍ଥିର କରିପାରେ, ଯେ ମାନସିକ ଯନ୍ତ୍ରଣା ସଂଭ୍ରମରେ ସହ୍ୟ କରିବାକୁ ଅକ୍ଷମ ସେହି ମଣିଷର ପୁରୁଷୋଚିତ ମନୋବଳ କେତେ ? ଆତ୍ମବିଶ୍ୱାସ କେତେ ? ସାରତ୍ୱ ବା କେତେ ? ଦିନପରେ ଦିନ ଯେତେ ଗଡ଼ିଗଲେ, ଦୁଃଖ ସେତିକ କମିଯାଏ । ବାସନ୍ତୀକୁ ଏହି ଚିନ୍ତା ଆସ୍ତେ ଆସ୍ତେ ଆଉ ଘାରେନା । ତା'ର ବର୍ତ୍ତମାନ ଗୋଟିଏ ଚିନ୍ତା । ସନ୍ତାନଟି ଭଲେ ଭଲେ ଭୂମିଷ୍ଠ ହେଲେ ହେଲା । ସନ୍ତାନକୁ ସାରଥୀ କରି ସେ ଜୀଇ ରହି ପାରିବ । ସେତେ-ବେଳକୁ ପେଟରେ ନଅ ମାସର ଗର୍ଭ । ନିଦ ହୁଏନା । ପେଟରେ କଷ୍ଟ ହୁଏ । ଭଉଣିତା ସୋରିଷ ତେଲ, ପେଟରେ ମାଲିସ୍ କରେ । ଆଗପରି ଆଉ ଉଠାବସା କରି ପାରେନା ।

ଘର ଗୋଟାକରେ ଆଦର ଯତ୍ନର ଅନ୍ତ ନାହିଁ । ତାକୁ ପୁରୁଣା ଗୁଡ଼ଳର ଭାତ ଦିଆହୁଏ । ଶୋଇବା ଆଗରୁ ଦୁଇମାସ ହେଲା ପାଏ ଦୁଧପିଏ । ଆଜିକାଲି ଭଗୀରଥ ସହରରୁ ଡାକ୍ତରୀ ଔଷଧ ଆଣେ । ଅଭୁତ ଔଷଧ । ଅଭୁତ କ୍ୟାଲ୍‌ସିୟମ, ଆଇରନ୍ ଟ୍ୟାବଲେଟ ଇତ୍ୟାଦି । ଭଉଣିତା ହାତରେ ଔଷଧ ଦେଇ ଭଗୀରଥ କୁହେ—"ଏହି ଔଷଧ ଠିକ୍ ସମୟରେ ଖାଇବାକୁ ଦେବ । ତା'କୁ ଖାଇଲେ ପ୍ରସବ ସମୟରେ କଷ୍ଟ ହେବନି । ସନ୍ତାନ ଦେହ, ହାଡ଼ ଟାଣ ହୁଏ । ଆଉ ଗୋଟିଏ କଥା ଭଉଣିତା— ଦଶମାସ ପୂରିବା ସଙ୍ଗେ ସଙ୍ଗେ ପଲିଶିଟିଲି ମାନେ ଦଶନମ୍ବର ପଲିଶିଟିଲି ଖୋଲିବାକୁ ପଡ଼ିବ । କଥାଟା ମନେ ରଖିବୁ ।"

ଏହି ସମୟରେ ଆଉ ଏକ ଘଟଣା ଘଟିଗଲା । ମୋହପୁରରୁ ମଣିଷ ଆସି ଖବର ଦେଲା ଯେ, ସକାଳେ ବାସନ୍ତୀର ବୋଉ ମରିଗଲା । ବାସନ୍ତୀକୁ ନେଇଯିବ ବୋଲି, ସେହି ମଣିଷ ହାତରେ ଖବର ପଠାଇଥିଲା ଖେଗରାମ । ବୋଉର ମଲା ଖବର ପାଇ କାନ୍ଦି କାନ୍ଦି ବାସନ୍ତୀ ଭୁଇଁ ପଡ଼ିଲା ନାହିଁ । ଜୀବନରେ କେତେ ବଡ଼ ଦୁଃଖ ସହିଲାଣି । ଗୋଟିଏ ଗୋଟିଏ ଦୁଃଖରେ ଜୀବନର ଗତି ବଦଳି ଗଲାଛି । ବୋଉ ମରିଛି ଭଲ ହୋଇଛି । ବୟସ ହୋଇ ଯାଇଥିଲା । ତା'ଛଡ଼ା ରୋଗରେ ସେ କମ୍ କଷ୍ଟ ଭୋଗିନି । ତା'ଛଡ଼ା ବୁଢ଼ୀ ତା ଜୀବନରେ ଅନେକ ଦୁଃଖ ସହିଲା । ମରିବା ପୂର୍ବରୁ ଝିଅପାଇଁ ଦାରୁଣ ଦୁଃଖ ପାଇଲା । ବଞ୍ଚିଥିଲେ ଆହୁରି ବଡ଼ ଦୁଃଖ ପାଇଥାନ୍ତା । ଜୀବନରେ ଦୁଃଖ ସହିବାକୁ ଅନେକ ଜନ୍ମ ହୁଅନ୍ତି ।

ବୋଉର ମଲା ଖବର ପାଇ ବାସନ୍ତୀ ମିଛ କେତେ ଚିନ୍ତାକଲା । ହଜାରେ ହେଲେ ବି ସୁଜଳା ତା'ର ବୋଉ । ଇହ ଜନମରେ, ବୋଉ ବୋଲି ଡାକିବାକୁ ଆଉ କେହି ନାହିଁ, ସେତିକ ବେଳେ କାନ୍ଦି ମାଡ଼ିଲା ।

ନିୟମ ଅନୁଯାୟୀ ଭେଟିବାକୁ ଗଲେ ଭଗୀରଥ ଆଉ ଭଣିତା । ବାସନ୍ତୀର ନ ଆସି ପାରିବାର କାରଣ ସେମାନେ ଲୋକଙ୍କ ଆଉ ଡକ୍ଟରଙ୍କାକୁ ବୁଝାଇ ଦେଲେ ।

ଘର ଛାଡ଼ି ନ ଆସି ପାରିବାର କାରଣଟା ମଧ୍ୟ କାହାକୁ ବୁଝାଇବା ଦରକାର ନ ଥିଲା । ସମସ୍ତେ ଜାଣନ୍ତି, ଗର୍ଭବତୀ ସ୍ତ୍ରୀ ସାତମାସ ଆଉ ନଅ ମାସରେ ଘର ଛାଡ଼ି ଯାଇ ପାରିବେନି । ଏହି ନିୟମ ଭାଙ୍ଗିଲେ ମା'କୁ ବିପଦ ।

ମା'ର ସଦ୍‌ଗତି କାମନା କରିବାକୁ ଆଉ ମୃତ ଆତ୍ମାର ଆଶୀର୍ବାଦ ପାଇବା ଦୁଃଖିନୀ ବାସନ୍ତୀ ଭାଗ୍ୟରେ ଘଟିଲା ନାହିଁ ।

## ସତର

ଦଶମାସ ପୂରିଲା ନାହିଁ । ହଠାତ୍ ପ୍ରସବ ବେଦନା ଆରମ୍ଭ ହେଲା । ଘର ଗୋଟାକର ମଣିଷ ବ୍ୟସ୍ତ ହୋଇ ଉଠିଲେ । ଭଣିତା ତା'କୁ ଗୋଟିଏ ଅଲଗା ଘରେ ଶୁଆଇ ଦେଲା । ଘର ମଝାନରୁ ଦୁଇଟିପଘା ଦଉଡ଼ି ବାନ୍ଧି, ବାସନ୍ତୀର ଦୁଇ ହାତରେ ଧରାଇ ଦିଆଗଲା । ଦଉଡ଼ିକୁ ଟାଣିଧରି ବାସନ୍ତୀ ପ୍ରସବ ବେଦନା ସହ୍ୟ କଲା, "କିଛି ଚିନ୍ତା ନାହିଁ ଝିଅ । ଶୀଘ୍ର ମୁକ୍ତି ପାଇବୁ—" ଆଶ୍ୱାସ ଦେଇ ଭଣିତା ପାଖରେ ବସି ରହିଲା ।

ଇଆଡ଼େ ଭଗୀରଥ କାନ୍ନୁନ୍‌ଗୋଙ୍କୁ ବିଶ୍ରାମ ନାହିଁ । ସାଇକେଲ ମାରି ହମୁରା ଗାଁକୁ ଗଲା । ଗୁଣିଆ ପାଣି ମନ୍ତୁରେଇ ଦେଲା । ଭଣିତାକୁ ସେହି ପାଣି ଦେଇ କପରି ଖାଇବାକୁ ହେବ କହି ଦେଲେ । ବାସନ୍ତୀ ମନ୍ତୁରା ପାଣି ଚଳାଏ ମୁଣ୍ଡରେ ଦେଇ, ସବୁତକ ପିଇ ଦେଲା । କିଛି ଫଳ ହେଲାନି । ପ୍ରାୟ ଦୁଇଘଣ୍ଟା ଯାଏ କଷ୍ଟ ହେଲା । ଆସ୍ତେ ଆସ୍ତେ କଷ୍ଟ ବଢ଼ିବାକୁ ଲାଗିଲା । ପ୍ରସୂତ ଘରୁ ବାସନ୍ତୀର ଚିତ୍କାର, ଭଗୀରଥର ଅସହ୍ୟ ହେଲା । ଗାଁକୁ ଯାଇ ଧାଈ ଆଉ ଔଷଧ ଲାଗି ବ୍ରହ୍ମପୁରକୁ ଲୋକ ପଠେଇଲା । ଘରକୁ ଆସି ଶୁଣିଲେ ଯେ କଷ୍ଟରେ ବାସନ୍ତୀ ଅଚେତ ହୋଇଛି । ଭଗୀରଥ ହତାଶ ହୋଇ ପଡ଼ିଲେ ।

ଘଣ୍ଟାକ ପରେ ପଠେଇଥିବା ଟୋକାଟାଏ ଫେରିଲା । ସେ ଗୋଟାଏ ଡାଳ ଆଣିଛି । ଦଲଙ୍ଗଘାଟର ମୈମନସିଙ୍ଗିଆଣୀଠାରୁ ଆଣିଥିବା ମନ୍ତ୍ରା ଡାଳ ଭଣିତା

ବାସନ୍ତୀର କଙ୍କାଳରେ ବାନ୍ଧଦେଲା । ଅଳ୍ପ ସମୟ ପରେ ଚେତା ପଶିଲା । କିନ୍ତୁ ବେଶି କଷ୍ଟ ହେଲା ।

ଖବର ପାଇ, କପିଳ ଧାଈ ଆସିଲା । ସେତେବେଳେ ଯାଇ ଭଗୀରଥ ନିଃଶ୍ୱାସ ମାରିଲେ । କପିଳ ଧାଈ ପ୍ରସୂତ ପାଖରେ ବସି ନାଡ଼ି ନକ୍ଷତ୍ର ବୁଝିନେଲା । ସେ ବୁଝି ପାରିଲା ଯେ ଅବସ୍ଥା ସାଙ୍ଘାତିକ । କଷ୍ଟ ତଳକୁ ତଳକୁ ଆସୁଥିଲେ ମଧ୍ୟ ମଝିରେ ମଝିରେ ଗର୍ଭିଣୀ ମୂର୍ଚ୍ଛା ଯାଉଛି । ବେଶିକ୍ଷଣ ଏମିତି ରହିଲେ ସେ ହୁଏତ ମରିଯିବ ।

କପିଳ ଧାଈ କାହା ଉପଦେଶକୁ ଅପେକ୍ଷା କଲାନି । କାମରେ ଲାଗିଗଲା ! ହାତ ପୁରେଇ ଶିଶୁକୁ ଭୂମିଷ୍ଠ କଲା । ବାହାରେ ଥିବା ମଣିଷକୁ "ପୁଅ" ବୋଲି ଭଣିତା ଜଣେଇ ଦେଲା । କିନ୍ତୁ ଜନ୍ମ ହୋଇ ପିଲା କାନ୍ଦିଲାନି, ସବୁ କଷ୍ଟ ଭୁଲି, ବାସନ୍ତୀ ନିଜର ଧନକୁ ଚାହିଁ ରହିଲା । ନିମିଷକରେ ସବୁ ଦୁଃଖ ପାଶୋରି ଗଲା, ତୃପ୍ତିରେ ଆଖି ବନ୍ଦକଲା ।

କିନ୍ତୁ ଛୁଆ ଟିଏ କାନ୍ଦୁନି । କୁଆଁ କୁଆଁ କାନ୍ଦରେ ସୁନ୍ଦର ସ୍ୱର ସେହି କାନ୍ଦଣା ବାସନ୍ତୀ କାନରେ ମଧୁ ବରଷିବ । ନାତି ଆଶାରେ ଚାହିଁ ରହିଥିବା ଭଣିତା ଆଉ ଭଗୀରଥର ଶିଶୁର ପ୍ରଥମ କୁଆଁ ରଡ଼ିରେ, ପ୍ରାଣ ଭରିଯିବ ।

ନିରବରେ କିଛି ସମୟ ଗଡ଼ିଗଲା । କପିଳ ମନରେ ଖରାପ ଧାରଣା ଦେଲା । ଛୁଆ ଛାତିରେ ହାତ ଦେଲା । ନିଃଶ୍ୱାସ ଚାଲିଛି । ନାଡ଼ି ଚାଲୁଛି ଯଦିଓ ମଝିରେ ମଝିରେ ବନ୍ଦ ହୋଇ ଯାଉଛି ।

ଘର ଛାତ ଉପରକୁ ଯାଇ ଦୁଇଟି ଟୋକା ଭଙ୍ଗାଟିଣ ବଜେଇଲେ । ଲୋକଙ୍କର ବିଶ୍ୱାସ ଯେ ଏମିତି ଶବ୍ଦ କଲେ ଚୁପ୍‌ଚାପ ଥିବା ଛୁଆ ଶବ୍ଦ କରିବ । କିଛି କାମରେ ଆସିଲା ନାହିଁ । ଆଗପରି ସେମିତି ଛୁଆ ପଡିରହିଲା ।

କପିଳ ଧାଈ ବାହାରକୁ ଆସି ଫିସ୍‌ଫିସ୍ କରି କହିଲା—ଭଗୀରଥ ଦାଦା । ଗୋଟାଏ କାମ କର । ଛୁଆ ଏମିତି ପଡିରହିଲେ ଖରାପ ହୋଇପାରେ । ଗୋଟିଏ ଗୋଟିଏ ଛୁଆ ଏମିତି ଜନ୍ମ ହୁଅନ୍ତି । ଜଳକାମାରି ଛୁହନ୍ତି । ଜାଲିକା ସାହି ଭାଙ୍ଗି ବାଲିଗି ବାପକୁ କିଛି ଉପହାର ଦେବାକୁ ହୁଏ ଏବଂ ଆଦର କରି ଡ଼ାକିବାକୁ ହୁଏ । କିନ୍ତୁ ସେତ ଅଧଆଙ୍ଗୁଳିଏ କପାଳ ନେଇ ଆସିଛି । ବାପାକୁ ଖାଇ ସଂସାରକୁ ଆସିଛି । ସେଥିରେ ତୁମେ ଅଜା ହେଲେ ସୁଦ୍ଧା କିଛି ଦେଇ ତାଙ୍କୁ ଡ଼ାକ ।'

କପିଳର କଥାନୁଯାୟୀ ଭଗୀରଥ ସବୁ ନିୟମକାନୁନ ଆଉ ସଙ୍କୋଚ ଠେଲି ଅନ୍ତୁଡ଼ି ଘରକୁ ଗଲା । ବାସନ୍ତୀର ଚେତାଥାଏ । ଓଢ଼ଣା ଟାଣି ଦେଲା । ଭଗୀରଥ କାଠପଣ ପଡ଼ିଥିବା ନାତିକୁ ଚାହିଁ ରହିଲା । ଆଠଣା ଓଜନର ସୁନା ନାତି ଛାତି ଉପରେ ରଖି କହିଲା—"ବାପା ! ଅଭିମାନ ଛାଡ଼, ଆସିମେଲା ଚାହଁ । ମୋ ପଣ ଅଜା ଆଗରେ ଅଭିମାନ ଛାଡ଼ ।" ଏହା କହି ବୁଢ଼ା ନାତି ମୁହଁକୁ ଚାହିଁ ରହିଲା । କାନ୍ଦିବା କି ଆଖି ଖୋଲିବା ଲକ୍ଷଣ ଦେଖାଗଲା ନାହିଁ । ପାଞ୍ଚ ମିନିଟପରେ ଟୁଆ ହୁକ୍କା ମାରିଲା । ଅଳ୍ପ ପରେ ମୁହଁଟା କାନ୍ଦିବା ପରି କଲା କିନ୍ତୁ କାନ୍ଦି ପାରିଲା ନାହିଁ । ପରେ ପରେ ହାକୁଟି ମାରିଲା । ଭୟରେ ବାସନ୍ତୀ ଚିତ୍କାର କଲା । 'ଭଣିତା ଟୁଆ ଛାତିରେ ହାତ ଦେଲା । ଟୁଆଟି ଦୁଇଥର ବଡ଼ ବଡ଼ ଆଖିକରି ଚାହିଁଲା । ଆଉ ତା'ପରେ ଚିରଦିନ ପାଇଁ ଆଖି ବନ୍ଦ କଲା । ଅଳ୍ପ ସମୟପରେ ପ୍ରାଣବାୟୁ ଉଡ଼ିଗଲା । ଅନ୍ତୁଡ଼ି ଘରେ ଯେପରି ନିଆଁ ଜଳି ଉଠିଲା । ଗଛପଙ୍ଗ କନ୍ଦେଇବାର ବାହୁନା ଶୁଣି ପାଖର ମଣିଷ ଧୈର୍ଯ୍ୟ ଧରି ରହି ପାରିଲେନି—ଦୁଆରେ ଆସି ଜମା ହେଲେ ।

ପ୍ରାୟ ଘଣ୍ଟାକ ପରେ କାନ୍ଦଣା କମିଲା । ଟୁଆକୁ ମଶାଣିକୁ ନେବାକୁ ଗଲାବେଳେ ବାସନ୍ତୀ ତାକୁ ଜାକି ଧରିଲା । ଭଣିତା ତା କୋଳରୁ ମଲା ଟୁଆକୁ ଆଣି ପାରିଲା ନାହିଁ । ଯେମିତି ସେ ଟୁଆକୁ ତା ଆଡ଼କୁ ଟାଣେ, ବାସନ୍ତୀ ସେମିତି ତାକୁ ଜୋରରେ ଛାତି ଉପରେ ଭିଡ଼ିଧରେ । ଶେଷରେ କପିଳ ଧାଇଁ ନିର୍ଦ୍ଦୟ ଭାବରେ ଟୁଆକୁ ତା ଛାତି ଉପରୁ ଟାଣି ଆଣିଲା, ପାଗଳୀ ପରି ମାଟିରେ ଗଡ଼ି ଗଡ଼ି ବାସନ୍ତୀ କାନ୍ଦି କାନ୍ଦି କହୁଥାଏ "ମୋ ସୁନା ମୋତେ ତୋର ସଙ୍ଗରେ ନେଇ ଯାରେ, ମୋ ବାପା ! ମୋତେ ତ ତାର ସଙ୍ଗରେ ପୋତିଦିଅ ।

ଧୈର୍ଯ୍ୟ ଧରି ନ ପାରି, ଭଣିତା ଅନ୍ତୁଡ଼ିଘରୁ ଚାଲି ଆସିଲା । ମଲା ଟୁଆକୁ ଧରି ଭଗୀରଥ ମଶାଣୀ ଆଡ଼କୁ ଗଲା । ତା ପଛେ ପଛେ କୋଡ଼, କୋଦାଳ ନେଇ ଦୁଇଜଣ ମଧ୍ୟ ଗଲେ । ବାସନ୍ତୀକୁ ଏହି ଅବସ୍ଥାରେ, କପିଳ ଛାଡ଼ି ପାରିଲା ନାହିଁ । ଟୁଆଟା ଅଳ୍ପ ସମୟରେ କାହିଁକି ମଲା—କାରଣ ଖାଲି ଖାଲି ଅନ୍ତୁଡ଼ି ଘର ସଫା କଲା । ଖରାବେଳ ଗଡ଼ିଗଲା । ସେ ଯିବା ସମୟରେ, ଭଣିତା କପିଳକୁ ମନକଥା କହିଲା—

"କପିଳ ବାଇ, ଈଶ୍ୱରଙ୍କ ଇଚ୍ଛା, ଆଉକଣ ଅଛି ତା ପାଇଁ ? ଚାରମାସ ଯେତେବେଳେ ମଥୁରାର ଦୁଃଖ ଭୋଗିଲି ସେ ଦିନ ମା'ର କାଳ ହୋଇଗଲା—ଆଉ ଆଜ ପୁଣି ଏଇଆ ।"

ପେଟରେ ପିଲା ରହିଲେ, ସନ୍ତାନର ଭଲପାଇଁ ସ୍ତ୍ରୀକୁ ଭଲରେ ରହିବାକୁ ହୁଏ । ସେ କିନ୍ତୁ ଅନେକ ଦୁଃଖର ଭିତର ଦେଇ ଗତି କରିଛନ୍ତି, କେତେ ରାତି କେଉଁଠାରେ ଶୋଇଛନ୍ତି— କାନ୍ଦିଛନ୍ତି । ମା ବୁଢ଼ୀ ହେଲେ ବି, ନିଜର ମା ଯେତେବେଳେ, ମା'ର ଦୁଃଖରେ ଭୋଗିଲା । ଏଇ ଅବସ୍ଥାରେ ଗର୍ଭିଣୀର ମରିବାର ଆଶଙ୍କା ଅଧିକ । କିନ୍ତୁ ସେ ବଞ୍ଚିଗଲା । ଛୁଆଟି ମରିବ । କେଉଁ ଡାକ୍ତର ତାକୁ ଭଲ କରି ପାରିବ ନାହିଁ । ପେଟରେ ଥିଲାବେଳେ ବିଗିଡ଼ି ଯାଇଛି । ସାଧାରଣତଃ ଏଇ ଅବସ୍ଥାର ସ୍ତ୍ରୀମାନେ ମଲା ଛୁଆଁ ଜନ୍ମ କରନ୍ତି ।"

କଥା ଶେଷ ଆଡ଼କୁ କପିଳର ସ୍ୱର କମ୍ପୁଥାଏ । ଲୁହ ଲୁଚେଇବାକୁ ଚେଷ୍ଟା ନକରି ଭଣିତା କହିଲା—"ଆଉ ଆଲୋଚନା ଦରକାର ନାହିଁ ଭାଇ । ଯାହା ହେବାର ହୋଇଗଲା··· ···।"

ଦୁଇଦିନ ବାସନ୍ତୀ ସେମିତି ଆଖି ବୁଜି ପଡ଼ିରହିଲା । ତୃତୀୟ ଦିନ ଘଣ୍ଟାଏ କାଳ ଆଖିଖୋଲି ଉପରକୁ ଚାହିଁ ରହିଲା । କିଛି ସମୟପରେ ଭଣିତା ତାକୁ ବସିବାକୁ କହିଲା । ସେ କିନ୍ତୁ ଶୁଣିଲା ନାହିଁ । ବାରବାର କହିଲେ ମଧ୍ୟ କୁଟା ଖଣ୍ଡେ ବି ମୁହଁକୁ ନେଲାନାହିଁ । ନ ଖାଇବାଟା ଭଣିତାକୁ ଖରାପ ଲାଗିଲାନାହିଁ । ପ୍ରଥମ ତିନିଦିନ ନଖାଇବାଟା ଖରାପ ନୁହେଁ । ଏହି ସମୟରେ ଅଶୌଚ ମଣିଷର ନାଡ଼ି କୋମଳ ଥାଏ । କୌଣସି ଜିନିଷ ଦେହକୁ ଯାଏନା ।

ଦିନେଗଲା—ଦୁଇଦିନ ଗଲା । ଗୁହୁଁ ଗୁହୁଁ ଦଶଦିନ ପାରିହେଲା । ସେ ପାଣି ଛଡ଼ା ଆଉ କିଛି ଛୁଇଁଲା ନାହିଁ । ଉଠିବସିବା ଲାଗି ଦେହରୁ ବଳ କମିଗଲା, ଘରର ସମସ୍ତେ ଘୋର ଚିନ୍ତାରେ ପଡ଼ିଲେ । ଭୋଗରାମ ପାଖକୁ ଖବର ପଠାଗଲା । ଭୋଗରାମ ଆଉ ତରୁଲତା ଆସି ଖୁବ୍ ବୁଝାବୁଝି କଲେ । ସେ କିନ୍ତୁ ଅଟଳ ଅଟଳ । ସମସ୍ତେ ଭାବିଲେ ଯେ, ସେ ନ ଖାଇ ମରିବାକୁ ପ୍ରତିଜ୍ଞା କରିଛି । ତାକୁ କିଏ କଣ କହି ସାନ୍ତ୍ୱନା ଦେବ ? ତାଁ'ର ତ ଚାରିଦିଗ ଅନ୍ଧାର । ମା' ବଞ୍ଚିଥିଲେ କ'ଣ ଆଉ ପୁଅ ଦେଖିବନି ?, ଛୁଆଟା ମରିଗଲା ବୋଲି ମଣିଷଟା ଏମିତି ନ ଖାଇ ନପିଇ ମରିବ କେମିତି ? "ଏମିତି ଅନେକ ଗତାନୁଗତିକ କଥା କହି ତା ମନକୁ ଶାନ୍ତ କରିହେବ ନାହିଁ । ସମସ୍ତେ ଜାଣନ୍ତି ସେ କାହିଁକି ମରିବାକୁ ବସିଛି ।

ତାର ଜୀବନର ପ୍ରଥମ ଆଉ ଶେଷ ସନ୍ତାନକୁ ପ୍ରାଣର ସ୍ନେହ ନ ଦେବାକୁ ପାଇ ବାଉଳି ହେବାଟା ସ୍ୱାଭାବିକ । ଦୁଃଖ ଯେତେହେଲେ ବି ଧରିବାର ଦିନ

ହେଲା ସ୍ନେହ ନଲାଗିବ କପରି ? କ'ଣ ତାକୁ ସ୍ନେହ ନ ହେବା ବେମାରିଟାଏ ହୋଇଛି ।

ଘରକୁ ଡ଼ାକ୍ତର ଆଣି ତା'କୁ ଦେଖେଇଲେ । ଡାକ୍ତର କହିଲେ ଯେ ସେ ମନର ରୋଗୀ । ତଥାପି ବି ଭଗୀରଥକୁ ଅନେକ କଥା କହିଗଲେ ।

ବହୁଦିନ ପାରହେଲା ବାସନ୍ତୀ ନିଜ ଇଚ୍ଛାରେ ଉଠି ପିଣ୍ଡାରେ ବସିଲା । ଆଗଠାରୁ ଆହୁରି ଦୁର୍ବଳ ହୋଇଛି । ଦେଖିଲେ ଦୁଃଖ ଲାଗେ । ବାହାର ଜଗତ ପ୍ରତି ସେ କାନ ଦିଏନା । ନ ଶୁଣିପାରିବା ରୋଗ ଯେପରି ହୋଇଛି । ପିଣ୍ଡା ପାଖରେ ବସି ନିର୍ଭିଷ୍ଟ ମନରେ ଉପରକୁ ଗୁହିଁ ରହେ ଯେପରି । ଅଦେଖା ତଥ୍ୟ ସହିତ କଥାବାର୍ତ୍ତା କରୁଥାଏ ।

ଆଗେ ବାସନ୍ତୀ ଶାଶୁ ଶଶୁରଙ୍କ କଥା ମାନି ଚଳୁଥିଲା । ଏଇକ୍ଷଣି ସେମାନଙ୍କର ଅନୁରୋଧ ରକ୍ଷା ନକରିବାରୁ ଚିନ୍ତା ବଢ଼ିଛି । କିନ୍ତୁ ତା ଉପରେ କେହି ବିରକ୍ତ ହେଲେନି । କେତେ ଦୁଃଖ ସେ ସହିବ ?

ସ୍ନେହରାମ ମଧ୍ୟ ଚିନ୍ତିତ । ନିଜକୁ ଦୋଷୀ ବୋଲି ଭାବୁଛି । ତାର ଦୋଷ ଯୋଗୁ ବାସନ୍ତୀର ଜୀବନଟା ଏମିତି ହେଲା ? ତାର ସେ ମାସରେ ସମୟ ନଥାଏ । ଠିକା କାମଗୁଡ଼ା ସେହି ମାସରେ ଶେଷ କରିବାକୁ ପଡ଼ିବ । ଭଉଣୀ ଘରେ ଦିନେ ରହି ଫେରିଗଲା । ତରୁଲତା ଆଉଦିନେ ବେଶୀ ରହିଲେ । ପିଲାଛୁଆମାନଙ୍କ ଝଞ୍ଜାଳ ଲାଗି ସେ ବାସନ୍ତୀକୁ ଛାଡ଼ିଯିବାକୁ ବାଧ୍ୟ ହେଲା ।

ଦୁଇଦିନ ପରେ ଗୋଟିଏ ଘଟଣା ସମସ୍ତଙ୍କୁ ଆଶ୍ଚର୍ଯ୍ୟାନ୍ୱିତ କଲା । ଭଗୀରଥ ଦାଣ୍ଡରେ ବସି ପଧା ତିଆରି କରୁଥିଲା । ପ୍ରାୟ ଦିନ ଦଶଟା ହେବ । ଆଗପରି ବାସନ୍ତୀ ପିଣ୍ଡାରେ ବସିଛି । ଫାଟକ ପାଖରେ ତାର ପରିଚିତ ସାଇକଲ ଘଣ୍ଟି ତିନିଥର ବାଜିଲା । ବାସନ୍ତୀ ସେଇଆଡ଼କୁ ବୋକାଙ୍କ ପରି ଗୁହିଁ ରହିଲା । ଭଗୀରଥ ମଧ୍ୟ ମୁଣ୍ଡ ଟେକି ଗୁହିଁଲା । ଚିହ୍ନି ପାରିଲା ନାହିଁ । କେବେ ଅବା ଦେଖିଛି ଯଦିଓ ଠିକ୍ କିନ୍ତୁ ମନେ ପଡ଼ିଲା ନାହିଁ । ନିଜର ମୃତ ପୁଅପରି ଟୋକାଟା । ଧଳା କାମିଜ ଆଉ ହାଫ୍ ପ୍ୟାଣ୍ଟରୁ ସହର ଡ଼ାକ୍ତର ଭଳି ଜଣା ପଡ଼ିଲା । କାରଣ ସାଇକେଲ ହାଣ୍ଡେଲ୍‌ରେ ଡାକ୍ତରୀ ବେଗ୍‌ଟାଏ ଝୁଲୁଛି ।

ମଣିଷଟି ସାଇକଲ ବାଡ଼ରେ ଆଉଜାଇ କାହାକୁ କିଛି ନ ପଚାରି ଭିତରକୁ ଆସିଲା । ତାକୁ ଦେଖି ବାସନ୍ତୀ ଭିତରକୁ ଗଲା ।

ଅପରିଚିତଙ୍କୁ ବସିବାକୁ ଦେଇ ଭଗୀରଥ ପଚାରିଲା—"ବାପା—ତୁମେ···? ସେ କହିଲା—"ମୁଁ ବିଶେଷ ଚିହ୍ନା ମଣିଷ ନୁହେଁ । ତଥାପି ପଚାରିଲେ ଯେତେବେଳେ ମୁଁ ପାଉଶିଲର ଧନଞ୍ଜୟ ।"

"ଓଁ ନାଁ ଶୁଣିଛି । ଆଜି ହାତରେ ସ୍ୱର୍ଗ ପାଇଲି । କଣ ନିଜେ ଆସି ପହଞ୍ଚିଗଲ—ଭଲ ହେଲା । ତୁମକୁ ଟେଲିଗ୍ରାମ ଖବର ଦେଲା ବୋଧହୁଏ ?"

ଧନଞ୍ଜୟ ମିଛ କଥା କହିଲା—"ନାଁ ଇଆଡୁ ଆସି ଖବର ପାଇଲି । ଭାବିଲି ଥରେ ଦେଖିଯାଏ । ତା'ଛଡ଼ା ଯଦି ନ ଖାଇବ, ଔଷଧ ଦେଇ ବା ଲାଭ କଣ ?"

ଧନଞ୍ଜୟ ଗଳାରେ ଥିଲା ହତାଶର ଲକ୍ଷଣ । ମନଟା ବି ଦବିଯାଇଥାଏ । ପ୍ରକୃତରେ ଯେମିତି ଗମ୍ଭୀର—ସେତେବେଳେ ଆହୁରି ଗମ୍ଭୀର ହୋଇ ପଡ଼ିଥାଏ । ଭଗୀରଥ ବୁଢ଼ା ଅନୁମାନ କରିଲେ । ତା ପ୍ରତି କୃତଜ୍ଞ ହୋଇ, ବୁଢ଼ା ତାକୁ ଭଲ କରି ଚାହିଁଲା । ଭଲ ଲୁଗା ପିନ୍ଧିଥିଲେ ସୁଦ୍ଧା ମୁଣ୍ଡବାଳ ଅଲରା ବଲରା, ଦାଢ଼ୀ ମଧ୍ୟ ଖିଅର ହୋଇନି । କିଛି ଗୋଟିଏ ଦାରୁଣ ଦୁଃଖ । ସୁନ୍ଦର ଆଖି ଦୁଇଟିର ଉଜ୍ଜ୍ୱଳତା ଆଉ ମୁଖର କାନ୍ତିକୁ କିଏ ହରଣ କରି ନେଇଛି ।

"ତାକୁ ଆଗେ ଦେଖିବ କି ବାପା ?"

"ଡକେଇ ପଠାନ୍ତୁ ।"

ଭଗୀରଥ ଭିତରକୁ ଆସି କଥାଟା କହିଲା—ପୁଣି ଧନଞ୍ଜୟ ପାଖକୁ ଗଲା । ଅନେକ ଦିନପରେ, ସେଦିନ ବାସନ୍ତୀ ଶଶୁର ସହିତ କଥା କହିଲା ।

"ମା' ! ତାକୁ ବର୍ତ୍ତମାନ ଯିବାକୁ କୁହ । ନିଜେ ନିଜେ ଯାଚି ହୋଇ ଏ ଘରକୁ ଆସିବାକୁ ତାଙ୍କୁ ଲାଜ ଲାଗୁନି ?"

"ତୁ ଚିହ୍ନି ପାରିବୁ ?"

"ପାରିଛି ।"

"କି ଜିଦ୍ ଧରିଛି । ଚିକିତ୍ସା ଜାଣିଥିବା ଟୋକା ନିଜେ ନିଜେ ଆସିଛି । ତୁ କ'ଣ ସବୁ କହୁଛୁ ?" ମଣିଷ ଘରକୁ ମଣିଷ ଆସିବ ନାହିଁ ନା ?"

ଏଇଥର ବାସନ୍ତୀର ହୋସ୍ ଆସିଲା । ଧନଞ୍ଜୟ ଆସି ଭୁଲ କରିଛି । ପଳାଇ ନଯାଇ ସେ ଯେତେ ଭୁଲ କରିଥିଲା ଆଜି ତାଠାରୁ ଆହୁରି ବଡ଼ ଭୁଲ ଧନଞ୍ଜୟ କରିଛି । ତାକୁ ମନରୁ ମରିଯାଇଛି ବୋଲି ବିସର୍ଜନ ଦେଇ ସୁଦ୍ଧା ଧନଞ୍ଜୟ ପ୍ରତି ଯଦି ଆହୁରି କଠୋର ଭାବ ଦେଖାଏ, ତା ହେଲେ ସେ ଧରାପଡ଼ିଯିବ । ଶଶୁର ନିଶ୍ଚେ

କହୁବେ "ଅନ୍ୟଙ୍କ ଆଗକୁ ଯେତେବେଳେ ଆସେ ଏହା ଆଗକୁ କାହିଁକି ନ ଆସିଲ ?"

ତା'କୁ ଧନଞ୍ଜୟର ସାହସ ଭଲ ଲାଗିଲା । ଏଇଟା କଣ ସତ୍ସାହସ ? ପୁରୁଷ ବୋଲି ତା'ର ମନବଳ ଅଛି । ସେଥିପାଇଁ ଧରା ପଡ଼ିବାର ଭୟକୁ ଏଡ଼ାଇ, ସେ ତା'ର ଦୁଃଖରେ ଦୁଃଖି ହେଲେ ଏଠାକୁ ଆସିଛି !

ସେଥିପାଇଁ ଶଶୁର ସଙ୍ଗରେ ଧନଞ୍ଜୟ ବସିଥିବା ଘରକୁ ସେ ଆସିଲା । ପିଢ଼ାରେ ବସିଲା, ଅନ୍ୟ ଆଡ଼କୁ ମୁହଁ ରହିଲା, ଓଢ଼ଣାଟା ମୁଣ୍ଡ ମଝିକୁ ଟାଣିଦେଲା, ଗୋଡ଼ ଆଙ୍ଗୁଠିରେ ମାଟି ଖେଳାଇବାକୁ ଲାଗିଲା ।

ଧନଞ୍ଜୟ ସ୍ତବ୍ଧ ହୋଇଗଲା । ସେ ଗମ୍ଭୀର ଭାବରେ ଲକ୍ଷ କଲା ସେ ବହୁତ ଦୁର୍ବଳ ହୋଇ ଯାଇଛି । ଆଗ ଚେହେରା ଆଦୌ ନାହିଁ ଯଦିଓ ସେହି କ୍ଷୀଣ ଶରୀରରେ ଥିଲା ସୌନ୍ଦର୍ଯ୍ୟ ଓ କମନୀୟତା । ପ୍ରାଣ ଭରିଦେବା ଭଳି ମୁଖଶ୍ରୀ ସେମିତି ଅଛି, ଅବଶ୍ୟ 'ସୁନ୍ଦର ଆଖିର ତାରାର 'ଝକମକ ବେଦନା ହରଣ କରି ନେଇଛି । କରୁଣ ମୁହଁଟିରେ ସ୍ନେହର ମା'ର ମହୀମାମୟୀ ମୂର୍ତ୍ତି' ବିରାଜମାନ କରୁଛି ।

ଧନଞ୍ଜୟ କିଛି ପଚରା ଉଚରା ନ କରିବା ଦେଖି ଭଗୀରଥ ବୁଢ଼ା ଭାବିଲା ଯେ, ସେ ଥିବାରୁ ତାଙ୍କର କଥା ପଦୁଟିଏ ପାରୁ ନ । ସେଥିପାଇଁ ସେ ସେହି ଘରୁ ବାହାରି ଆସିଲା । ଭଣୀଟାକୁ ଇସାରା ଦେଇ ଡାକି ଆଣିଲା ।

ଶେଷରେ ବାସନ୍ତୀ କହିଲା—"ମୁଁ ଭାବି ପାରୁନି ଯେ ତୁମେ...।" ଧନଞ୍ଜୟ ଖୁବ୍ ଧୀରେ ଧୀରେ କହିଲା—"ଯଦି ଆସି ଭୁଲ କରିଛି, ଆଉ ଆସିବି ନାହିଁ । ଜାଣିଛି ମଣିଷ ବଡ଼ ଅସହାୟ । ମଣିଷ ଅକ୍ଷମ, ବନ୍ଧନ ଖୋଲିବାର ଶକ୍ତି ନାହିଁ । ତମେ ମୋତେ ପସନ୍ଦ କଲ ନାହିଁ । ବୋଧହୁଏ ମୁଁ ସେମିତି ଯୋଗ୍ୟ ନୁହେଁ । ତଥାପି ତୁମକୁ ଦୋଷ ଦିଏ ଏବଂ ତୁମର ପାଖକୁ ନିଜେ ନିଜେ ଆସିଛି ।"

ବାସନ୍ତୀ କାନ୍ଦି ପକେଇ କହିଲା—"ମୋତେ ଏହି ଭାବରେ କ୍ଷମା କର ମୋତେ କଷ୍ଟ ଦେବାକୁ କାହିଁକି ଆସିଲ ? ସମସ୍ତ ଭୁଲିଯାଇଛ ?"

"ବୁଝିଲି ।"

"କଣ ବୁଝିଲ ?"

ବୁଝିଲି ଯେ ତୁମେ ସମ୍ଭ୍ରାନ୍ତ ହିନ୍ଦୁ ଘରର ବୋହୂ ।" ହଁ ମୁଁ ହିନ୍ଦୁ ଘରର ବିଧବା । ତେବେ ମୁଁ ହୋମ ଅଗ୍ନିରେ ବସିଥିଲି ।

ସିନ୍ଦୂର ଲଗେଇଥିଲି । ଜଣକର ସ୍ତ୍ରୀ ହୋଇଥିଲି । ମୋ ଦେହରେ ଜଣେ ପୁରୁଷର ଗନ୍ଧ ଅଛି । ତଥାପି ତୁମେ ମୋତେ କ୍ଷମା କରିଲ ? କି ଆଶ୍ଚର୍ଯ୍ୟ ? ବୁଝିଲ, ମୁଁ ଗୋଟିଏ ସାଧାରଣ ଝିଅ, ଏତେ ସୁନ୍ଦର ଜୀବନ ନଷ୍ଟ କରିବା, ତୁମର ଭବିଷ୍ୟତ ଅଛି, ମୋତେ ଏମିତି ରହିବାକୁ ଦିଅ ।"

"ବାସନ୍ତୀ !"

"କୁହ ।"

"ମୁଁ ଖାଲି ତୁମକୁ ଦେଖିବାକୁ ଆସିଥିଲି ।"

"ଭଲ କରିଛ ।"

"କିନ୍ତୁ ନିଜକୁ ଧ୍ୱଂସ କରିବାକୁ ଏ କି ବାଟ ଧରିଛ ? ଲୋକଙ୍କୁ ଦୁଃଖ ଦେଇ, ତୁମକୁ ଭଲ ଲାଗୁଛି ? ଭାତ କଣ କଜଆ କଲ ? ତୁମକୁ ଆଗରୁ ଏକଥା କହିଥିଲି । ମରିବାକୁ ଠିକ୍ କରିବା ବା ଆତ୍ମହତ୍ୟା କରିବାର କୌଣସି ଗୌରବ ନାହିଁ । ଏହି ପୃଥିବୀରେ ବଞ୍ଚି ରହିବାଟାହିଁ ଅସଲ କଥା । ସେଇଥିରେ ମନୁଷ୍ୟତ୍ୱର ଗୌରବ ।"

ଧନଞ୍ଜୟର ଆଖି ଛଳଛଳ ହେଲା । ବାସନ୍ତୀର ଆଖି ଛଳ ଛଳ ହେଲେ ମଧ୍ୟ ମନ ଯୋରରେ କହିଲା—"ମୁଁ କଥାଦେଲି । ମୁଁ ବଞ୍ଚିରହିବ । ହଜାର ଦୁଃଖ ଭୋଗି ମୁଁ ବଞ୍ଚି ରହିବ । କିନ୍ତୁ ଏହି ଅବସ୍ଥାରେ ବଞ୍ଚି ରହିବା ପାଇଁ କିଛି କାରଣ ଦେଖେଇ ପାରିବେ ?"

ଧନଞ୍ଜୟ ହଠାତ୍ ଉତ୍ତର ଦେଇ ପାରିଲା ନାହିଁ—"ସେ ତଳକୁ ଚାହିଁ ରହିଲା । କେବଳ ଧର୍ମର ଆଶ୍ରୟ ନେଇ, ନତୁବା ପରୋପକାର କାର୍ଯ୍ୟରେ ଲିପ୍ତ ରହି ବାସନ୍ତୀ ବାକି କେଇଟା ଦିନ କଟେଇ ପାରିବ ? ପାରିବ—ନିଶ୍ଚେ ପାରିବ । ଯୁଗେ ଯୁଗେ ହିନ୍ଦୁନାରୀ ଏହି ଦୃଷ୍ଟାନ୍ତ ଦେଖାଇଛନ୍ତି । ଅନ୍ତରରେ ମୁରଲୀଧରଙ୍କୁ ସ୍ଥାପନା କରି, ବଞ୍ଚି ରହିବାର ମୋହ ପାଇଥିଲେ ମୀରାବାଈ, ସଙ୍ଗୀତର ଯାଦୁ, ରସ-ରାଶିର ମନ ପ୍ରାଣକୁ ଆପ୍ଳୁତ କରିଥିଲା । ଆହୁରି କେତେ ଦୃଷ୍ଟାନ୍ତ—

ବାସନ୍ତୀକୁ ଉତ୍ତର ଦେବାକୁ ମୁହଁ ଟେକି ଚାହିଁଲା । ଏହା ଭିତରେ ବାସନ୍ତୀ ଭିତରକୁ ଚାଲିଯାଇଛି । ଭିତରୁ କହିବାର ଶୁଣାଗଲା—'ମା ! ମୁଁ ଭାତ ଖାଇବ ।

ତା ମୁହଁରୁ ଏକଥା ଶୁଣି ସମସ୍ତେ ଖୁସି ହୋଇଗଲେ । ସେ ତା 'ହେଲେ ରକ୍ଷା ପାଇଗଲା । ଧନଞ୍ଜୟ ପ୍ରତି ସମସ୍ତେ କୃତଜ୍ଞ ହେଲେ ।

ଭଗୀରଥ ତା ହାତ ଧରି କହିଲେ—"ବାପା ! ତୁମେ ଆଶ୍ଚର୍ଯ୍ୟ, ଈଶ୍ୱର ତୁମ ନାମକୁ ପ୍ରସିଦ୍ଧ କରନ୍ତୁ ।"

ଧନଞ୍ଜୟ ଗମ୍ଭୀର ହୋଇ କହିଲା—"ଭାତ ମାଗିଲେ ସୁଦ୍ଧା ପଛରେ ଦେବେ । ଏତେଦିନ ପରେ ଖାଇଲେ ପେଟରେ ଭାତ ରହିବନି । ପାରିଲେ ଲେମ୍ବୁପାଣି ଖୁଆଇବ । ପେଟଭଲ ଲାଗିଲେ ଦ୍ୱିପହରେ ଭାତଦେବ ।"

ଏହା କହି ଧନଞ୍ଜୟ ଆଉ ମୁହୂର୍ତ୍ତେ ସୁଦ୍ଧା ରହିଲା ନାହିଁ । ଦାଣ୍ଡକୁ ଆସି ଭଗୀରଥ ଓ ଭଣୀତା ପୁଣି ସମୟ ହେଲେ ଆସିବାକୁ ଅନୁରୋଧ କଲେ । ନ ଶୁଣିଲପରି ସେ ଗଲା, ଆଉ ଏଠାକୁ ନ ଆସିବାକୁ ଠିକ୍ କରିନେଲା ।

## ଅଠର

ସପ୍ତାହେ ଗଲା, ଧୀରେ ଧୀରେ ପନ୍ଦର ଦିନ କଟିଲା । ଦରିଙ୍ଗିୟାଲି ଅଞ୍ଚଳରେ ଧନଞ୍ଜୟ ଆଉ ଦିଶିଲାନାହିଁ । କାହା ମୁହଁରୁ ବାସନ୍ତୀ ତା କଥା ଶୁଣିବ, କାହାକୁ ପଚାରିବ ? ମଣିଷଙ୍କର ଥରେ ସନ୍ଦେହ ହେଲେ, ତା'ର ଆଉ ଶେଷ ନାହିଁ ।

କିନ୍ତୁ ଦିନେ କାହାକୁ ନ ପଚାରି, ସେ ଧନଞ୍ଜୟ ଖବର ଶୁଣିଲା । ସୋନାଇପଟିଆ ମଣିଷଙ୍କ କଣ୍ଠରେ ଧନଞ୍ଜୟର ସାହସର କଥା ଘରଆଡ଼େ ବ୍ୟାପିଗଲା । ଘଟଣାଟି ଏହିପରି—

ଠିକାଦାରୀ କରି ଖେଳରାମ ଯଥେଷ୍ଟ ଟଙ୍କା ଉପାର୍ଜ୍ଜନ କଲେ ସୁଦ୍ଧା, ତା'ର ଟଙ୍କା ଲୋଭ ବଢ଼ି ଚାଲିଲା । ଧନ ବ୍ୟାକୁଳ ମନଟା ପିଶାଚ ହୋଇଗଲା । ବୋଉର ମୃତ୍ୟୁ ଆଉ ଭଉଣୀର ଦୁର୍ଭାଗ୍ୟ କିଛିଦିନ ପାଇଁ ମନକୁ ଦବେଇ ଥିଲା । ହୁଏତ ସାମୟିକ ଭାବରେ, ଟଙ୍କା ପଇସା ଅସାର ବୋଲି ଭାବିଥିଲା । କିନ୍ତୁ ଆଜିକାଲି ତା'ର ପ୍ରଧାନ ସଙ୍ଗୀ ହେଲେ ସହରର କେତୋଟି ମଣିଷ, ଯେପରି—କର୍ପୁରର ଚୋଡ଼ୀ, ରାମମିଲାପ ପସମାନ, ହରବାର ଭାଟିଆ, ଆଉ ସନତ ଫୁକନ ଇତ୍ୟାଦି । ଏମାନେ ହେଲେ ସହରର ବିଖ୍ୟାତ ମଣିଷ । ସେମାନଙ୍କର କି ପ୍ରକାରର ବ୍ୟବସାୟ, କେହି ଜାଣି ପାରିବେ ନାହିଁ । ସେମାନେହିଁ ଖେଳରାମକୁ ବେଶି ଖରାପ କଲେ । ଆଜିକାଲି ଖେଳରାମ ମଦ ଖାଏ । ଦରିଙ୍ଗିଆଲିର କେହି କେହି କୁହନ୍ତି ଯେ, ଅସଲ ଦୋଷ

ତାକୁ ଗ୍ରାସ କରୁଛି । ଯେ କେଇଦିନ ସେ ସହରରେ ରୁହେ ତା'ର ଖାଉ ଖୁସି।
ବଡ଼ ବଡ଼ ହୋଟେଲରେ ରୁହେ । ମଦପିଏ । ପଇସା ଦେଲେ ଉପଭୋଗ ଲାଗି ଝିଅ
ମିଳିବାର ବନ୍ଦୋବସ୍ତ ମଧ୍ୟ ଥାଏ । ସହରଆଡ଼େ ଭୋଗବିଳାସ ଦେଖି, ସେ ଅଧିକ
ଟଙ୍କାର ପ୍ରୟୋଜନ ଅନୁଭବ କରୁଛି । ଯେତକ ଆୟକରେ, ସେତକରେ ସେ ସନ୍ତୁଷ୍ଟ
ନୁହେଁ । ସେ ସ୍ୱପ୍ନ ଦେଖିଛି ଯେ, ସନତ୍ ଫୁକନ ଆଉ ରାମମିଲ୍ଲପଙ୍କ ପରି ସେ କାଠକଳ
ବସେଇବ । ହରବୀର ଭଟିଆପରି ସିନେମାହଲ ବସେଇବ। ଲାଳସା ଆଉ ଲାଳସାର
କ୍ଷଣିକ ପରିତୃପ୍ତି ତା ଅସନ୍ତୋଷ ବଢ଼େଇଛି—ମାନସିକ ସୃଷ୍ଟି ଅନୁଭୂତ ହେଉଇ
ବସିଛି । ଶୋଷଣରୁ ସିଙ୍ଗି ହୋଇଛି । କୃଷି ଜୀବନରେ ବିକଳାଙ୍ଗ ଅବସ୍ଥାରେ ଦେଶର
ବ୍ୟାଧିଗ୍ରସ୍ତ ଅଗ୍ରଗତି ଆଉ ଗ୍ରାମ୍ୟଜୀବନର କ୍ଷୟିଷ୍ଣୁ ପର୍ଯ୍ୟାୟରେ ନୂତନ ମୂଲ୍ୟବୋଧ ଆଉ
ପରିସ୍ଥିତି ତାରି ପରି ନୂତନ ମଣିଷ ସୃଷ୍ଟି କରୁଛି । ତାରି ପରି ଅନେକ ସୋନାଇ
ପଥିଆ ନୀତିବୋଧକୁ ଖାଇସାରଲେଣି । କିନ୍ତୁ ସୋନାଇ ପାଖରେ ଦୁର୍ନୀତି ପଶିଲେ
ସୁଦ୍ଧା ଏମାନଙ୍କ ମୁହଁ ପୃର୍ ମେଲ୍ଲ କରନ୍ତ । କାରଣ ମଣିଷର ଅନ୍ତର୍ନିହିତ ସତ୍ୟତା
ଅଛି । ଆଉ ସୋନାଇପଥିଆ ଜୀବନର ଐତିହ୍ୟ ଅତି ସୁପ୍ରତିଷ୍ଠିତ । ସୋନାଇର ସ୍ରୋତ
ଅଛି । ସୋନାଇର ରୂପ ଅଛି । ସୋନାଇ ପଥିଆ ଜୀବନର ଗତି ଛନ୍ଦର ସଠିକ
ତାଳଲୟ ଅଛି । ଦଲଙ୍ଗଘାଟ ଉପରେ କାଠର ମଜଭୁତ ପୋଲ ତିଆରି ହେଲା ।
ତା'ପରେ ପାଉଁଶିଳ ମଝିଦେଇ ଶିଲଗୁଡ଼ିକୁ ରାସ୍ତା ହେଲା । ଆଗର ଦକ୍ଷିଣ ଦିଗର
ରାସ୍ତା ସହିତ ମିଶିବ । ନୂଆ ରାସ୍ତାର କାମ ଆରମ୍ଭ ହୋଇଯାଇଛି । ଭଟିଆ, ଛୋଡ଼ୀ,
ପତ୍ମାନ ଆଉ ଭୋଗରାମ ଠିକା ପାଉଛନ୍ତି । ଏହି ରାସ୍ତା ଡ଼ିଙ୍ଗ୍ ବଜାରଯାଏ ଯିବ ।
ଅତିଶୀଘ୍ର ମଣିଷ ସର୍ଭିସବସ୍‌ରେ ବରଯୋସ୍ଥାରେ ତୀର୍ଥ ଦର୍ଶନ କରି ପାରିବେ ।
ଆଗପରି ଆଉ ମାଟି ଦାବୁଅ ମାଡ଼ି ବରଯୋଦ୍ୱାକୁ ଯିବାକୁ ପଡ଼ିବ ନାହିଁ ।

ପାଉଁଶିଳରେ ଖଣ୍ଡେ ସରକାରୀ ଡାକ୍ତରଖାନା ବସିବ, ଘର ତିଆରିରେ ଠିକା
ପାଇଛି ଭୋଗରାମ । ଚିକିତ୍ସାଳୟ ବସିଗଲେ ଭୋଗରାମ ଭାବିଥାଏ ଯେ, ଧନଞ୍ଜୟର
ହୋମିଓପାଥି ଚିକିତ୍ସା ବନ୍ଦ ହେବ । କିନ୍ତୁ ଧନଞ୍ଜୟ ଏଥିରେ ଚିନ୍ତିତ ନୁହେଁ ।

ହାତୀଶୁଣ୍ଡ ଆଉ ଜାଜୋଗାରେ ଦୁଇଟି ସରକାରୀ ଡାକ୍ତରଖାନା ଅଛି । କି'ଣ ସେ
ସବୁ ଜାଗାରେ ସେ ହୋମିଓପାଥି ଚିକିତ୍ସା କରୁନ ? ସେ ସବୁ ଜାଗାରେ ଗାଉଁଲି
ଔଷଧପ୍ରତି ବେଶ୍ ଆଦର ଅଛି ।

କିନ୍ତୁ ଶିଲଗୁଡ଼ି ଦେଇ ବରଯୋସ୍ଥାକୁ ରାସ୍ତା କାମ ଆରମ୍ଭ ହେବା ପରେ ପରେ
ସୋନାଇର ତୀରର ଦିଗରେ ମଣିଷଙ୍କର ଯିବା ଆସିବା ବଢ଼ିଲା । ଏକ ଠିକାଦାରଙ୍କର

ରହିଁ । ଧନଞ୍ଜୟ ପାଉଁଶିଆରେ ଗୋଟିଏ ଶାନ୍ତି-ସେନା ଗଢ଼ିଲା । ସେମାନେ ପାଳି କରି ଦଳଙ୍ଗ ଘାଟରୁ ଜଳମଇ ଗାଁ ପର୍ଯ୍ୟନ୍ତ ଲୋକେ ରାତିରେ ପହରା ଦେଲେ । ଦିନେ ରାତିରେ ଗୋଟିଏ ବୋଝେଇ ଡଙ୍ଗା ପାଉଁଶିଆ ଘାଟରେ ଲାଗିଲା । ଜିନିଷପତ୍ର କୂଳରେ ଓହ୍ଲାଇ ଦିଆଗଲା । ଅଳ୍ପପରେ ଖଣ୍ଡିଏ ଗୋରୁଗାଡ଼ି ସେ ଯାଗାକୁ ଆସିଲା, ଶାନ୍ତି ସେନାଙ୍କ ଆଖିରେ ପଡ଼ିଲା । ସେମାନେ ଦେଖିଲେ ଯେ ଛଅ ସାତଟା ମାଲ ଭର୍ତ୍ତି ଅଖା ପାଖରେ ଭୋଗରାମ ଠିଆ ହୋଇଛି । ତା ପାଖରେ ଦୁଇଟି ବଳୁଆ ମଣିଷ । ତାଙ୍କ ହାତରେ ଲଠୀ । ବାଳ ମାଗୁର ସିଙ୍ଗପରି । କଣରୁ ଜଣାପଡୁଥାଏ ଯେ ଏମାନେ ମାଡ଼ପିଟ କରିବା ମଣିଷ । ତାଙ୍କର ମୁହଁ ଦେଖିଲେ ଭୟ ହେବ । ମୁହଁରେ ଟିକେ ହେଲେ କୋମଳତା ନାହିଁ । ଦୁଇଟି ମୁହଁ ନିର୍ଦ୍ଦୟତାରେ ପୂର୍ଣ୍ଣ ।

ଜଣେ ଶାନ୍ତିସେନା ଭୋଗରାମକୁ ପଚାରିଲା—ଅଖାରେ ଏ ସବୁ କି ଜିନିଷ । ଭୋଗରାମ କହିଲା "ବିଲାତିମାଟି ।"

"ରାତିରେ ବିଲାତି ମାଟି ଆଣୁଛ କାହିଁକି, ଦିନରେ ଆଣି ପାରୁନା ?"

"କେଇଟି ଦିନ ଭିତରେ ଡ଼ାକ୍ତରଖାନା କାମ ଶେଷ କରିବାକୁ ହେବ । ସେ ପାଖରେ ରାସ୍ତାକାମ ଲାଗିଛି । ସେଥିପାଇଁ ବର୍ତ୍ତମାନ ଆଣିଲି । ନ ଆଣିଲେ ସକାଳେ ରାଜମିସ୍ତ୍ରୀ ହାତ ଖାଲି କରି ବସିବେ ।

"କେଉଁ ଲ କଥା କହୁଲେ ଚଳବନ ଠିକାଦାର ବାବୁ । ଏ ଅଖା ଆଜି ଏଇଠି ଥାଉ । କାଲି ସକାଳେ ପରୀକ୍ଷା କରିସାରିଲେ ନେଇ ପାରିବ ।"

"ଭଲ କଥା କହୁଛ ! ପାଉଁଶିଆରେ କଣ ମାଟି ନାହିଁ ଯେ ମୁଁ ସିମେଣ୍ଟରେ ମାଟି ମିଶାଇ ଆଣିବି ?"

"ମାଟି ଆଣନ୍ତି ନାହିଁ ବୋଲି ଆମେ ଜାଣୁ ଠିକାଦାର ବାବୁ । ଆପଣ ଏପରି ମୂର୍ଖ ନୁହଁନ୍ତି । ଏହା ଭିତରେ କଳା ଧରଣର ମାଟି ଅଛି ବୋଲି ଆମର ସନ୍ଦେହ ।"

ଭଲ କଥା କହୁବାପରେ ଦୁଇ ପକ୍ଷଭିତରେ ତୁମୁଳ ତର୍କ ବିତର୍କ ହେଲା । ହାତା-ହାତିରେ ପରିଣତ ହୋଇପାରେ ବୋଲି ଶାନ୍ତିସେନାର ଜଣେ ଧନଞ୍ଜୟଙ୍କୁ ଡାକିବାକୁ ଗଲେ । ସେମାନେ ଭୋଗରାମର ଫୁସୁଲା ଫୁସୁଲି ଶୁଣିଲେ ନାହିଁ । ଭୋଗରାମ ଜଣେ ଶାନ୍ତି ସେନାର ଜଣଙ୍କୁ ଦୂରକୁ ଡାକିନେଇ କହିଲା—"ଆଜି ରାତିରେ ସିମେଣ୍ଟ ନ ନେଲେ ମୋର ଭୀଷଣ କ୍ଷତି ହେବ । କିଛି ଟଙ୍କା ନିଅ, ରଖ ।" ଏହା କହିବାରୁ ଶାନ୍ତିସେନାଙ୍କର ସନ୍ଦେହ ବଢ଼ିଲା ।

ଧନଞ୍ଜୟ ଆସି ପହଞ୍ଚିଲା । ସେ ଶାନ୍ତିସେନା ପ୍ରଧାନଙ୍କୁ ଡାକି ଆସ୍ତେ ଆସ୍ତେ ପଚାରିଲା—"ତୁମେ ଭୋଗରାମର ପକେଟ ଚେକ୍ କରିଛ ? ତା ହାତରେ ପିସ୍ତଲ ଥାଇପାରେ ।" ଝୋକାଟା ନାହିଁ କରିବା ସଙ୍ଗେ ସଙ୍ଗେ ଧନଞ୍ଜୟ ଭୋଗରାମକୁ ଆକ୍ରମଣ କରି ମାଟିରେ ପକେଇ ଦେଲା । ବାକିତକ ଟୋକା ଦୁଇଟା ଗୁଣ୍ଡାକୁ ଘେରି ଗଲେ । ଜଣେ ମଇଁଷି ଶିଙ୍ଗର କାହାଳୀ ବଜେଇ ଦେଲା । ହାତାହାତି ଚାଲିଲା । ଧନଞ୍ଜୟ ଆଉ ଭୋଗରାମଙ୍କ ଧସ୍ତାଧସ୍ତି ଚାଲିଲା । ଗାଁ ଲୋକେ ଆସି ଜମା ହେଲେ । ଆଉ ଦେଖିଲେ ଯେ ଧନଞ୍ଜୟ ଭୋଗରାମ ଛାତି ଉପରେ ବସି ଭୋଗରାମ ପକେଟରୁ ପିସ୍ତଲ ବାହାରକରି ଛାତିରେ ଲଗେଇଛି ।

ସେ ରାଗି କହିଲା, "ଏଇଖିଣା ଯଦି ତୁମକୁ ଗୁଳିକରି ଲାସ୍‌ଟାକୁ ସୋନାଇରେ ଭସେଇଦିଏ ?"

ଭୋଗରାମ ଅସ୍ପଷ୍ଟ ଗଳାରେ କହିଲା—"ମୋତେ କ୍ଷମାକର ଧନଞ୍ଜୟ ।"

ଧନଞ୍ଜୟ ଗର୍ଜିଉଠିଲା । "କାପୁରୁଷ, ଲାଜ ଲାଗୁନି ? ଡରନା । ମୋପରି ମଣିଷ, ମଣିଷକୁ ହତ୍ୟା କରେନା, ତୁମପରି ମଣିଷଙ୍କର ହତ୍ୟା କରିବାର ମନ ଥାଇଛି । କିନ୍ତୁ ଆଉ ପାଇବନାହିଁ । ତୁମମାନଙ୍କର ସାହସ ନାହିଁ । ତୁମେ ସବୁ କାପୁରୁଷ ।"

ଗାଁ ଲୋକେ ଭୋଗରାମ ଆଉ ଗୁଣ୍ଡା ଦୁଇଟାକୁ ବାନ୍ଧି ପକେଇଲେ । ପୁଲିସକୁ ଖବର୍ ଦିଆଗଲା । ଅବକାଶ ବଙ୍ଗଳାର ମଣିଷ ଆସିଲେ ।

ଅବକାଶ ମଣିଷ ଧନଞ୍ଜୟଙ୍କୁ ପଚାରିଲେ—"ବସ୍ତା ପରୀକ୍ଷା କରିଛ ?"

ଧନଞ୍ଜୟ କହିଲା—"କରିନୁ ।"

"ତା ହେଲେ ବାଡ଼ୀବାଡ଼ି କରିଲ କାହିଁକି ?" କର୍ମଚାରୀର କଥାରୁ ଜଣା ପଡ଼ୁଥାଏ, ସେ ଭୋଗରାମ ସପକ୍ଷରେ । ଧନଞ୍ଜୟ ବୁଝି ପାରିଲା । ବିନମ୍ର ହୋଇ କହିଲା—"ସରକାରର ଗୃହରକ୍ଷୀ ବାହିନୀ ଆଉ ଆମ ଶାନ୍ତିସେନା ଏକା । ଆମର ନିୟମ ଅନୁଯାୟୀ, ରାତିରେ ଗାଁ ଭିତରେ ସନ୍ଦେହ ଜନକ ମଣିଷ ଯିବା ଆସିବା କରି ପାରିବ ନାହିଁ । ଏମାନଙ୍କର ଅଧ ରାତିରେ ସିମେଣ୍ଟ୍ ଆଣିବାର ଉଦ୍ଦେଶ୍ୟ କଣ ? ସେଥିରେ ପୁଣି ଗୁଣ୍ଡା । ହାତରେ ଲଠି ଆଉ ପିସ୍ତଲ । କାହିଁକି ?"

କର୍ମଚାରୀ ଜଣକ କିଛି କହିଲେନି । ଲୋକଙ୍କର ଖୁବ୍ କୌତୁହଳ ହେଲା । ସମସ୍ତେ ଦାବୀ କଲେ ଯେ ସମସ୍ତଙ୍କ ଆଗରେ ବସ୍ତା ପରୀକ୍ଷା କରାଯାଉ ।

ବସ୍ତା ଖାନତଲ୍ଲାସ ହେଲା । ଦୁଇ ବସ୍ତାରୁ ଦୁଇ ପୁଟୁଳି ଅଫିମ ମିଲିଲା । କର୍ମଚାରୀ କିନ୍ତୁ ଏହାକୁ ଜାଣି ଖୋଜି ନଥିଲା । କିନ୍ତୁ ଲୋକେ ତରଜୁ.. ଆଣି ଓଜନ କଲେ । କଲେ ଅଫିମ ମିଲିଲା ।

ଖେଗରାମ ଆଉ ଗୁଣ୍ଡା ଦୁଇଜଣ ଗ୍ରେପ୍ତାର ହେଲେ । ସଦରକୁ ଚାଲାଣ ହେଲେ । ସୋନାଇପଙ୍ଗା ଅଞ୍ଚଳରେ ଘଟଣାଟା ଚାଞ୍ଚଲ୍ୟ ସୃଷ୍ଟି କଲା । ଘଟଣାଟା ସମସ୍ତଙ୍କ ମୁହଁରେ ବ୍ୟାପିଗଲା । ଆଗରୁ ଲୋକେ ମଧ୍ୟ ଶୁଣିଥିଲେ ଯେ, ଖେଗରାମ ଅଫିମ ବ୍ୟବସାୟ କରେ କିନ୍ତୁ ଖୋଲା ଖୋଲି କହିବାକୁ କାହାର ସାହସ ନଥିଲା । କାରଣ ଆଜିକାଲି ଖେଗରାମ ସୋନାଇପଙ୍ଗାଆରେ ସବୁଠାରୁ ଧନୀଲୋକ । ତାର ଯେଉଁ ପ୍ରତାପ, ସେ ଯେ କୌଣସି ମନୁଷ୍ୟର ଅପକାର କରିପାରେ, ତା ଛଡ଼ା ତାଠାରୁ ଟଙ୍କା ଧାର ନେବା ମଣିଷ ଅନେକ, ଲୋକେ ତା' ଆଗରେ ଆସ୍ତେ ଆସ୍ତେ କଥା କୁହନ୍ତି । ବହୁତ ଲୋକ ତା ପାଖକୁ ଯା'ଆସ କରନ୍ତି । ଆଉ ଆଜିକାଲି ବାହାର ଘର କମ୍ ସଜେଇଛି ? ମଲି ମୁଣ୍ଡିଆ ମଣିଷ ସେ ଘର ଭିତରକୁ ଗଲେ ଗ୍ରୀତ ଅଣିବ ।

ସାତଦିନ ଖେଗରାମ ହାଜତରେ ରହିଲା । ଘଟଣା ଖପ୍ରପ ଆଡ଼କୁ ଗତି କରୁଥାଏ । ଆଇନର ମାପ କାଠିରେ ପଡ଼ି ଧନଞ୍ଜୟ ପ୍ରତି ଖୁବ୍ ଲାଗିଥାଏ । ପଛରେ ଗାଁ ଲୋକେ ସାକ୍ଷୀ ଦେବାରୁ ତା'ର ଅବସ୍ଥା କହିଲେ ନସରେ । ଦୁଇବର୍ଷ ଜେଲ ହେଲା, ବାକି ଦୁଇଜଣଙ୍କୁ ଛଅମାସ ଜେଲ ହେଲା । କାରଣ କଳା ମାଟିର ବ୍ୟବସାୟୀ ସେମାନେ ନୁହନ୍ତି । ଖେଗରାମ ନିଜେ ।

ଜେଲ୍‌କୁ ଯିବା ଆଗରୁ ତରୁଲତା ଆଉ ପିଲାମାନେ ଦେଖା କରିଥିଲେ । ତା'ର କିନ୍ତୁ ଲୁହ ବୋହୁନଥିଲା । ମୁହଁରେ ଦୁଃଚିନ୍ତା ଥିଲା । ସେ ପ୍ରତିହିଂସା ଦୃଷ୍ଟିରେ ଦୂରକୁ ଚାହିଁ ରହିଥିଲା । ତରୁଲତା କାନ୍ଦିଥିଲା । କାରଣ ଖେଗରାମର କଥା ଓ ମୁହଁରେ ସୁଧାରିବାର ଲକ୍ଷଣ ନ ଥିଲା । ଜେଲ୍‌କୁ ଯିବାର ଆଗ ମୁହୂର୍ତ୍ତରେ, ସେ ପକେଟରୁ ଚେକ୍‌ବହି ବାହାର କରି ଦୁଇଟି ଚେକ୍‌ରେ ଦସ୍ତଖତ କଲା ଓ ଜଣେ ସମ୍ପର୍କୀୟଙ୍କୁ ଲାଇ ମୁକୁତା ହାତରେ ଦେଇ କହିଲା—"ଏ କସ୍ ଚେକ୍ ଦେଉଛି । ଦୁଇବର୍ଷ ଘର ଖବର ବୁଝିବୁ । ଟଙ୍କା ଦରକାର ହେଲେ ଚୌଡ଼ୀ ଓ ସନତ ଫୁକନ୍‌କୁ ଖାଲି ଖବର ଦେଲେ ଚଳିବ ।"

ସବୁକଥା ବାସନ୍ତୀ ନ ଶୁଣିଲେ ହେଁ ବାସନ୍ତୀ ଘଟଣାର ତାତପର୍ଯ୍ୟ ବୁଝି ପାରିଲା । ଭାଉଜ ଲାଗି ତାର ଭାରି ଦୁଃଖ ହେଲା । କିନ୍ତୁ ବିଶେଷ କ'ଣ ଆ କଥା କହି ସେ ତାଙ୍କୁ ସାନ୍ତ୍ୱନା ଦେବ ? ତରୁଲତାକୁ ଦେଖିବାକୁ ବାସନ୍ତୀ ବା ମୋର-

ପୂରବରୁ ଯିବ କିପରି ? ଭୋଗରାମର ଭଉଣୀ ବୋଲି ପରିଚୟ ଦେବାକୁ ଖରାପ ଲାଗୁଛି । ସେ ଭାବିଲା, ଜୀବନରେ ଆଉ ଭଲ କିଛି ଶୁଣିବାର ସୌଭାଗ୍ୟ ତାର ହେବନି । ଏମିତି ଦୁଃଖରେ ଧନଞ୍ଜୟ ମନେ ପଡ଼ିଲା ଆଜି ଲୋକଙ୍କ ମୁହଁରେ ତା'ର ପ୍ରଶଂସା ଶୁଣି ମନରେ ବିଜୁଳି ମାରିଦେଲା ।

ବାସନ୍ତୀକୁ ଦୁଃଖିତା ଦେଖି ଭଗୀରଥ ବୁଢ଼ା ଆହୁରି ଚିନ୍ତିତ ହୋଇ ପଡ଼ିଲା । ସେ ନିଜେ ନିଜେ ଥରେ କହି ପକେଇଲା—"ବାସନ୍ତୀ ! ଭାଇ କଥା ଭାବି ଲାଭ ନାହିଁ । ଭାଇର ଅବସ୍ଥାହିଁ ତାକୁ ଖରାପ କରିଛି । ଭାଇ ଖରାପ ହେଲେ, ମଣିଷ କଣ ଭଉଣୀକୁ ଖରାପ ଭାବିବେ ? ଏଇଟା ତୋର ଘର ! ଆମେ ତୋର ବାପା ମା ! ଆମେ ଖରାପ ହେଲେ କି ତୋତେ ଖରାପ ପାଇଲେ, ତୋତେ ଖରାପ ଲାଗିବ ସିନା ।"

ବୁଢ଼ାର କଥା ଶୁଣି ବାସନ୍ତୀ ମନ ହାଲୁକା ହେଲା । ସବୁ ମନୁଷ୍ୟଙ୍କ ଠାରୁ ବୁଢ଼ା ଜ୍ଞାନୀ ବୋଲି ମନେ ହେଲା । ବୁଢ଼ାକୁ କଷ୍ଟ ନ ଦେବାକୁ କଥା ଦେଇ, ନିଜର କୌତୁହଳ ଦବେଇ ନପାରି କହିଲା—"ବାପା ! ଏଇ କଥାଟା ଟିକେ ଚିନ୍ତା କରି ବୁଝେଇ ଦେଲ ?"

"କଣ ଝିଅ ?"

"ଭୋଗରାମ ମୋ ପାଇଁ ଖୁବ୍ ଚିନ୍ତା କରୁଥିଲା । ମୋତେ ବିଦା କରିବା ଦିନ ସେ ଖୁବ୍ ଦୁଃଖ କରିଥିଲା । ମୁଁ ବିଧବା ହେଲାରୁ ଆଉ ପୁଅ ମରିବାରେ ସେ ଖୁବ୍ ଦୁଃଖିତ ହୋଇଥିଲା । ତା' ମନ ଏତେ କୋମଳ ! କିନ୍ତୁ ସେହି ମଣିଷ ଏକା ସଙ୍ଗରେ ଏମିତି ଖରାପ ହୋଇପାରେ ? ତା'ହେଲେ କେଉଁ ମଣିଷକୁ ବିଶ୍ୱାସ କରିବ କିପରି ?"

ସୃଷ୍ଟିର ବ୍ୟାପକତାରେ ନାନା ଦେଶ ବୁଲିଥିବା ଓ ନାନା କଥା ଶୁଣିଥିବା ଭଗୀରଥ କାଳୁନ୍‌ଟଗା ସମସ୍ୟାରେ ପଡ଼ିଗଲା । ଭାବିଲା ଆଜୀବନ ଦୁଃଖ ସହି ସହି, ଝିଅର ଗମ୍ଭୀରତା ବଢ଼ିଛି । ସେ ମୂଳସତ୍ୟ ସନ୍ଧାନ କରୁଛି । କିନ୍ତୁ ଏହି ଜଗତରେ କେବଳ ପରମ ପୁରୁଷ ଛଡ଼ା ଆଉ କଣ ମୂଳସତ୍ୟ ଥାଇପାରେ ? ବୁଢ଼ା ଧୀରେ ଧୀରେ କହିଲା —"ଝିଅ, ଏହି ବୁଢ଼ା ଜୀବନରେ ବି ତୋ ପ୍ରଶ୍ନର ସଠିକ ଉତ୍ତର ଦେଇପାରିବନି । ମୁଁ ବା କେତେ ବିଦ୍ୟାର ମଣିଷ ! ତଥାପି ପ୍ରଭୁଙ୍କ ଠେଇଁ ବିଶ୍ୱାସ ଅଛି ବୋଲି ବିଶେଷ ଭୁଲ କରିନି । ମଝିରେ ମଝିରେ ଏହା ଭାବେ । ପୋଥୀ ପଢ଼ିବୁ ଝିଅ ? ଶାସ୍ତ୍ରହିଁ ମନର ସକଳ ସଂଶୟ ଦୂରକରେ, ଦୁଃଖ ମଧ୍ୟ ଦୂର ହେବ ।"

"ପଢ଼ିବି, କିନ୍ତୁ ମନଟା ଯେ ସବୁବେଳେ ଖରାପ ରହୁଛି ।"

"ଝିଅ ! ମୁଁ ଭାବେ ମନୁଷ୍ୟର ଦୁଇଟା ମନ । ସେଥିପାଇଁ ସର୍ବଦା କାମରେ ବ୍ୟସ୍ତ ଥିବା ମଣିଷକୁ ବୁଝିବା କଷ୍ଟ । ମାଟି ଖୋଲି ଖୋଲି ଦଣ୍ଡ ଯାଗାରୁ ତେଲ, କୋଇଲା ବାହାର କରିହେବ କିନ୍ତୁ ମଣିଷ ମନର ଥେର୍ ପାଇ ହେବ ନାହିଁ । ମଣିଷର ଏକ ସଙ୍ଗରେ ଦୁଇଟି ମନ ଥିବାରୁ, ମଣିଷର ଅନ୍ୟ ମଣିଷ ପ୍ରତି କୌତୁହଳ ବେଶି । ମନୁଷ୍ୟ ଦୋଷ ଗୁଣର ସମଷ୍ଟି । ନିର୍ଭୁଲ ମଣିଷ ପାଇବା କଷ୍ଟ । ଅତି ଖରାପ ମଣିଷର ଭଲ ଗୁଣ ଆଇପାରେ । ନରହନ୍ତା ମଣିଷ ମଧ୍ୟ ଚରମ ବେମାରୀ ବଲଦଟା ମରିଗଲେ କାନ୍ଦ ପକାଏ । ସେଥିପାଇଁ ମୁଁ ମଝିରେ ମଝିରେ ଭାବେ ଭଲଗୁଣଠାରୁ ଖରାପ ଗୁଣର ମାତ୍ରା ବେଶି । ହେଲେ, ମଣିଷ ଦେଶର କଳଙ୍କ ହୋଇପଡ଼େ । ସେ ନିଜେଇ ଧ୍ୱଂସର ପଥ ବାଛି ନିଏ । ଭୋଗରାମର ସେଇଆ ହୋଇଛି । ସେଥିପାଇଁ ଝିଅ, ମନ ସ୍ଥିର କରିବାକୁ ହେଲେ ଭଗବାନ ବିଶ୍ୱାସ ଦରକାର । ବାସନା, ଲୋଭ ଆଉ ମୋହର କୌଣସି ସୀମା ନାହିଁ । ସେଥିପାଇଁ ମଣିଷର ଦୁଃଖର ସୀମା ନାହିଁ । ସେହି କାରଣ ଯୋଗୁଁ ଶାସ୍ତ୍ରର ସୃଷ୍ଟି ଅତୁଳନୀୟ । ନିଷ୍କାମ ଶକ୍ତିରେ ଆତ୍ମାକୁ ଭଗବାନଙ୍କ ଠେଇଁ ଲୀନ କରି ପାରିଲେ, ମନୁଷ୍ୟ ପ୍ରକୃତରେ ଶାନ୍ତି ଲଭ କରେ । ମନ ଏକମୁଖୀ ହୁଏ । ଅହଂଭାବ ଦୂର ହୁଏ । ଜୀବ ମୁକ୍ତି ପାଏ । ସେହିକଥା ଭାବିବାକୁ ମନଯାଏ ଯେ, ଶଙ୍କର, ମାଧବ ଆମକୁ ଯାହା ଦେଇଥିଲେ, ଆଜିକୁ ପାଞ୍ଚଶହ ବର୍ଷ ହେଲା ଆସାମର କେଉଁ ନେତା କି ବଡ଼ ଲୋକ ତାହା ଦେଇ ପାରିନାହାନ୍ତି, ଆମେ ତାର ମୂଲ୍ୟ ବୁଝିଛୁ କି ନାହିଁ ସନ୍ଦେହ !"

ନିଜକୁ କହିଲା ଭଲ ଭଗୀରଥ ସବୁ କହିଗଲା । ବାସନ୍ତୀର ଉପସ୍ଥିତିକୁ ପାଶୋରି ଯାଇ ଘୋଷା କେଇପଦ ବୋଇଲା—

"କର୍ମ ତ ବିଶ୍ୱାସ ଯାର ହୃଆଟୋ ଥାକାନ୍ତ ହରି
ଅନ୍ତଶସ୍ତ ଦୁର ହୋଇ ତାର୍,
ଦୁରତ ବଦୁର ହୋନ୍ତ ଅହଙ୍କାର ଆକନ୍ତେଯୋ
ସାକ୍ଷାତେ କୃଷ୍ଣ କୋ ପାଏ ।
ଶ୍ରବଣ କୀର୍ତ୍ତନ ଧର୍ମ ଯାର ।"

(କର୍ମରେ ଯାହାର ବିଶ୍ୱାସ ତା ହୃଦୟରେ ହରି ବାସକରନ୍ତି । ଯାହା ହୃଦୟରେ ଅହଙ୍କାର ନାହିଁ, କୀର୍ତ୍ତନ ଶୁଣିବା ଯାହାର ଧର୍ମ ସେ ହିଁ ସାକ୍ଷାତ କୃଷ୍ଣଙ୍କୁ ପାଏ । )

ବାସନ୍ତୀ ମନଟା ଶାନ୍ତ ହୋଇଗଲା । ଘଣ୍ଟା ଅର୍ଦ୍ଧ ପରି ଜଣାଗଲା । ସେ ଶ୍ୱଶୁରଙ୍କ ପାଖରୁ ଚାଲିଗଲା । ଆଗରେ ସୋନାଇକୁ ଚାହିଁ ରହିଲା । ଖରା ଢଳିଲ

ସ୍ରୋତର ଗତି ଧୀର । ଆଗର ଉଚ୍ଛୃଙ୍ଖଳତା ନାହିଁ । ପାଣି ସ୍ଫଟିକ ପରି । ଏହା ସୋନାଇର ନୂଆ ରୂପ । ଏହି ରୂପରେ ମହିମା ଅଛି । ଏହା ଯେପରି ସୋନାଇର ତପସ୍ୱିନୀ ରୂପ । ମାଘର ଜାଡ଼ ଆଉ ନଦୀକୂଳର ଶୁଖିଲା ଗଛ, ଏ ରୂପର ସୌନ୍ଦର୍ଯ୍ୟକୁ ହାନି କରିପାରି ନାହିଁ ।

ସେହିଦିନ ଭଣିତା କହିଲା—"ତୁ ଏମିତି ଧଳା ଶାଢ଼ୀ ପିନ୍ଧିଲାରୁ ବାପା ମନ କଷ୍ଟ । କହିଲେ, ବୋଧହୁଏ ଏମିତି ରହିଲେ, ମନରେ ସନ୍ତାପ ବଢ଼ିବ । ଦୁଃଖ ସୁଖର ମୂଳରେ ହେଉଛି ମନ । ଏମିତିଆ ପୋଷାକ ମନକୁ ଆଗଠାରୁ ବେଶି ଖରାପ କରିବ । ତୁମେ ପାରୁଲ ହେଉଣିକାଙ୍କ ପରି ପିନ୍ଧାପିନ୍ଧି କଲେ ଭଲ ଲାଗିବ । ଯୁବତୀ ଝିଅକୁ ଏମିତି ପୋଷାକରେ ଦେଖିବାକୁ ମନ କେମିତି ଚାହିଁବ ?"

ପରଦିନଠାରୁ ସେ ଫଳଥିବା ବ୍ଲାଉଜ ଆଉ ଧଡ଼ିଥିବା ମେଖଳା ପିନ୍ଧିଲା । ପାରୁଲ ହେଉଣିକାଙ୍କ ପରି ମୁଣ୍ଡ ଲୁଣ୍ଡା ହେଲା । ମୁଣ୍ଡରେ ସିନ୍ଦୂର ଟିପା ନ ଥିବାରୁ ଯାହା ଜଣାଯାଏ ବିଧବା ବୋଲି । ମାର୍ଚ୍ଚ ମାସ ପହିଲା ଦିନ ଭଗୀରଥ ପେନ୍‌ସନ୍ ଟଙ୍କା ଆଣିବାକୁ ସହରକୁ ଗଲା । ସେହି ଟଙ୍କାରେ 'ଶ୍ରୀ ଶଙ୍କର ବାକ୍ୟାମୃତ' ପ୍ରକାଶ ଛପା ବହି ଆଉ ନୀତିବଳୀ ଖଣ୍ଡେ ଆଣିଲା । ଘୋଷା ଖଣ୍ଡେ ଘରେ ଥାଏ । ତା ସହିତ ଅସମିୟା ଅଭିଧାନ ଖଣ୍ଡେ ମଧ୍ୟ ଆଣିଲା । ବହିତକ ବାସନ୍ତୀକୁ ଦେଲା ।

ଧୀରେ ଧୀରେ ବାସନ୍ତୀର ପ୍ରସନ୍ନତା ଆସିଲା । ଘରେ ତାକୁ କିଛି କାମ କରେଇ ଦିଅନ୍ତି ନାହିଁ । ଦୁଇଓଳି ଆଉ ଅନ୍ୟ ସମୟରେ ପୋଥି ପଢ଼େ । ସଧବା-ଥିଲା ବେଳ ପରି କାମଦାମ କରେ । ଏହା ଦେଖି ସମସ୍ତେ ଖୁସି ହେଲେ । ଭଙ୍ଗାରୁଜା ଘରଟା ପୁଣି ଜାଇ ଉଠେ । ବାସନ୍ତୀ ପାରୁଲ ହେଉଣିକାଙ୍କ ସଙ୍ଗରେ ଗାଁ ବୁଲେ । ଯାତ୍ରା ଦେଖିବାକୁ ଯାଏ ।

ଦିନ ପରେ ରାତି ଆସେ । ବାସନ୍ତୀ ଲାଗି ଅର୍ଥହୀନ ତାରିଖ ଆଗେଇ ଚାଲେ । ମାସ ଶେଷ ହୁଏ । ନୂତନ ମାସ ନୂତନ ମହିମା ସୃଷ୍ଟି କରେ । ଛଅ ଋତୁରେ ସୋନାଇପରିଆ ମଣିଷକୁ ଯଥାରୀତିରେ ଅଥଚ ନୂତନ ଆନନ୍ଦ ଆଉ ଉତ୍ସାହ ଦିଏ । କେଉଁ ଋତୁରେ ବିଭାଘର ହୁଏ, କେଉଁ ଋତୁରେ ବୋଧହୁଏ ନୂତନ ସନ୍ତାନର ମୁହଁ ଦେଖେ । କାହାର କାନରେ ପ୍ରୀତିର ଅଙ୍କୁର ଗଜେ । ସୁଖର ଭବିଷ୍ୟତ ସନ୍ଧାନ, ନିଃସଙ୍ଗ ଅବସ୍ଥାରେ ଦୁରାଶା ବିଚଳିତ କରେ । ଆଉ ଯୌବନର ସ୍ୱାଭାବିକ ଗତିକୁ ସାମାଜିକ ନୀତି ଦ୍ୱାରା ରୁଦ୍ଧ କରି ବାସନ୍ତୀ ଦେହ ମନକୁ ଶାନ୍ତ କରିବାପାଇଁ ଚେଷ୍ଟା କରେ ଏବଂ ସେଥିପାଇଁ ସେ ଅନେକ କିଛି ଉପରେ ଭରସା କରେ । ପାରୁଲ ପୃତଲିଙ୍କ ସଙ୍ଗରେ ବୁଲିବୁଲି, ଭଣିତା ଆଉ ଭଗୀରଥକୁ ଭକ୍ତି କରି ଆଉ

ସେମାନଙ୍କର ସ୍ନେହ, ଶ୍ରଦ୍ଧା ଗ୍ରହଣ କରି, ଘର କାମରେ ବ୍ୟସ୍ତ ରହି ଆଉ ଶାସ୍ତ୍ରରେ ମନଗୁଂଜା ସେ ସୁଖି ହେବାକୁ ଚେଷ୍ଟା କଲା । × × ×

ଦୁଇବର୍ଷ ପାରିହେଲା । ଦୁଇଟି ବରଷରେ ଦୁଇଟି ଫଗୁଣ, ଦୁଇଟି ଶ୍ରାବଣ ଆଉ ଦୁଇଟି ଗ୍ରୀଷ୍ମ ଅଥବା ଶୀତ । ଅନେକ ଦିନ । ସ୍ମୃତି ବୋହୁ ଲାଗି ଯେ ଆହୁରି ଲମ୍ବା ଦିନ । ତାପାଇଁ ଦିନ ଲମ୍ବା ହୋଇଯାଏ । ଗତାନୁଗତିକ ଜୀବନ ତାକୁ ଅଭ୍ୟାସ କରିନିଏ । ସ୍ନେହ ଶ୍ରଦ୍ଧାରେ, ଲୋକ ମୁଖରେ ପ୍ରଶଂସା ଆଉ ଅନେକ ପୋଥି ପଢ଼ି ତାକୁ ବୁଝିପାରିବା ମନ, ତାକୁ ସାନ୍ତ୍ୱନା ଦେଉଛି । ସକାଳର ମୁକ୍ତା ପରି ଜାକର ଟୋପା ଦିନରେ ବେଦନାରେ ବାଷ୍ପ ହୋଇଯାଏ । ଉଷାର ଆଲୋକରେ ଭବିଷ୍ୟତର ରଙ୍ଗ ନାହିଁ । ସୂର୍ଯ୍ୟାସ୍ତର ବର୍ଣ୍ଣ ସୁଷମା ତା'ର ମନର ବାସନାକୁ ଦେହର ତୃପ୍ତି ଆଉ ନିଜର ଗୁପ୍ତର ଗୋପନ ଆକାଂକ୍ଷା ତାକୁ ଅସ୍ଥିର କରେ ।

ଧୀରେ ଧୀରେ ବାସନ୍ତୀର ମନ ଅସ୍ଥିର ହୋଇପଡ଼େ । ସେ ପୁଣି ବିଧବା-ପୋଷାକ ପିନ୍ଧେ । ଘରର କାମଦାମ କରେନା । ମନହେଲେ ପୋଥି ପଢ଼େ ଯଦିବା, ଆଗପରି ପଢ଼ି ପାରେନା । ନାମ ଘରର ଯାତ୍ରା ଦେଖିବାକୁ ଯାଏନା । ନାମଘରେ ବୃଦ୍ଧୀମାନେ ନାମ କୀର୍ତ୍ତନ କରନ୍ତି । ସେଠାକୁ ମଧ୍ୟ ଯାଏନା । ସେଠି ବରଂ ଦୁଃଖ ଉପଲବ୍ଧି ବେଶୀ ହୁଏ । କୀର୍ତ୍ତନ ଭାବରେ 'ଆଇ-ନାମ' ବିଭିନ୍ନ ସୁରରେ ବୋଲାଯାଏ । ପଦେ ଦୁଇପଦ ପରେ ଆଲୋଚନା ହୁଏ । ପୁତ୍ରର ଶୋକରେ ଯଶୋଦା ଜନନୀଙ୍କର ବ୍ୟାକୁଳତାରେ ମାର ଚକ୍ଷୁକୁ ଉନ୍ମାଏ । ଗୋପୀମାନଙ୍କର ପ୍ରେମଶକ୍ତ ମନର ସ୍ଥିରତା ହ୍ରାସ ପାଏ । ଏହାସବୁ ଶୁଣି, ବାସନ୍ତୀର ଶୋକ ପ୍ରବଳ ହୁଏ ।

ଧୀରେ ଧୀରେ ସେ ଆଉ ବାହାରକୁ ଯାଏ ନାହିଁ । ଦୁଆର ମୁହଁରେ ବସି ସୋନ ଇକୁ ଗୁହିଁରହେ ବା କଣ କଣ ଭାବୁଥାଏ । କାହା ସହିତ କଥା କୁହେନା । ଭଣିତା ଆଉ ଭଗୀରଥ ପୁଣି ଚିନ୍ତିତ ହୋଇପଡ଼ନ୍ତି । ସୋନାଇ ବକ୍ଷରେ ବର୍ଷା ଓହ୍ଲାଏ । ପ୍ରକୃତି ମୁଖର ହୁଏ । ସୋନାଇପଖିଆ ସଙ୍ଗରେ ସଙ୍ଗୀ ପାଇ ଆନନ୍ଦ ଓ ଉଚ୍ଛ୍ୱାସରେ ନାଚ ଉଠନ୍ତି । ଶୀତଳ ପାଣିରେ ଦେହ ବୁଡ଼ାଇ ଦେହକୁ ତାଜା କରନ୍ତି । ମାଛ ଅଣ୍ଡା ଦିଏ । ମାଛ ଦେହରେ ତେଲ ହୁଏ । ସୋନାଇ ଯୌବନ ପାଏ । ବାସନ୍ତୀର ଦୁଇକୂଳ ଉଛୁଳା ଯୌବନ ଅସ୍ଥିର ହୁଏ । ସୋନାଇପଖିଆ ପ୍ରକୃତିରେ ସେସବୁ ଭୁଲିଯାଏ । ସେ ଭାବେ ପାଣି ଫୁଟୁକାର ଅସ୍ତିତ୍ୱ ଅଛି, କିନ୍ତୁ ତାର ନାହିଁ । ସେ ଆଉ ଜୀବନରେ ଅସ୍ତିତ୍ୱ ପାଇ ପାରିବ ନାହିଁ ? ଘରର ତା ପ୍ରତି ପ୍ରୀତି-ଉଦାସୀନ ଦୃଷ୍ଟି ଖରାପ ଲାଗେ । ପଥ ଖୋଜେ । ଘରେ ଆଇ ସୁଭା ନୂପୁର ବୈରାଗ୍ୟର ପଥ ହିଁ ତା ଆଖି ଆଗରେ ଲମ୍ବିଯାଏ ।

# ଉଣେଇଶ

ଦୁଇବର୍ଷ ଭିତରେ ଅନେକ ପରିବର୍ତ୍ତନ ହେଲା । ସୋନାଇ କୂଳରେ ଶିଳଗୁଡ଼ ଦେଇ ସଡ଼କ ତିଂ ବଜାରରେ ପହଞ୍ଚିଲା । ଦିନକରେ ଦୁଇଟି ସର୍ଭିସ ବାସ୍ ଚାଲିଲା । ମଣିଷର ମନ ଜଟିଳ ହେଲା । ଝିଅ ବୋହୂମାନଙ୍କ ନାଁରେ ନୂଆ ନୂଆ ବଦନାମ ବାହାରିଲା । ପଞ୍ଚାୟତ ଗଢ଼ା ହେଲା । ପଞ୍ଚାୟତର ସଭ୍ୟ ଓ ସଭାପତି ନିର୍ବାଚନ ପାଇଁ ଗାଁ ଗାଁରେ କଜିଆ ବଢ଼ିଲା । ମାର୍‌ପିଟ୍ ହେଲା । କଳି କଜିଆରେ ଗାଁ ସବୁ ଭାଗ ଭାଗ ହୋଇଗଲା । ଉତ୍ତର ଆଉ ଦକ୍ଷିଣ ଦିଗରେ ଗାଁ ଭିତରେ କଳି ପଶିଲା । ଭଲ ମଣିଷ ମୁହଁର କଥା କେହି ଶୁଣିଲେ ନାହିଁ ।

ପାଉଁଶିଳରେ ସରକାରୀ ଡାକ୍ତରଖାନାକୁ ଏମ୍. ବି. ବି. ଏସ୍. ଡାକ୍ତର ଆସିଲେ । ସୋନାଇର ମାଛ ମାରିବା ଘାଟ ହଜାର ହଜାର ଟଙ୍କାରେ ସରକାର ନିଲାମ ଡାକିଲେ । ଅନ୍ୟ ଜାଗାର ନୂତନ ଉପାୟରେ ମାଛ ଧରି ପାରିଲା ମଣିଷ । ସୋନାଇ-ପଖିଆ କେଉଟଙ୍କର ଭାତ ମୁଠିରେ ଅଳ୍ପ ଧୂଳି ପଡ଼ିଲା ।

ସୋନାଇପଖିଆ ମଣିଷର କଥା ଓ କାମ ଖରାପ ହେଲା । ଦୈନିକ ସହରର ଖବର ମିଳିଲା । ଭୂଷାମାଲ୍ ଦୋକାନ ଆଗରେ, ଲାଇବ୍ରେରୀ ଘରେ ବା ସ୍କୁଲଘର ଆଗରେ ଖବରକାଗଜ ପଢ଼ା ହେଲା । ମନ୍ତ୍ରୀ ଆଉ ଏମ୍. ଏଲ୍. ଏ. ଙ୍କ ନାଁ ମୁହଁ ମୁହଁରେ ଶୁଣାଗଲା । ସୋନାଇପଖିଆର ବହୁ ଲୋକେ ରାଜନୀତି ବୁଝିଲେଣି । ପ୍ରଚଳିତ ଭାଷାରେ କହିଲେ ସୋନାଇ କୂଳରେ 'ପଲିଟିକ୍ସ' ପଶିଲା ।

ଭଗୀରଥ ବୁଢ଼ା ଗୋଟିଏ ପେନ୍‌ସନ୍ ଶ୍ରେଣୀ ସଂସ୍ଥାର ସଭାପତି ହେଲା । ଦୁଇବର୍ଷ ମଧ୍ୟରେ ପାରୁଲ ଅନ୍ୟ ପୁରୁଷଙ୍କ ବଡ଼ା କରିହୋଇଛି । ଏଇଘିଣା ଘରେ ଖାଲି ବୁଢ଼ା, ବୁଢ଼ୀ ଆଉ ବାସନ୍ତୀ । ମଦନର ବାଇ ନନ୍ଦେଶ୍ୱର ସହରରେ ଅଳ୍ପ ପଢ଼ିଥିଲା । ସେ ଖଣ୍ଡେ କାମ ପାଇଁ ଅନ୍ୟ ଜାଗାକୁ ଗଲା । ସେ ଅଲଗା ହୋଇ ରହିଲା । ଭବିଷ୍ୟତରେ ସେ ଆଉ ସୋନାଇପଖିଆ ହୋଇ ରହିବ ନାହିଁ ।

ଜେଲ୍‌ରୁ ଫେରି ଭୋଗରାମ ତାର ପ୍ରକାଣ୍ଡ ସୁନ୍ଦର କୋଠାକୁ ମାସରେ କେଇ ଶହ ଟଙ୍କାରେ ଗୋଷ୍ଠୀ ଉନ୍ନୟନ କେନ୍ଦ୍ରକୁ ଭଡ଼ା ଦେଲା । ସହରରେ ଘର କଲା । ସହରରେ ଜମା ଟଙ୍କାରେ ଧାନ କଳ କିଣିଲା—ଆଉ ଲୁଗା ଦୋକାନ ଖୋଲିଲା । ଚନ୍ଦ୍ରକଳାକୁ ସହରକୁ ନେଇଗଲା । ସେ ମଧ୍ୟ ସୋନାଇପଖିଆ ଜୀବନକୁ ତ୍ୟାଗଦେଲା ।

ସୁଝଆଡ଼େ ଏହିସବୁ ପରିବର୍ତ୍ତନ କଥା ଲୋକମୁଖରୁ ବାସନ୍ତୀ ଶୁଣିଲା । ନନ୍ଦେ ବୁଢ଼ିଙ୍କ ବିବାହ ପରେ, ଲୋକେ ତାକୁ ଆଉ ଦେଖିବାକୁ ପାଇଲେ ନାହିଁ ।

ବାସନ୍ତୀର ହଳଦୀ ରଙ୍ଗ ଦେହରେ ମଳି ଧରିଛି । ଉଜ୍ଜ୍ୱଳ ଆଖି ଦୁଇଟିରେ ବ୍ୟଥାର ଛାୟା ଘୋଟି ଯାଇଛି । ପଥର ମୂର୍ତ୍ତି ପରି ଅପରୂପ ଦେହଟିକୁ ଅବା କେଉଁ କଳା ପାହାଡ଼ ବିକଳାଙ୍ଗ କରି ଦେଇଛି । ସେ ସେମିତି ଦୁଇଟି ବର୍ଷ କଟେଇ ଦେଲା । ଏମିତି ରହି ରହି ତାର ଅଭ୍ୟାସ ହୋଇଗଲା । ନିଜର ଦୁଃଖ କଷ୍ଟ ପରକୁ ଜାଣିବାକୁ ନ ଦେଇ ନୀରବରେ ସହିବା ଆଉ ଜୀବନରେ ପର ପୁଅର ସ୍ତ୍ରୀ ନ ହେବାଟା ଜୀବନର ସତ୍ୟ ବୋଲି ବୁଝିଲା । ଦୁର୍ଯୋଗ ଆଉ ଦୁର୍ଭାଗ୍ୟ ତାକୁ ସମ୍ଭ୍ରମ ଜ୍ଞାନ ଦେଲା ।

କିନ୍ତୁ ହଠାତ୍ ସବୁ ଓଲଟ ପାଲଟ ହୋଇଗଲା । 'ମନବଶି' ନାମକ ସ୍ତ୍ରୀଟି ଯୋଗୁ ତା ମନରେ ନୂତନ ଆଶା ଜନ୍ମ ନେଲା । ତାର ମନ ସଜୀବ ହୋଇ ଉଠିଲା ।

## କୋଡ଼ିଏ

ଦରିଙ୍ଗ ସ୍କୁଲରୁ ପ୍ରାୟ ଦୁଇ କିଲୋମିଟର ଦୂରରେ ନୀଳଗଡ଼ର ଦୋଇଡଙ୍ଗା ଗାଁରେ ମନବଶିର ଘର । ସ୍ୱରିଟା ପୁଅଝିଅଙ୍କ ମା । ସ୍ୱାମୀ ବେମାରିଆ ହୋଇ ଘରେ ଥାଏ । ଘରର ଭରଣପୋଷଣ ଭାର ମନବଶି ଉପରେ । ଆଗେ ସେ ଉତ୍ତମ ଅଧିକାରୀର ଘରେ ଧାନ କୁଟୁଥିଲା । ବାସନ କୁସନ ମାଜୁଥିଲା । ଅଧିକାରୀ ଘରଠାରୁ ନିଜ ଘର ଦୂର ହେବାରୁ ସେଠାକାର କାମ ଛାଡ଼ିଦେଲା ।

ପୁତଲୀ ଓ ପାରୁଲର ବିଭାଘର ପରେ, ଘରର କାମ ଏକା ଭଣୀତା ପକ୍ଷରେ କରିବା ସମ୍ଭବ ହେଲା ନାହିଁ । ବାସନ୍ତୀ ଇଚ୍ଛା ହେଲେ କରେ—ଇଚ୍ଛା ନ ହେଲେ କୁଟା ଖଣ୍ଡକ ଦୁଇଖଣ୍ଡ କରେନା । ସେଥିପାଇଁ କାଳୁନ୍ଗୋ ମନବଶିକୁ ରଖେ । ମନବଶି ଦରମା ପାଏ । ଅଧିକାରୀ ଘରେ ଯେଉଁ କାମ କରୁଥିଲା ଏଠି ସେଇଆ କରେ । ଅବଶ୍ୟ ଧାନ କୁଟେନା, ଦୁଇଟି ଗାଈ ଦୁହେଁ, ଗୁହାଳ ସଫା କରେ, ଆଉ ବାସନ ମାଜେ । ସମସ୍ତ ପାଇଁଲେ ପଢ଼ିବା ହେଉଛି । କାଟିଦିଏ । ଖାଦ୍ୟ କମିଲେ, ସେ

ଘରକୁ ଯାଏ । ଦିନରେ କାନୁନ୍‌ଗୋଙ୍କ ଘରେ ଭାତ ଖାଏ । କାନୁନ୍‌ଗୋ ଆଉ ଭଉଣୀ ତାକୁ ଖୁବ୍ ଭଲ ପାଆନ୍ତି । ସେ ଯାହା ଚାହେଁ ତାହା ପାଏ । ସେ ଘରେ ଆସି ରହିଲା ପରେ ବାସନ୍ତୀ ମୁହଁରେ ହସ ଫୁଟିଲା । ମନବଗ ତାର ମନର ଶୂନ୍ୟତା ବହୁ ଅଂଶରେ ପୂରଣ କଲା ।

ମନବଗ ବାସନ୍ତୀକୁ ତାର ଗାଁ କଥା କୁହେନା । ମନବଗ କମ୍ ଧୀ ନୁହେଁ । ଅତି ସାଧାରଣ କଥା ତା ମୁହଁରେ ସୁନ୍ଦର ରୂପପାଏ । ତା'ଛଡ଼ା କ'ଣ କ'ଣ ସବୁ କୁହେ । ଏମିତି ଦିନ ନାହିଁ ତା ମୁହଁରେ ଗୋଟାଏ ନା ଗୋଟାଏ ନୂଆ ଘଟଣା କହିବାକୁ ନଥିବ । ତା'ଛଡ଼ା ବାସନ୍ତୀର ପ୍ରଶ୍ନ ତାକୁ ଆଶ୍ଚର୍ଯ୍ୟ କରେ । "ଆଚ୍ଛା ମନବଗ ! ଏବେ ସୁଦ୍ଧା କଣ ଗ୍ରୁ ଦଗିସ୍ତର ମଣିଷ ବଇଁଶୀ ବଜାନ୍ତି ? ବରଷା ଆକାଶ ମେଘରେ କଳା ହେଲେ ସୋନାଇର ମାଛ ଉଠନ୍ତି ନା ? ସେତେବେଳେ ମାଛ ରଙ୍କା ଡାକେ ନା ? ବଡ଼ ଖୋଲ ପଡ଼ିଆରେ ମହିଷିଆମାନେ ମହିଷି ପିଠିରେ ବସି ବନଘୋଷା ଗାଆନ୍ତି ନା ? ବହୁନାଚ ଦେଖିବାକୁ ଆସୁଥିବା ଝିଅଙ୍କୁ ଭଗେଇ ନେଇ ଯାଉଛନ୍ତି ନା ?" ଇତ୍ୟାଦି । ମନବଗ ଏହିସବୁ ପ୍ରଶ୍ନର ଉଦ୍ଦେଶ୍ୟ ବୁଝିପାରେ ନା, ଏହାସବୁ ତା' ଗାଁ ପାଖରେ ଘୃଣଆଢ଼େ ଘଟେ । ପଚାରିବାର ବା ଏଥିରେ କ'ଣ ଅଛି ?

ମନବଗ ସହିତ ବାସନ୍ତୀର କଥାବାର୍ତ୍ତା ହୁଏ ଗୁହାଳ ଆଉ ଦାଣ୍ଡଘର ମଝିର ଥିବା ଖୋଲା ଅଗଣାରେ । ଖରାଥିଲେ, ସେଇଠି କଥା ହୁଅନ୍ତି । ସାଧାରଣତଃ ତାଙ୍କର ଗୁପ୍ତ ଆଲୋଚନା ହୁଏ ନିର୍ଜନ କୋଠରୀରେ । ସେଇ ଘରେ ନାନା ପ୍ରକାରର ଜିନିଷ ଥାଏ—ଘୁଣ ଖାଇଥିବା ମୃଦଙ୍ଗ, ଶୁଖେଇ ରଖିଥିବା ବଡ଼ ବଡ଼ ପାଣି କଖାରୁ ପ୍ରଭୃତି । ଏହି କୋଠରୀରେ ଦୁଇଜଣଙ୍କ କଥା ବେଶୀ ଅନ୍ତରଙ୍ଗ ହୁଏ । ପଛରେ ଏମିତି କଥାବାର୍ତ୍ତା ହୋଇ ଜଣେ ଆଉ ଜଣଙ୍କର ଆପଣାର ହୋଇଗଲେ । ପ୍ରତ୍ୟେକ ପ୍ରତ୍ୟେକଙ୍କୁ ଭଲ ଭାବରେ ଚିହ୍ନି ପାରିଲେ ।

ମନବଗ କହିଲା—"ଝିଅ ! ଭଲ ଈଶ୍ୱର ତୁମକୁ ବନବାସୀ ସୀତା କଲା, ତୁମେ ଏଇ ଭାବରେ ଦିନ କେମିତି କଟାଉଛ ?"

"ସେ ଗୁଡ଼ା ପଚାରନା, ଏମିତି ରହି ରହି, ରହିଗଲିଣି, ମନବଗ । ତୋ ସହିତ କଥା କହି ଭଲ ଲାଗେ । ତେବେ ତୁ ମୋତେ ମୋ କଥା ପଚାରୁନ ।"

ସେହିଦିନଠୁ ମନବଗ ଏମିତିକା କଥା ପଚାରେ ନାହିଁ, ସେ ବାସନ୍ତୀ ସମ୍ବନ୍ଧରେ ଲୋକଙ୍କ ମୁହଁରେ କିଛି କଥା ଶୁଣିଛି, କିନ୍ତୁ ବାସନ୍ତୀ ମୁହଁରୁ କିଛି ଶୁଣିନି । ବାସନ୍ତୀ

ଇଟିଲ ଝିଅ, ଅବଶ୍ୟ କୌଣସି ଦିଗରୁ ଖରାପ ଝିଅ ନୁହେଁ । ତା'ର ରୁଚି ବଡ଼ ସୂକ୍ଷ୍ମଧରଣର । ଦିନେ କହିବସେ—"ମନବସା ! କଠନାଉଲୀରୁ ମୁଠାଏ ଗଙ୍ଗଶିଉଳୀ ଫୁଲ ଆଣିବୁତ ?" କ'ଣ ହେବ ବୋଲି ମନବସା ପଚାରେ, ବାସନ୍ତୀ କୁହେ —"ରାତିରେ ନିଦ ନ ହେଲେ, ତା'ର ଗନ୍ଧରେ ରାତି ଉଜାଗର ରହି ପାରିବ ।" ଆଉ ଦିନେ କହିଲା—"ମନବସା ! ମନେ ପଡ଼ୁଛି ସନ୍ତ୍ରସ୍ଥ ଫୁଜନ ଘାଟରେ ବୁଢ଼ାଏ ଗେଣ୍ଡୁ ଗଛ ଅଛି । ବର୍ତ୍ତମାନ ଗଛ ପାଖରେ ଚାରା ଉଠିଥିବ । ଗୋଟାଏ ଚାରା ଆଣି ଆମ ବାଗରେ ପୋତିଦେବୁ ତ ।" ମନବସା ଆଣିବ ବୋଲି କୁହେ ଆଉ ଗେଣ୍ଡୁ ଚାରା ଆଣି ଦେଇଦିଏ । ଆଉ ଦିନେ ବାସନ୍ତୀ କହିଲା—"ମନବସା ! କାଲି ରାତିରେ ଉଠି ଚାଳଘରକୁ ଗଲି, ଅନେକ ସମୟ ଛଣ ଉପରେ ଶୋଇଲି । ସେଥିରେ ପୁଣି ଜହ୍ନ ଆଲୁଅ । ଚାଳଘରଟା ଯେ କେମିତି ଲାଗୁଥାଏ !" ମନବସା ଚାଲିକ । ସେ ଏମିତି କଥା ଶୁଣି ମୁରୁକି ହସି ହସି କହିଲା —"ହଁ, ଠିକ୍ ମଧୁଶଯ୍ୟା ରାତିପରି !"

ବାସନ୍ତୀ କହିଲା—"ମରୁନୁ ତୁ, ଆଉ ଉପମା ଖୋଜି ପାଇଲୁ ନାହିଁ ?"

ଶରତ କାଳ, ଆଶ୍ୱିନ ମାସ । ଦରଙ୍ଗି ସ୍କୁଲ ଗାଁ ମାତି ଉଠିଥାଏ । ସେତେ-ବେଳକୁ ରାହାସପାଳା ଲାଗି ଆଖଡ଼ା ହେଉଥାଏ । ଆଜିକାଲି ସନ୍ଧ୍ୟାରେ କାନୁନ୍ଗୋ ରୁହନ୍ତି ନାହିଁ । ବାସନ୍ତୀ ଭାବେ ଖୋଳ ତାଳ ଆଉ ଗୀତ ସନ୍ଧ୍ୟାର ଅନ୍ଧକାରକୁ ପତଳା କରୁଛି । ଭାଗବତଟୁଙ୍ଗୀ ବେଶୀ ଦୂରରେ ନୁହେଁ । ଢୋଲ, ଘଣ୍ଟା, ମୃଦଙ୍ଗର ଶବ୍ଦ ଆଉ ଗୀତ ଘରକୁ ଶୁଭେ । ଗୀତର କଥା ଯେ କେମିତି ମନ ପ୍ରାଣକୁ ଉଚ୍ଚାଟନ କରେ । ଗୋଲକ ସୂତ୍ରଧାରଙ୍କର ବର୍ଣ୍ଣନା ମନକୁ ଚଞ୍ଚଳ କରେ । "ବିରଳ ବିପିନ ବିହାର ବଶୀଭବ ଇନ୍ଦୁ ପରକାଶୀ..." ତା ପଛରେ ଖୋଳରେ ବୋଲ—ଧିତା ଥେଇ ଧେଇନା ଝିଟ, ଧିତାତା ଥେଇ ଥେଇ, ଧେଇନା ଧେଇ ତାତା ଖିଟ... ।"

ଏଇ ଶରତରେ ମନବସା ଆଉ ବାସନ୍ତୀ ବେଶି ଆପଣାର ହୋଇଗଲେ । ଦୁଃଖରେ ବାସନ୍ତୀ କହିଲା, "ମନବସା ! ତୁ ଯେ ସଞ୍ଜ ସଞ୍ଜ ଦୋଇଚକଲାକୁ ଯାଉ, ସେତେବେଳେ ତା ମନ ଚମକି ଉଠେନା ?"

"କ'ଣ ଯେ ସବୁ ପଚାରୁ ! ମୋର ଆଉ ସେଦିନ ନାହିଁ, ଝିଅଟାର ମା ହେଲି । ଯାଉଁ ଯାଉଁ ଦୁନଆ ଚଲ୍ତା । ପୁଅ ଝିଅ ଖାଇଲେ କି ନାହିଁ—ତାଙ୍କର କଷ୍ଟ ବଢ଼ିଲା କି ? ଏଇ କଥା ସବୁ ଭାବୁ ଭାବୁ ବାଟ ସରିଯାଏ ।"

"ନା, ତୁ ମିଛ କହୁଛୁ । ଏଇଟା ଶରତ କାଳ । ଘର ଭିତରେ ଥାଇ ମଧ୍ୟ ମୁଁ ବୁଝି ପାରୁଛି ଯେ ଗଛ ବୁରୁଛ ଫୁଲ ଫଳରେ ଭରି । ସୋନାଇ ଉପରେ ଚକୁଆ

ଚକୋର ଉଡ଼ୁଛନ୍ତି । ସେଇଥି ପାଇଁ ତ ମାଧବଦେବ ଭଣିତା କଲେ—"ଆବିଳ ଜଳ ଶରତକାଳରେ ନିର୍ମଳ ହୋଇଯାଏ..."

ମୁଁ ତ ଏତେ ପାଠପଢ଼ା ସ୍ତ୍ରୀ ନୁହେଁ । ସେଦିନ ବାସନ୍ତୀ ଖୁବ୍ ବିରସ ଦେଖା-ଯାଉଥିଲା । କିନ୍ତୁ ଦୁଇଦିନ ପରେ ପୁଣି ସ୍ୱାଭାବିକ ହୋଇଗଲା ।

ଶରତ କାଳରେ ସୋନାଇପଡ଼ିଆ ଗାଁ ଫଳପରି ସରସ ହେଲା । ଧାନ ପଠା ଓ ମଣିଷର ମନ ବି । ସୋନାଇ ପରେ ଗଙ୍ଗାଚିଲ ନିଜର ପରଝାଡ଼ି ଯେପରି ପ୍ରଶସ୍ତିର ବାର୍ତ୍ତା ଦେଇଯାଉଛି । ବାସନ୍ତୀର ଅନ୍ତର ଭରି ଯାଇଛି । ବାହାରର ସ୍ନେହ ପୃଥିବୀରେ ମନ ଦିଆ ନିଆ ଚାଲିଛି । ମନବଗା ଦୁଇତିନି ଦିନ ମଝିରେ ମଝିରେ ଗୋଟିଏ ଗୋଟିଏ ପ୍ରଶସ୍ତ କାହାଣୀ ବାସନ୍ତୀକୁ କୁହେ । ଯଦୁ ସାହୁଙ୍କର ଝିଅର ଖଣ୍ଡୁ ସୋନାଇ କୂଳରୁ ମିଳିଲା । ସେ କୁଆଡ଼େ ସୁଧନା ସହିତ, ନଈ କୂଳରେ ରାତି କଟେଇଥିଲା । ସେମାନେ ମସଗୁଲ । ଖଡ଼ୁ ଖୋଲି ପଡ଼ିଗଲା ସେ କଥା ତାଙ୍କୁ ଜଣା ନାହିଁ ।"

ବାପ ଆଖଡ଼ାରେ ଥିଲାବେଳେ ମା ଥାଏ ରୋଷେଇ ଘରେ । ଏହି ସମୟରେ ଧର୍ମେଶ୍ୱର ଆସିଲା । ମନୋରମା ପାଖରେ ପୁରୁଷର ଗନ୍ଧ ପାଇଲା । କାହା ମୁହଁରେ କଥା ନାହିଁ । ଯେତେବେଳେ ସେ ଘରକୁ ଆସିଲା, କାହାରି ଆଖିପତା ପଡ଼ିଲା ନାହିଁ । ତା କାମିଜରେ ସିନ୍ଦୂରର ଦାଗ ··।

ଜୁରନ ମେଧାର ବୋହୂଟା ବୁଆଟାକୁ ନେଇ ପଳେଇ ପାରିଲା ତ ? ଯୁଆଡ଼େ ଯାଇଛି ସେ... ।

କାଲି ରାତିରେ ସୋନାଧର ଘରେ ବୋହୂ ଥିବା କୋଠରୀରେ ଚାଳକାଟି ଚୋର ପଶିଥିଲା । ପୁଅଟି କାମରେ ଆଜିକାଲି ବାହାରେ ଥାଏ । ଚୋର କିନ୍ତୁ ଗହଣାଗାଣ୍ଠି କି ଲୁଗାପଟା କିଛି ନେଇନାହିଁ, ଏ ପୁଣି କେମିତିକା ଚୋର କହିଲ ? ଅସଲ କଥା କେଉଁଠି ? ଆଉ କେଉଁଠିଟି ବେଙ୍ଗ ବାହାଘର ଲାଗିଛି । ବୋହୂ ନିଜ କବାଟ ଭିତରୁ ବନ୍ଦ କରେନା । ପ୍ରାୟ କିଏ ନା କିଏ ଆସେ । କାଲି ରାତିରେ ଘର ଭିତରେ ଶବ୍ଦ ଶୁଣି ଲୋକ ଉଠିବାରୁ ସେ ଭାଗି ପଳେଇଲା ।

ଏମିତି ଗୋଟିଏ ଗୋଟିଏ ସୋନାଇପୁରର ଘଟଣା ବାସନ୍ତୀକୁ ନୂତନ ତୃପ୍ତି ଦେଲା । ଶେଷରେ ମନବଗା କୁହା ଗୋଟିଏ କାହାଣୀ ତା'ର ମନର ତୃପ୍ତିକୁ ନରମ କରିଦେଲା । ଏଇ କାହାଣୀରେ ଯୁବକ ଯୁବତୀଙ୍କ ଅବସ୍ଥା ଶୁଣି ମନରେ

ସେମାନଙ୍କ ପ୍ରତି ଗଭୀର ସହାନୁଭୂତି ହେଲ ଦୋଇଚକଲାର ମଗୁବାସ୍ତନର ଝିଅର ନା ହେଲ କାଞ୍ଚନ ମତୀ। ତା'ର ମନଲୋଭା ରୂପ। ବର୍ତ୍ତମାନ ତା'କୁ ନେଇ ଦୋଇ-ଚକଲା ଉଠୁଛି ପଡ଼ୁଛି।

"କେମିତି ?"

"ସେଥିରେ ଅନେକ କଥା ମା ! ପାଣି ପାଗ କଥା ଆଗରୁ କହିଦେବି। ସୋନାଇ ତଳେ କଣ ଅଛି କହିଦେବି। କିନ୍ତୁ ଯୁବତୀ ଝିଅ କ ବସ୍ତୁ ତାଙ୍କୁ ପାରିଲିନ।"

"କଣ ହେଲମ ?"

"ବାସ୍ତନ ଘରର କୋଠିଆ ରାଜୁକୁ ନେଇ ସବୁ କଥା।"

ପ୍ରଥମ ଦିନ ମନବସା ଜଣାଇଲା ଯେ, ଘରର କୋଠିଆ ରାଜୁଥାଉ ମଗୁବାସ୍ତନ ଆଖିରେ ଧରା ପଡ଼ିଗଲା। ଗଲା ଦୁଇ ବର୍ଷ ହେଲ ରାଜୁ ତା'ଙ୍କ ଘରେ କୋଠିଆ ହୋଇଛି। ପିଲାଟା ସାଧାସିଧା। ଖୁବ୍ ଭଲ ଚାଷୀ। ବାସ୍ତନର ମଧ ସେ ଅତି ଆପଣାର ହୋଇଗଲା। ବାସ୍ତନର ଡାହାଣ ହାତ। ରାଜୁ ସକାଶେ ବାସ୍ତନର ଫସଲ ବର୍ଷକୁ ବର୍ଷ ବଢ଼ିବାରେ ଲାଗିଲା। ଆଖୁ ପାଇଲେ ଗୁଡ଼ନୋଡ଼। କିନ୍ତୁ ସବୁ ଓଲଟି ଗଲା। ରାଜୁ ଆଉ କାଞ୍ଚନମତୀଙ୍କର ଖରାପ ସମ୍ପର୍କ ଗଢ଼ି ଉଠିଲା। ଦିନେ ଦିପହରରେ ଦଲଂଘାଟ ବଜାରରୁ ଫେରି ବାସ୍ତନ ଦେଖିଲା—ରାଜୁ କାଞ୍ଚନମତୀର କୋଠରୀ ଭିତରୁ ବାହାରି ଆସୁଛି। ବାସ୍ତନ ରାଗରେ କମ୍ପିଲା। ସେ ଝିଅ ଘର ଭିତରକୁ ଯିବ କାହିଁକି ? ରାଜୁ ବାହାରକୁ ଗଲାରୁ ଘରଣୀକୁ ଡାକି କାଞ୍ଚନମତୀକୁ ପଚରା ପଚରି କଲେ। ସେ ବିଛଣାରେ ଆରାମରେ ପଡ଼ିଛି। ଶୋଇଛି, ମା ବୁଝି ପାରିଲା ନାହିଁ। କାହିଁକି ଦିପହରଟାରେ ଝିଅକୁ ମରଣ ନିଦ। କିନ୍ତୁ କଥାଟା ସଙ୍ଗେ ସଙ୍ଗେ ବାପ ମା ଜାଣି ପାରିଲେ। ଇତି ମଧ୍ୟରେ ଗାଁ ଲୋକ ଫୁସୁଫାସ ହେଲେ।

ବାସନ୍ତୀ ବ୍ୟଗ୍ର ହୋଇ ପଚାରିଲା—"ତୁ ତାଙ୍କ ଘରକୁ ଯାଉ ?" ମନବସା କହିଲା—"ପ୍ରାୟ ଯାଏ। ଘରଟାକୁ କଣ କରିଛି ? ଅନେକ ଫଟ ରଖିଛି। ଦେଖିଲେ ଲାଜ ଲାଗେ। ଏହି ସବୁ ଛବି ଇଂରାଜୀ ବହିରେ ଥାଏ। ଏମିତି ବହିରୁ ଛିଣ୍ଡାଇ ସେହି ଛବି ସବୁ ରାଜୁହିଁ ତା'କୁ ଆଣିଦିଏ। ତା'ର କୋଠରୀରେ ଫୁଲଦାନୀଏ ଥାଏ। ବର୍ତ୍ତମାନ ବଉଳ, ଯୁଇ ଫୁଲରେ କୋଠରୀ ମହକ ଉଠେ।"

"ହଉ, ସେ ସବୁ ଗପ୍ପ। ମଗୁବାସ୍ତନ ରାଜୁକୁ କଣ କଲା ?" "ସେ ଦିନ କିଛି କହିଲା ନାହିଁ। ପରଦିନ ତାକୁ ଆଗରୁ ନ ଜଣେଇ ଦରମା ଭାଗ ନ ଦେଇ ବିଦା କରିଦେଲା।"

ବାସନ୍ତୀ ଦୀର୍ଘଶ୍ୱାସ ପକେଇଲା । କେତେଦିନ ଯାଏ ମନବଶି 'କାଞ୍ଚନମଞ୍ଜରି କଥା କହିଲା ନାହିଁ । ଏଗାର ଦିନପରେ କହିଲା ଯେ କାଞ୍ଚନମଞ୍ଜି ବାପଠାରୁ ମାଡ଼ ଖାଇଛି । କାଞ୍ଚନକୁ ଆଜିକାଲି ଏକଲା ଘରେ ଶୋଇବାକୁ ଦେଉନି । ମା ପାଖରେ ଶୁଏ । ରାତିରେ ଝିଅ ଅଛି କି ନ ଅଛି ବୋଲି ଉଠି ଦେଖେ ।

ବାସନ୍ତୀ ଖୁବ୍ ଦୁଃଖ ପାଇଲା, ପଚାରିଲା—"ଆଚ୍ଛା ମନବଶି ଅପା ! ରାଜୁ ଯଦି ଭଲ ପିଲା, ତାହାହେଲେ କାଞ୍ଚନକୁ ତା ସହିତ ବାହା ଦେଉନି କାହିଁକି ?

ମନବଶି ଜୋରରେ କହି ଉଠିଲା—"ବାମ୍ଭନ ହେଲେ ଖାଣ୍ଟି କଲିତା, ତା' ଛଡ଼ା ଗାନ୍ଧାର ବାମ୍ଭନ ପରି ବଡ଼ ମଣିଷର ପୁଅ ସେ । ଆଉ ରାଜୁ ହେଲା ଜାତିରେ "ହାଡ଼ି" (ହରିଜନ) । ତା'ର ମା ହାଟ ବଜାରରେ ଜିନିଷ ବିକ୍ରୀକରି ବୁଲେ । ହରିଜନ ଘରକୁ ଝିଅ ଦେଲେ ବାମ୍ଭନ ବଂଶର ସମ୍ମାନ କେମିତି ରହିବ ? ଆମପରି ମଣିଷଙ୍କ କଥା ଅଲଗା । ରାଜୁ ହେଲା ଶ୍ରେଷ୍ଠ ଘରର ପିଲା । ଜମି ଜମା କିଛିନାହିଁ । ଖାଲି ସୋନାଇ କୂଳରେ ଚାଳଘର ଗୋଟାଏ ଅଛି ।"

ମନବଶି ରାଜୁ ବିଷୟରେ ଏମିତି କହିଲାରୁ ବାସନ୍ତୀ ମନରେ ଦୁଃଖ ପାଇଲା । ସେ କହିଲା—"ଆଚ୍ଛା ଅପା ! ତା ପାଇଁ ତୋ ମନ ଖରାପ ହୁଏନା ?"

ମନବଶି ନୀରବ ।

ଗୋଟିଏ ବର୍ଷ ତଳର କଥା । ମନବଶି ଦିନେ ସୋନାଇ କୂଳରେ ରାଜୁକୁ ଦେଖିଥିଲା । ସେ କୁଆଡ଼େ ଖଣ୍ଡେ ପୁରା ବାଲି ନେଇ ଭାଗଚାଷ କରିବ । ସେଥିପାଇଁ ତାକୁ କିଛି ପଚାରିଲି ନାହିଁ କିନ୍ତୁ ଦୁଇଦିନ ପରେ ଗଣ୍ଡଗୋଳ ଲାଗିଲା । କାଞ୍ଚନମଞ୍ଜରି ହାତରେ ଖଡ଼ୁ ଦେଖି ତା ବୋଉ ପଚାରିଲା । କିନ୍ତୁ ସେ କିଛି ଉତ୍ତର ଦେଲାନାହିଁ । ଘରେ ମାଡ଼ ଖାଇଲା । ସେଇଠାରୁ ବାପା ମା'ଙ୍କର ବଡ଼ ସମସ୍ୟା, ସେହିଦିନଠାରୁ ତା'ର ଅବସ୍ଥା ଅତ୍ୟନ୍ତ ଖରାପ ହେଲା । ବାହାରୁ କବାଟ ବନ୍ଦକରି ତାକୁ ଘରେ ରଖା ହେଲା । ସେ ଶୁଖିଗଲା । ବାପ ମା ଭାବିଲେ ଯେ ଏମିତି ନ ରଖିଲେ ସେ କେତେ-ବେଳେ ନା କେତେବେଳେ ରାଜୁ ସହିତ ତାର ଭେଟାଭେଟି ହେବ । ଖଡ଼ୁ ଦିପଟ ସେ ନିଶ୍ଚୟ ରାଜୁକୁ ଫେରାଇ ଦେଲା ।

"ଖଡ଼ୁ କାହିଁକି ଫେରାଇ ଦେଲା ମନବଶି ।"

ପ୍ରେମର ଗାଣ୍ଠି ଫିଟିବା ବଡ଼ କଷ୍ଟ ଦେଇ ! ଚାଷରେ ଭାଗ ନ ଦେବାରୁ ରାଜୁର ଅବସ୍ଥା ଖରାପ ହେଲା, ସେ କଣ ଖାଇବ ? ବର୍ତ୍ତମାନ ଅଧା ଭାଗ କଲେ କେମିତି ଚଳିବ ? ତା'ରତ ମାଟିନାହିଁ । ଏଇ ମାସରେ ସେ ସହରକୁ ଦୁଇଥର ଯାଇଛି ।

ଅରେ ମୁଁ ତାକୁ ଦଲଙ୍ଗ ଘାଟରେ ଦେଖିଥିଲି । ଆଜିଅରେ ହାତଚୁଲ୍ଗରେ " ସହରରେ ସେ ଖଡ଼୍ ବିକ୍ରୀ କରୁଛି । ଏଠି ରହି କ'ଣ କରିବ । ଧାନ କୁଇଣ୍ଟାଲ ତ ବତିଶ ଟଙ୍କା । ଏ ମଇମନ ସିଂହିଆ କୃଷୀ ଖୋଟ ଚାଷ କରିବା ଯୋଗୁ ଧାନ ଦାମଟା ବଢ଼ିଛି । ସେମାନେ ବେଶୀ ଦରରେ ଖୋଟ ବିକ ଧାନ କିଣୁଛନ୍ତି ।"

ମନବଶୀ ବଡ଼ ଦୁଃଖରେ କଥାଟି କହିଲା । ସୋନାଇ କୂଳର ଗାଁ ସବୁ ଯେ କଣ ଥିଲା ଆଉ ଆଜି କଣ ହୋଇଗଲା । ଦୁଧ ଟୋପାଏ ସେମିତି ମିଳୁଥିଲା । କିନ୍ତୁ ଆଜି ଦୁଧ ଠାକୁରଙ୍କ ଜିନିଷ । ବର୍ତ୍ତମାନ ଏଠି ସେରେ ଭଲ ଧାନ ମିଳେ ନାହିଁ । ସୋନାଇ ଉପରେ ପୋଲ ହେଲା । ଶିଲଚୁଣ୍ଡିରୁ ସର୍ଭିସବସ୍ ଚାଲିଲା । ବହୁ ଉନ୍ନତି ହେଲା ବୋଲି ଲୋକେ ବହୁତ କଥା କହିଲେ, କିନ୍ତୁ ସତରେ କଣ ଉନ୍ନତି ହୋଇଛି କି ? ମନୁଷ୍ୟର ସଂଖ୍ୟା ବଢ଼ିଲା । କିନ୍ତୁ ଜମି ବଢ଼ିଲା ନାହିଁ । ଆଜି ଆଗପରି କୃଷୀ ବେପାରୀଙ୍କୁ ଧାନ ବିକ୍ରୀ କରି ପାରୁନି । ଯେଉଁ କୃଷୀ ଧାନ ବିକୁଥିଲା ସେ ଆଜି ଅନ୍ୟ ଧନ୍ଦା ଧରିଛି, ଦୋଇଚକଲାର ବାସ୍ଥନ ବର୍ଷରେ ଶହେ କୁଇଣ୍ଟାଲ ଧାନ ବିକେ । ସିଆଡ଼େ ତାର ପୁଅ ସହରରେ ନାକର୍ । ଜମି ଅଭାବରୁ ସୋନାଇ-ପଶିଆ ମଣିଷ ଆଜି ଗାଁ ବାହାରକୁ ଚାଲି ଯାଉଛନ୍ତି । କେତେଲୋକ କାମକୁ ଛୁଟି ଗଲେଣି । ଏକା ସଙ୍ଗରେ ଏଗାରଟା ମୃଦଙ୍ଗ ବଜେଇଲାବାଲା, ବଇଁଶୀ ବଜେଇ ଯୁବତୀଙ୍କର ମନକୁ ଉତଲା କରିବା ଟୋକାଏ ସହରରେ ସିଥନ ଚାକରୀ କଲେଣି ।

ତା' ହେଲେ ତୁ କଣ ଭାବୁଛୁ ? ସେ କ'ଣ ଏମିତି ରହିବ ? ବୁଝିଛୁ ମନବଶୀ ! ମଣିଷ ଜୀବନରେ ସୁଯୋଗ ଥରେ ଆସେ । ତା'ର ଆଉ ଡେରି କରିବା ଉଚିତ ନୁହେଁ ।

ଏଇ କଥାକହି ବାସନ୍ତୀ କାନ୍ଦି ପକେଇଲା । ମନବଶୀ ଭାବିଲା କାଞ୍ଚନମତୀ ଆଉ ରାଜୁର ମିଳନ ନ ହେବାରୁ ବାସନ୍ତୀ ଭାରି ଦୁଃଖ ପାଉଛି ।

"ବାସନ୍ତୀ, ମୁଁ ଖୁବ୍ ଭାବୁଛି । କାଞ୍ଚନମତୀ ପରଜନ୍ମରେ ବି ଶାନ୍ତି ପାଇବ ନାହିଁ । ଯମ ଯେମିତି ତାକୁ ବାପମାଙ୍କ ପାଖକୁ ପଠେଇ ଦେଇଛି ।"

"ମୁଁ କିଛି ବିଶ୍ୱାସ କରୁନି ମନବଶୀ । ସେ ଦୁହେଁ ଦିନେ ନା ଦିନେ ପଳେଇ ଯିବେ । ତୋ କଥା ଶୁଣି ସୁଦ୍ଧା ମୁଁ ତାଙ୍କ କଥା ବେଶି ବୁଝି ପାରୁଛି ।"

ପରଦିନ ମନବଶୀ ଜଣେଇଲା ରାଜୁ ଧାର ପାଇଁ ଟଙ୍କା ଖୋଜୁଛି । ବର୍ଷକ ଭିତରେ ସେ ଧାର ଶୁଝିଦେବ । ଉତ୍ତର ଆସାମରେ ତେଲ ଖଣିର ସନ୍ଧାନ ମିଳିଛି । ସେଠ ହଜାର ହଜାର ଲୋକ କାମ କରୁଛନ୍ତି । ସେ ସେଠି ତେଲନଳାରେ

କାମ କରିବ । ହାଜିରା ଖଟିଲେ ପାଞ୍ଚଟଙ୍କା କି ଛ'ଟଙ୍କା ପାଇବ । ରାଜୁ ସହରରୁ ଖବର ପାଇଛି ଯେ ସେ ହାଜିରା କାମ ପାଇବ । କିନ୍ତୁ ସେଠାକୁ ଯିବାକୁ ଖରଚ ଦରକାର । ତାକୁ କେହି ଧାର ଦେଉନାହାନ୍ତି ।

ଏହା ଶୁଣି ବାସନ୍ତୀ ଖୁବ୍ ଖୁସି ହେଲା ଓ କହିଲା, "ଏଇଥିଣା ବୁଝିଲୁ ମନବସି, ସେ ପଳେଇଯିବ । ସେ ଜଉର ଆସାମକୁ ଗଲେ ତା'କୁ ସଙ୍ଗରେ ନେଇଯିବ । ମୁଁ ଭଲକରି ବୁଝି ପାରୁଛି ।

ମନବସି କହିଲା—"ମୁଁ ଜାଣେ ଅପା । ଦିନେ ଭଲ ପାଇ ମୁଁ ମଧ୍ୟ ଏଠିକି ବୁଲି ଆସିଥିଲି ।"

ପର ସପ୍ତାହରେ ଯେତେବେଳେ ମନବସି ଜାଣିଲା—ଯେ ବୃନ୍ଦକଧରା ଟାଁ ମଣିଷ କାଞ୍ଚନମଣିକୁ ମୁଦି ପିନ୍ଧେଇଲେ ଆଉ ବୈଶାଖ ଗୁରୁ ତାରିଖରେ ତା'ର ବାହାଘର, ସେତେବେଳେ ବାସନ୍ତୀ ହତାଶ ହେଲାନାହିଁ । ସେ କହିଲା—"ମୋ କଥା ମନେ ରଖିବୁରେ ମନବସି ! ସେ ପଳେଇବ ହିଁ ପଳେଇବ । ସେ ଖାଲି ସୁଯୋଗକୁ ଅନେଇ ବସିଛି ।"

"କେମିତି ଜାଣିଲୁ ?"

"ମୁଦି ପିନ୍ଧିଲେ ସୁଦ୍ଧା କାଞ୍ଚନମଣି କଣ ରହିପାରିବ ? ମୁଦି ପିନ୍ଧି ସେ ଖାଲି ବାପ ମା'ଙ୍କର ସନ୍ଦେହ ଦୂର କରିଛି, ସେ ଜାଣେ ଏତେକ ନକଲେ ତା ଉପରୁ ବାପ ମା'ଙ୍କର ନଜର ଯିବନାହିଁ । ସେହି ସୁଯୋଗରେ ସେ ତା ସହିତ ପଳେଇବ । ସେ ଯଦି ଏହି ସୁଯୋଗକୁ କାମରେ ନଲଗାଏ ତେବେ ମୋ ପରି ପସ୍ତେଇବ ।"

ବାସନ୍ତୀ ଏମିତି ଆବେଗରେ କଥାଗୁଡ଼ା କହୁଥିଲା ଯେମିତି ମନେହେଲା ତା'ର ମନର କଥା ସେ କାହାଆଗରେ କହି ପକାଉଛି । ମନବସି ଯେ ତା ଆଗରେ ବସିଛି ସେ ଏକବାରେ ଭୁଲିଯାଇଛି ଏବଂ ନିଜର ଗୋପନୀୟ କଥା ଅଜାଣତରେ ତା ମୁହଁରୁ ବାହାରି ପଡ଼ୁଛି । ତାର ମୁହଁ ଶୁଖିଯାଉଛି । ଆଖି ବନ୍ଦ କରି କଥା କହୁଥିଲା ତା'ର ଏଇ ଅବସ୍ଥା ଦେଖି ମନବସି ବାସନ୍ତୀ ଜୀବନର ଅନ୍ତରର ଆଭାସ ପାଇଲା । ସେ ବାସନ୍ତୀକୁ ଅନେକ କଥା କହିବାର ସୁଯୋଗ ପାଉନଥିଲା । ସେ ଭାବୁଥିଲା କଟା ଘାରେ ଚୂନ ଦେଇ ତାକୁ ଅଉ ବେଶୀ କଷ୍ଟ ଦେବନି ।

ପରଦିନ ବାସନ୍ତୀ ଖୁବ୍ ଗମ୍ଭୀର ହୋଇ ପଚାରିଲା । "ତୁ ଏକା ସହରକୁ ଯାଇ ପାରିବୁ ?"

"ମନବସ୍ତା କହିଲା, ନ ପାରିବ କାହିଁକି ? ଆଜିକାଲି ମଟର ବସ୍ ସବୁବେଳେ ଯାଉଛି !"

"ଭଲ କଥା, ତୋତେ ଗୋଟାଏ ଜିନିଷ ସହରରେ ବନ୍ଧା କରିବାକୁ ଦେବ । ଆଉ କାହିଁକି ବନ୍ଧା କରିବ ସେ କଥା ମୋତେ ପଚାରିବୁନି ।"

ବାସନ୍ତୀ ଶୋଇବା ଘରକୁ ଗଲା, ବାକ୍ସରୁ ହଳେ ଖଡ଼ୁ ଆଣି ମନବସ୍ତାକୁ ଦେଲା । କୋଉଠି ଆଉ କେତେ ଦରରେ ବନ୍ଧା କରିବ ତା ମଧ୍ୟ ଜଣେଇ ଦେଲା । ଟିଣଗୁଡ଼ା ଝିଅ ସ୍କୁଲ୍‌ଠାରୁ ଟିକିଏ ଆଗେଇ ଗଲେ ଗୋଟିଏ ବଣିଆ ଦୋକାନ ଅଛି, ସେଠି ମନବସ୍ତା ପରି ମାଇପେ ସୁନା ବନ୍ଧା କଲେ ଧରା ପଡ଼ିବାର ଭୟ ନାହିଁ । ସେ ବଣିଆ ଚୋରମାଲ୍ କିଣେ ।

"ଦି ଦିନ ପରେ ମନବସ୍ତା ଖଡ଼ୁ ବିକା ଟଙ୍କା ବାସନ୍ତୀକୁ ଦେଲା ।

ବାସନ୍ତୀ ଖୁବ୍ ଖୁସୀ ହେଲା । ଆଗପରି ଗମ୍ଭୀର ହୋଇ ବାସନ୍ତୀ କହିଲା— "ବାରିରେ ଗଛଗୁଡ଼ା ବୁଢ଼ା ହୋଇଗଲାଣି । ବାରିରେ ଅଦା, ହଳଦୀ ଆଉ କଣ ଲଗେଇବ । ତୁ ଗୋଟାଏ ମଣିଷ ଡାକି ଆଣେ । ତୁ ରାଜୁକୁ ଡାକି ଆଣେ । ତା ସହିତ କଥାବାର୍ତ୍ତା କରିବାକୁ ମୋର ମନ ହେଉଛି । ଦେଖିବାକୁ ଇଚ୍ଛା ହେଉଛି ।"

ରାଜୁ ଆସିଲା । ବାସନ୍ତୀ ତା ସାଙ୍ଗରେ କଥାବାର୍ତ୍ତା ହେଲା । ରାଜୁର ବିଶ୍ୱାସ ହେଲା ନାହିଁ ଯେ ପୃଥିବୀରେ ଏମିତି ଦରଦୀ ସ୍ତ୍ରୀ ଥାଆନ୍ତି ।

"ତୋ କଥା ସବୁ ଶୁଣିଛିରେ ।"

ରାଜୁ ଲାଜରେ କିଛି କହିଲା ନାହିଁ ।

ବାସନ୍ତୀ ପୁଣି କହିଲା, "କେବେର ଆସାମ କେବେ ଯିବୁ ?"

"ଠିକ୍ କରିନି । ଅନେକ ଟଙ୍କା ଦରକାର ତ । ଏଇ କେତେଦିନ ହେଲା ଟଙ୍କା ପାଇଁ ବହୁତ ଚେଷ୍ଟା କରୁଛି । କିନ୍ତୁ ଯେ କୌଣସିମତେ ବୈଶାଖ ଆଗରୁ ଯିବାକୁ ହେବ ।"

"ତାକୁ ନେବୁ ?"

'ଭାବିଛି ।"

ବାସନ୍ତୀର ମନ ପୁଲକିତ ହେଲା । ତା'ପରେ ସେମାନେ ବହୁତ କଥାବାର୍ତ୍ତା ହେଲେ । ମନବସ୍ତା କିନ୍ତୁ ଦୂରରେ ଠିଆ ହୋଇ ଶୁଣୁଥିଲା । ତା'ର ସନ୍ଦେହ ହେଲା ଯେ ବାସନ୍ତୀ ରାଜୁକୁ ତା' ଜୀବନର ସବୁ କଥା କହୁଛି, କାରଣ ଖଡ଼ୁ ବିକା ଟଙ୍କା

'ରଜ୍ ହାତରେ ଦେଲବେଳେ ମନବସା ଶୁଣିଲା ଯେ ବାସନ୍ତୀ କହୁଛ 'ଯେତେଶୀଘ୍ର ପାରୁ କାମ ସାରଦେ । ଡ଼େରି ହେଲେ ମନ ବଦଳିଯିବ । ବୁଝିଛୁ ରଜ୍ ! ଜୀବନରେ ସୁଯୋଗ ଥରେ ଆସେ । ସୁଯୋଗ ହରାଇଲେ ମୋ ପରି ପସ୍ତେଇବାକୁ ହେବ ।"

ରଜ୍ ସନ୍ଧ୍ୟାବେଳେ ଗଲା । କୌତୂହଳରେ ମନବସା ପଚାରିଲା, "ସେମାନେ ପଳେଇଲେ ତୁମର ଲାଭ କଣ ହେବ ଦେଇ ।"

ବାସନ୍ତୀ ଗମ୍ଭୀର ହୋଇ କହିଲା, "ଖାଲି ଲାଭ କ୍ଷତିକୁ ବିଚାରକରି କଣ ମଣିଷ କାମ କରେ ? ତାଙ୍କ କଥା ଶୁଣିଲା ପରେ ମୁଁ ଭଗବାନଙ୍କୁ ପ୍ରାର୍ଥନା କରୁଛି । ସତରେ ମନବସା ସେମାନେ ପଳେଇଲେ ମୋତେ ଖୁବ୍ ଶାନ୍ତି ମିଳିବ ।"

ବୈଶାଖକୁ ସେମାନେ ଅପେକ୍ଷା କଲେ ନାହିଁ । ତା ଆଗରୁ ମଧୁବାସୁନର ଆଖିରେ ଧୂଳି ପକେଇ କାଞ୍ଚନମଣି ଓ ରଜ୍ ପଳେଇଲେ । କେହି ଜାଣି ପାରିଲେ ନାହିଁ । କେବଳ ଜାଣିଲେ ବାସନ୍ତୀ ଓ ମନବସା । ଆନନ୍ଦରେ ବାସନ୍ତୀ କାନ୍ଦି ପକେଇଲା ।

କାଞ୍ଚନମଣି ପଳେଇଲା ପରେ ବାସନ୍ତୀ ମନର ବହୁତ ପରିବର୍ତ୍ତନ ହେଲା । ଆଗେ ସେ ନୀରବରେ ଦୁଃଖ ସହୁଥିଲା ' ବର୍ତ୍ତମାନ ସେ ଅସ୍ଥିର ହେଲା । ଧନଞ୍ଜୟର ଚିନ୍ତା ପୁଣି ମନକୁ ଆସିଲା । ସେ ବର୍ତ୍ତମାନ ଖିବଲା ଆଗଠାରୁ ତା'କୁ ବର୍ତ୍ତମାନ ବେଶୀ କଠୋର ହେବାକୁ ପଡ଼ିବ । ଶାଶୁ ଶଶୁରଙ୍କର ମାୟା କାଟିବାକୁ ହେବ । ସେଇଥି-ପାଇଁ ମନବସା ସଙ୍ଗରେ ତା'ର ଆନ୍ତରିକତା ବଢ଼ିଗଲା । ତା'ର ପୂରା ବିଶ୍ୱାସ ହେଲା ଯେ ମନବସା ଖୁବ୍ ବିଶ୍ୱାସୀ ମାଇକିନା ଏବଂ ତାକୁ ଖୁବ୍ ଭଲପାଏ । ଦିନେ ଖୁବ୍ ଆବେଗରେ ମନବସାକୁ ନିଜ କଥା କହିଲା । ମନରେ ଟିକିଏ ହେଲେ ମାଦକତା ରଖିଲା ନାହିଁ । ମଧୁରୀକୁ ଦିନେ ସେ ସତ କଥା ହିଁ କହିଥିଲା । କିନ୍ତୁ ସବୁ କଥା କହି ନ ଥିଲା । ବର୍ତ୍ତମାନ ସବୁ କଥା ଜଣକୁ କହି ତା ମନ ଉଶ୍ୱାସ ହୋଇଗଲା । ମନବସା ମଧ୍ୟ ବାସନ୍ତୀର କଥାକୁ ସମର୍ଥନ କଲା ।

"ମନବସା ! ତାଙ୍କୁ ଚହ୍ନିଛୁ ?"

"ମୁଁ ଜାଣେ, କିନ୍ତୁ ସେ ମୋତେ ଜାଣେନା ।"

"ତା ହେଲେ ଗୋଟିଏ ଚିଠି ଦେବୁ । ଯେ କୌଣସି ମତେ ତାଙ୍କୁ ଦେବୁ । ଯେମିତି କେହି ଖବର ପାଇବେନି ।"

ମନବସା କଥା ଦେଲା । ସେ ପାଉଁଶିଳରେ ଧନଞ୍ଜୟକୁ ଦେଖା କଲା ଏବଂ ବାସନ୍ତୀର ସବୁକଥା କହିଲା । ଧନଞ୍ଜୟ ଜବାକ୍ ହେଲା । ଚିଠିକୁ ଥରକୁ ଥର ପଢ଼ିଲା ।

“ସ୍ନେହର ଧନଞ୍ଜୟ, ଶେଷଥର ଦେଖା ହେଲା ପରେ କହିଲି ତୁମେ ମୋର ପଣ ବଞ୍ଚିବାକୁ ଭାବିବ । ମନବସ୍ତି, ମୋ ଦୁଃଖ ସବୁ କହିବ । ଆମେ ତ ଏ ଯାଏ ବୁଢ଼ା ହୋଇନୁ । ବଞ୍ଚିବାକୁ ବହୁତ ଦିନ ଅଛି । ଜୀବନର ବାକିଦିନ କେମିତି କଟେଇବା । ଏଦ୍ୱାର କଣ କୌଣସି ବ୍ୟବସ୍ଥା ନାହିଁ ? ବହୁତ ପୋଥୀ ପଢ଼ିଲି । ତଥାପି ପରଜନ୍ମର ପୁଣ୍ୟ ଉପରେ ମୋର ବିଶ୍ୱାସ ହେଲାନାହିଁ । ଯାହାକୁ ଏଇ ଜନ୍ମରେ ଈଶ୍ୱର ଏମିତି ଦୁଃଖ ଦେଇଛନ୍ତି ପରଜନ୍ମରେ ସେ ଯେ ସୁଖ ଦେବେ ତା'କୁ ସେ କେମିତି ବିଶ୍ୱାସ କରିବ ! ମୁଁ ତୁମର ହେଲେ ଲୋକେ ଖୁବ୍ ଖରାପ ଭାବିବେ । କିନ୍ତୁ...”

ଧନଞ୍ଜୟ ଜୀବନରେ ଆଜି ସବୁଠାରୁ ବେଶୀ ଆଶ୍ଚର୍ଯ୍ୟାନ୍ୱିତ ହେଲା । ଯେଉଁ ବାସନ୍ତୀକୁ ସେ ଖୁବ୍ ସହନଶୀଳ ଭାବିଥିଲା, ଯେଉଁ ବାସନ୍ତୀ ହିନ୍ଦୁଘରର ବିଧବାବୋଲି ପୁଣି ଗର୍ବ କରିଥିଲା, ଆଉ ମନର ଯନ୍ତ୍ରଣାକୁ ସାରାଜୀବନ ସହିବାର ସଙ୍କେତ ନିଜ ମୁହଁ ଓ କଥାରେ ବୁଝେଇ ପାରିଥିଲା ସେଇ ବାସନ୍ତୀର ମନର ଅକଳ୍ପନୀୟ ପରିବର୍ତ୍ତନ, ଅଦମନୀୟ ସାହସ ! ସାମାଜିକ ମୂଲ୍ୟବୋଧକୁ ତୁଚ୍ଛ କରିବାର ପ୍ରବଳ ଇଚ୍ଛା ଏବଂ ତାକୁ ପାଇବାର ପ୍ରବଳ ଇଚ୍ଛାର ଆଭାସ ପାଇ ସେ ଖୁବ୍ ଚିନ୍ତିତ ହୋଇ ପଡ଼ିଲା । ମନବସ୍ତିକୁ କଣ ନା କଣ କହିବାକୁ ଚେଷ୍ଟା କଲା କିନ୍ତୁ କହିପାରିଲାନି ।

ମନବସ୍ତି ମଧ୍ୟ ଅଜଣା ଆଶଙ୍କାରେ ଅସ୍ଥିର ହୋଇ ପଡ଼ିଲା । ଧନଞ୍ଜୟ ଆସ୍ତେ ଆସ୍ତେ କହିଲା—“ମୁଁ ଆଜି ରାତି ଦେବନି, ତାକୁ କହିବୁ ମୁଁ ଭାବୁଛି କଣ ହେବ, ସେ କଥା ମୁଁ ନିଜେ ଯାଇ କଥାବାର୍ତ୍ତା କରିବି ! ମୁଁ ପନ୍ଦରଦିନ ଯିବି ।”

ମନବସ୍ତି ବାସନ୍ତୀକୁ ସବୁକଥା ବୁଝେଇ କହିଲା । ବାସନ୍ତୀର ଚିନ୍ତା ଅଧିକ ବଢ଼ିଗଲା । ଶେଷରେ କଣ ସେ ଅପମାନ ଦେଲା ? ସେ କଣ ତାକୁ ସ୍ୱାର୍ଥପର ଚରିତ୍ର-ହୀନା ଭାବିଲା ?

ଦୁଇଦିନ ଦୁଇରାତି ବାସନ୍ତୀ ଖିଆପିଆ ଛାଡ଼ିଦେଲା । ଧନଞ୍ଜୟ କିନ୍ତୁ ଆସିଲା ନାହିଁ । ସେଦିନ ସକାଳେ ବାସନ୍ତୀକୁ ନ କହି ମନବସ୍ତି ପାଉଁଶିଲା ଯାଇଥିଲା । ଆଉ ଆସି ମୁଣ୍ଡରେ ହାତଦେଇ ବସିଗଲା । ସୋନାଇର ପୂର୍ବ କୂଳର ମଣିଷ ଖୁବ୍ ଖୋଜାଖୋଜି କଲେ । କିନ୍ତୁ କୁଆଡ଼େ ଯେ ଗଲା କେହି ଜାଣି ପାରିଲେ ନାହିଁ । କାହାକୁ ସେ ନ କହି ଚାଲିଗଲା । କିନ୍ତୁ ପାଉଁଶିଲାର ମୁରବୀକୁ କହିଗଲା ଯେ ସେ ଆଉ ଏଠିକୁ ଆସିବନାହିଁ ।

ଏଇ ଖବର ପାଇ ଯେ ବାସନ୍ତୀ ମୂର୍ଚ୍ଛା ହୋଇଯିବ ଏ ଆଶଙ୍କା ମନବସ୍ତି କରିଥିଲା । କିନ୍ତୁ ସବୁ ଶୁଣି ମଧ୍ୟ ସେ ଖାଲି ଓପରକୁ ଚାହିଁରହିଲା । ତା' ଆଖିରେ

ନେଳିଆ ଆକାଶଟା ଯେମିତ ହଳଦିଆ ଦେଖାଗଲା । ମନବସ୍ତି ସବୁ ବୁଝି ପାରିଲା । ଆସ୍ତେ ଆସ୍ତେ ବାହାରକୁ ଗଲା ଆଉ କବାଟଟି ଆଉଜେଇ ଦେଲା ।

ତାପରେ ବାସନ୍ତୀ ଆଉ ମନବସ୍ତି ସାଙ୍ଗରେ କଥାବାର୍ତ୍ତା ହେଲା ନାହିଁ. ଆଗପରି ନିରବ ରହିଲା । ପୁରୁଣା ବହି ସବୁ ନେଇ ନିଜ ଘରେ ରଖିଲା । ଗଙ୍ଗାଚଲର ଡେଣାରେ ଛଅ ଋତୁର ରଙ୍ଗ ଲାଗିଲା । ବଞ୍ଚିବାର ପ୍ରବଳ ଆଗ୍ରହ ପକ୍ଷୀଙ୍କ ଡେଣାରେ ସଘନ ସ୍ପନ୍ଦନ ହୋଇ ଉଠିଲା । ସୋନାଇ ଉପରେ ଜଳ ଉପର ଚକ୍‌କର କାଟି ମାଛ ସନ୍ଧାନରେ ଗଙ୍ଗାଚଲ ଉଡ଼ିବାକୁ ଲାଗିଲେ ।

ଗଙ୍ଗାଚଲ ଡେଣାର ପବନ ବାସନ୍ତୀ ଦେହରେ ମଧ୍ୟ ଲାଗିଥିଲା । ସେ କିନ୍ତୁ ଆଗପରି ରହିଲା । ସୁଶୋଭିତ ସୋନାଇ ଶାଶ୍ୱତ ଗତିରେ ବହି ଚାଲିଥାଏ ।

Printed at Shri Avtar Printing Press, Nirankari Colony, Delhi-110009